





## ସମ୍ପାଦକୀୟ.....



ସ୍ୱଗତୋକ୍ତି ଏହିକି ଯେ ଦୀର୍ଘ ଦୁଇବର୍ଷ କୋଭିଡ୍ ମହାମାରୀର ଆତ୍ମଘୋଷିତ ସଂଗରୋଧରୁ ସୁସ୍ଥ ନିସ୍ତାର ପାଇ ଆପଣମାନଙ୍କର ଘନଗହଣକୁ ନବଉଲ୍ଲାସରେ ଫେରିଆସିଛି ନବକଳେବରରେ ଏକ ଅଭିନିବେଶର ଆତ୍ମୀୟ ଅଭିପ୍ରାୟ ନେଇ ପୁଣି ଏକ ସୁପ୍ତ ନାନ୍ଦନିକତାର ପୁନଃଜାଗରଣ ପାଇଁ, ଅନ୍ତର୍ଦୃଷ୍ଟିର ଗଭୀରତା ତଥା ବାହ୍ୟଦୃଷ୍ଟିର ପରିବ୍ୟାପକତା ପରିମାପକର ପରାକାଷ୍ଠା ନେଇ । ବାର୍ଷିକ କାର୍ତ୍ତିକର ସଫଳ ସମ୍ଭୂତ ସତ୍ତ୍ୱେ ବିଗତ ଦୁଇବର୍ଷର ବାଧ୍ୟ ବନ୍ଧ୍ୟାକରଣ ଅଙ୍କୁଶ ଅତିକ୍ରାନ୍ତେ ଆପଣମାନଙ୍କୁ ସାଦରେ ସ୍ୱାଗତ କରିବାକୁ ସସରାଗେ ଉପସ୍ଥିତ ପୂର୍ଣ୍ଣଗର୍ଭା ଆସନ୍ନପ୍ରସବା ଉଷତ ଉଲ୍ଲାସକୁ ଯଥାର୍ଥରେ ଭରଣ କରିବାକୁ ଉପାସିତ ୨ ୦ ୨ ୨ ବାଲିଯାତ୍ରା କଟକ ଉତ୍ସବକୁ ଆଜିର ଶରଦ ରାସପୂର୍ଣ୍ଣିମାରେ ।

ବାଲିଯାତ୍ରାର ପ୍ରାଚୀନତା କିମ୍ବଦନ୍ତୀ ନୁହେଁ; ଏକ ଇତିହାସ । ଏହା ଶତାବ୍ଦୀନଗରର କଟକ ତଥା ପ୍ରାଚୀନ କଳିଙ୍ଗର ସ୍ୱର୍ଣ୍ଣାଭ ସ୍ୱାକ୍ଷରିତ (Signature Celebration) ଉତ୍ସବର ଉତ୍‌ଫୁଲ୍ଲତା ଉଦ୍‌ଭାଷିତ କରି । ଏତଦ୍‌ଦ୍ୱାରା ଆମ ତଥାକଥିତ ତଦାନୀନ୍ତନ ଅର୍ଥନୈତିକ ସଂସ୍କୃତି, ସମୃଦ୍ଧି ଓ ପରମ୍ପରାର ନିଛକ ଜଳଛବି ପ୍ରତିବିମ୍ବିତ ହୁଏ ଉତ୍କଳଗଙ୍ଗାର ସୁନିର୍ମଳ ଜଳରାଶିରେ । ସମୟର ଅବାରିତ ସ୍ରୋତରେ ଏହାର କଳେବର ଓ ରୂପରେଖ ବଦଳି ଚାଲିଲେ ସୁଦ୍ଧା ମୁଖ୍ୟ ଉଦ୍ଦେଶ୍ୟ, ଅଭିପ୍ରାୟ ଓ ଅଭିଲିପ୍‌ସାର ଚେର ଖୁବ୍ ଗଭୀର ଓ ସୁଦୃଢ଼ ରହି ଆସିଛି । ପ୍ରାଚୀନ ନୌବାଣିଜ୍ୟ ପରମ୍ପରା ସହିତ ଅଧୁନାତନ ପରିଚିତ ପ୍ରାୟୋଗିକ ଅର୍ଥନୀତିସଂଯୁକ୍ତ ସେତୁର ଅନ୍ୟନାମ ଏହି 'ବାଲିଯାତ୍ରା କଟକ ଉତ୍ସବ' । ମହାକବି କାଳିଦାସଙ୍କ ରଘୁବଂଶ କାବ୍ୟରେ କଳିଙ୍ଗ ନୃପତିଙ୍କ ସାଗରାଧିପତି ବର୍ଣ୍ଣନା ଆମ ଐତିହ୍ୟର ଅଳକାନନ୍ଦା । ସୁଦୀର୍ଘ ଓ ସୁଗଭୀର ସାଗର ବକ୍ଷରେ କଳିଙ୍ଗର ସଂଯୁକ୍ତ ପରିବାରର ଦୁର୍ବାର ସାହସିକତା, ଯାହା ଆଜି ବିଘଟିତ, ବାଲିଯାତ୍ରାରେ ତାହାର ଜୀବନ୍ତ ପ୍ରତିଫଳନ ଦେଖିବାକୁ ମିଳେ ମେଳ ଗହଳରେ; ଏଠାକାର ବିପଣୀ ବଜାରରେ, ବିବିଧ ପ୍ରଲମ୍ବିତ ପ୍ରତିଭାତ ପସରା ଭିତରେ ।

ଖ୍ରୀଷ୍ଟପୂର୍ବ ୨ୟ ଶତାବ୍ଦୀରୁ ଖ୍ରୀଷ୍ଟପର ୮ମ ଶତାବ୍ଦୀ ଯାଏ ସହସ୍ରାବ୍ଦୀର ଅଦ୍ୱିତୀୟ ପାରସ୍ପରିକ ବାଣିଜ୍ୟ ଓ ବ୍ୟବସାୟିକ ସମ୍ପର୍କ ଥିଲା ଦକ୍ଷିଣ-ପୂର୍ବ ଏସୀୟ ଦେଶମାନଙ୍କ ସହିତ । ପ୍ରଜାତ ପ୍ରଚଣ୍ଡ ନୌବାଣିଜ୍ୟ ପରମ୍ପରା ଓ ସେହି ପ୍ରଖ୍ୟାତ ପ୍ରତିଦେୟ ସାଧବଙ୍କ ସ୍ମୃତିରେ ଅନୁଷ୍ଠିତ ଏହି ବାଲିଯାତ୍ରା ସୁପବିତ୍ର ପଲ୍ଲୁଳ କାର୍ତ୍ତିକ ଶେଷ ରାସପୂର୍ଣ୍ଣିମାରେ "କଳିଙ୍ଗାଃ ସାହସିକାଃ" ଅତୀତର ବହିର୍ବାଣିଜ୍ୟ ନିପୁଣ ସାଧବ ପୁଅଙ୍କ କଥା, ଗାଥା ଓ ବ୍ୟଥାକୁ ନେଇ ଅତିବାହିତ ଅନୁଭୂତିର ରୋମନ୍ଥନକୁ ନେଇ ଏହି ପୁସ୍ତିକାର ପରିପୁଷ୍ଟ ବର୍ଣ୍ଣାଢ଼୍ୟ ଉନ୍ମାଦିତ ଉନ୍ମୋଚନ ସତତ ରୋମାଞ୍ଚକର । ଗତାୟାତ ଜନଗଣଙ୍କ ଗଦ୍‌ଗଦିତ ଗରଜ ପ୍ରାଧାନ୍ୟ ଏହି ବୃହତ୍ ମେଳାରେ ବିରଳ ସ୍ନେହ, ଶ୍ରଦ୍ଧା, ସହାନୁଭୂତି ତଥା ସମ୍ବେଦନଶୀଳତାର ଜୀବନ୍ତ ପୁନଃବିନ୍ୟାସ ପରିଲକ୍ଷିତ ହୁଏ ଏହି ଅଧିଗମ୍ୟ ଅବତାରିତ ଅବସରରେ ।

ପବିତ୍ର କାର୍ତ୍ତିକର ଶେଷ ପାଞ୍ଚଦିନର ପଞ୍ଚୁକ ପାଳନ, ଶୁଦ୍ଧପୂତ ମନୋଭାବ ନେଇ ବୃନ୍ଦାବତୀଙ୍କ ସମ୍ମୁଖରେ ପଞ୍ଚରଙ୍ଗୀ ମୁରୁଜ (Motif) ଅଙ୍କନ ପ୍ରତୀକାତ୍ମକ ଭାବେ ବିଭିନ୍ନ ଦେବଦେବୀଙ୍କୁ ସମର୍ପିତ । ବୃନ୍ଦାବତୀଙ୍କ ସତୀତ୍ୱ ଉପରେ ପ୍ରଶ୍ନ ହେବାରୁ ତାଙ୍କୁ ପଞ୍ଚବନୀ ରସ ବା ଅମୃତ ରସରେ ପବିତ୍ର କରାଯାଇଥିବା ଉପାସନା ସତତ ସ୍ମରଣକୁ ଆସେ ଓ ଏହି ପଞ୍ଚବନୀ ଶବ୍ଦରୁ ପଞ୍ଚକ ଶବ୍ଦ ତଥା ପଞ୍ଚରଙ୍ଗୀ ମୁରୁଜର ବହୁଳ ବ୍ୟବହାର ପ୍ରତି ଘରେ, ଘର ସମ୍ମୁଖରେ ଓ ପ୍ରାଙ୍ଗଣରେ । ଝୋଟି, ଚିତା ପ୍ରଥା ଶ୍ରୀମନ୍ଦିର ରୋଷଶାଳାରୁ ଅୟମାରମ୍ଭ ଯେଉଁଠାରେ ମୁରୁଜ ଆଙ୍କି ଅଭଡ଼ା ହାଣ୍ଡି ପ୍ରଥମେ ରଖାଯାଇଥାଏ । ଘରର ଘରଣୀମାନଙ୍କର ଆକାଶଦୀପ ଶୋଭିତ ସାରସ୍ୱତ ବୃନ୍ଦାବତୀ ପୀଠରେ ଚମ୍ପାକଢ଼ି ଅଙ୍ଗୁଳି ଅଙ୍କିତ ସୁନ୍ଦର ମନୋହର ମୁରୁଜ



ଅତିକ୍ରମ କରି ଉପସ୍ଥିତ ଆଜି ଆପଣମାନଙ୍କ ପ୍ରଶସ୍ତ ଉହାଡ଼ରେ ଐତିହ୍ୟସମ୍ପନ୍ନ ବାଲିଯାତ୍ରା ପଡ଼ିଆରେ । ଅରୀବିହୀନ ନାରୀଙ୍କର କୋମଳ କୁଶଳ କଳାତ୍ମକ ସ୍ପର୍ଶରେ ଜୀବନ୍ତ କରି ତୋଳେ ଏହି କଳଙ୍କରହିତ କଳା କୌଶଳ ଯାହା ମହିଳାମାନଙ୍କ ବିଚିତ୍ରବର୍ଣ୍ଣା ଏହି କୌଶଳ କଳାତ୍ମକ ପ୍ରତିଭାକୁ ପ୍ରକାଶିତ ତଥା ବିକଶିତ କରିଥାଏ । ଏଥିରେ ସନ୍ନିବେଶିତ ଅତିନ୍ଦ୍ରିୟ ଭାବନା, ପ୍ରତ୍ୟୟବୋଧ ତଥା ଆଧ୍ୟାତ୍ମିକ ଅବଧାରଣର ସୂତ୍ରପାତ ହୋଇଥାଏ ଚିନ୍ତା, ଚେତନା ଓ ଚୈତନ୍ୟରେ ।

ଶ୍ରୀଚୈତନ୍ୟ ପ୍ରସିଦ୍ଧ ଗଡ଼ଗଡ଼େଶ୍ୱର ମହାଦେବଙ୍କ ମନ୍ଦିର ସନ୍ନିକଟ ଏହି ପ୍ରଶସ୍ତ ବିକ୍ଷିପ୍ତ ବାଲୁକା ଶଯ୍ୟାରେ ଅନୁଷ୍ଠିତ ଏହି ବାର୍ଷିକ ବାଲିଯାତ୍ରା ଚୋରାବାଲି ସଦୃଶ ଆପଣମାନଙ୍କ ସକଳ ଭୌତିକ ଅହଂକାରକୁ ଚୋରିକରି ନେଉ ଓ ଏକ ପୁନଃନୂତନ (Renaissance) ଆଧିଭୌତିକ ଆତ୍ମପ୍ରତ୍ୟୟିତ ମାନବ ସମାଜର ଭିତ୍ତି ସ୍ଥାପନ ହେଉ । ଅହଂକାର ହିଁ ଆମ ସମସ୍ତଙ୍କର କର୍ମଫଳର ସୃଷ୍ଟିକର୍ତ୍ତା; ନିରହଂକାରୀ ମଣିଷର ଅନ୍ୟ ସମସ୍ତ ସଦ୍‌ଗୁଣ ସ୍ୱତଃପ୍ରବୃତ୍ତ ଅଙ୍କୁରିତ ତଥା ପ୍ରତିଭାତ ହୋଇଥାଏ ଯାହା ଆଧାତ୍ମିକତାର କଳ୍ପବୃକ୍ଷ ସଦୃଶ ସତ୍ୟ ଓ ବାସ୍ତବ । ଅହଂକାରର ପ୍ରତିବିମ୍ବିତ ରୂପ ସର୍ବଦା ବ୍ୟଙ୍ଗାତ୍ମକ ଓ ଏଥରୁ ଅବମୋଚିତ ମଣିଷହିଁ ଯଥାର୍ଥରେ 'ମନୁ' ପଦବାଚ୍ୟ ।

ଭୂମାରେ ଶାରଦୀୟ ନିର୍ମଳ ଆକାଶ, ଭୂମିରେ କାଶତଣ୍ଡୀର ସମୂହ ସମ୍ଭାର, ମଳୟର ହିଲ୍ଲୋଳରେ ଦୋଳାୟିତ ଶ୍ୱେତ କାଶତଣ୍ଡୀ, ସରୋବରର ସ୍ୱଚ୍ଛଜଳରେ କୁମୁଦ କମଳର ଶୋଭା, ମହାନଦୀର କାର୍ତ୍ତିକେନ୍ଦୁ ଜଳରାଶିରେ ପୂର୍ଣ୍ଣଚନ୍ଦ୍ରଙ୍କ ପ୍ରତିବିମ୍ବ ଓ ପ୍ରାକୃତ ପ୍ରକୃତିର ପ୍ରତ୍ୟେକ ଚିତ୍ର ଏକା ଏକେ କବିତାର ଦୃଶ୍ୟପଟ୍ଟ; ସମସ୍ତ ସୃଷ୍ଟିର ମନୋମୟ ଆଭାସ ଚିର ଭାସ୍ୱର । ଆ କା ମା ବୈ - ଆଷାଢ଼, କାର୍ତ୍ତିକ, ମାର୍ଗଶୀର ଓ ବୈଶାଖ, ବର୍ଷର ଏହି ଚାରି ପୁଣ୍ୟ ପବିତ୍ର ମାସ ମଧ୍ୟରୁ କାର୍ତ୍ତିକ ମାସର ମାହାତ୍ମ୍ୟ ସୁବିଦିତ, ସୁପଠିତ, ନିରୁତା ଭକ୍ତିଭାବ ସମନ୍ୱିତ । ରଚୟିତା ମହାଦେବ ଦାସଙ୍କ କାର୍ତ୍ତିକ ମାହାତ୍ମ୍ୟରେ ବିଶେଷ ଭାବରେ ଉଲ୍ଲିଖିତ କାର୍ତ୍ତିକ ବ୍ରତ କଥା ପଦ୍ମପୁରାଣ ଆଧାରରେ ରଚିତ, ଯେଉଁ ବ୍ରତ ସବୁ ବ୍ରତ ଧର୍ମ ମଧ୍ୟରେ ସାର । ପୂର୍ବେ ନୈମିଷାରଣ୍ୟରେ ସୂତମୁନୀ ଏହି ବ୍ରତ କଥା ଅନ୍ୟ ସମୂହ ମୁନୀଜନଙ୍କୁ କହିଥିଲେ । ଶ୍ରୀ ବିଷ୍ଣୁଙ୍କ ପ୍ରଶସ୍ତିରୁ ଆରମ୍ଭ - 'ଅଶେଷ ବ୍ରହ୍ମାଣ୍ଡର ନାଥ / ଯାର ଚରିତ ପୁଣ୍ୟ ପଥ'- ଏହି ମାହାତ୍ମ୍ୟ ଦେବ ଓ ଦାନବଙ୍କୁ ମଧ୍ୟ ଅଗୋଚର, ନିଗମ । ଏହା ଧର୍ମର ଅଶେଷ ମହତ୍ୱ ପ୍ରତିପାଦିତ କରିବା ସହିତ ଆମ ଆଧାତ୍ମିକ ବିଭବକୁ ଏକ ଶ୍ରେଷ୍ଠ ସୋପାନକୁ ଉନ୍ନିତ କରିଥାଏ । ଧର୍ମ ବିଶ୍ୱାସର ଏକ ପୁଞ୍ଜି ହେଲେ ଆଧାତ୍ମିକତା ଏକ ଦିବ୍ୟଚେତନାର ମାର୍ଗ । ଆମମାନଙ୍କର ବ୍ରହ୍ମାଣ୍ଡଜ୍ଞାନ ଯେତେ ଯେତେ ବଢ଼ିଚାଲିଛି, ବ୍ରହ୍ମଜ୍ଞାନ ସେହି ପରିମାଣରେ ଅସ୍ତମିତ ହେବାକୁ ଲାଗିଛି । ଆତ୍ମଜ୍ଞାନର ଅତିମାନବୀୟ ଯାତ୍ରାକୁ ଆମେ ହୀନମାନବର ଆତ୍ମପ୍ରବଞ୍ଚନାରେ ଅପଚୟ ତଥା ଅପବ୍ୟୟ କରିଚାଲିଛେ ନିର୍ବିଚାରିତ ଭାବେ । ଅନ୍ତର୍ନିବେଶ ପରିବର୍ତ୍ତେ ବାହ୍ୟପ୍ରବେଶ, ଭୌତିକ ସୁଖ ସମୃଦ୍ଧିରେ ମଦମତ୍ତ ପଞ୍ଚସ୍କନ୍ଦଗଢ଼ା ନିଗ୍ରହରହିତ ମଣିଷ ଆଜି ପଥଚ୍ୟୁତ । ଅତଏବ ସତତ ପଥ ଓ ପନ୍ଥାନୁଗମନ କରିବା ହେଉ ଏହି ଅବକାଶରେ ଆଜିର ଆତ୍ମିକ ଅନୁଚିନ୍ତା ।

ଆଲେଖ୍ୟଟି ସ୍ମରଣିକାର ପ୍ରାକ୍ତନ ସମ୍ପାଦକ ତଥା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର କୁଳପତି କାନ୍ତବିଦ୍ୟ ସାରସ୍ୱତ ସାଧକ ୰ଏମ୍. କ୍ୟୁ. ଖାନ୍‌ଙ୍କ ସ୍ମୃତିରେ ଉତ୍ସର୍ଗୀକୃତ ।

**ସହଦେବ ପାତ୍ର**

**ଦୂରଭାଷ : ୯୯୩୭୩୪୧୦୮୨**



# ଅଗ୍ରଲେଖ

ମହାନଦୀର ବାଲିରେ ଯାତ୍ରା ହୁଏ ବୋଲି ଅନେକ ଉପର ଠାଉରିଆ ମତ ଦିଅନ୍ତି । କିନ୍ତୁ ଏହି ଯାତ୍ରା ପୃଷ୍ଠଭୂମିରେ ଓ ଓଡ଼ିଶାର ବାଲିଦ୍ୱୀପ ସହ ବାଣିଜ୍ୟିକ ସଂପର୍କ କଥା କ୍ୱଚିତ ବିଦ୍ୱାନ ବିଚାରନ୍ତି । ଏହାର କାରଣ ବାଣିଜ୍ୟିକ କାରବାର ଆଉ ନାହିଁ, ସେମିତି ମଧ୍ୟ ଦ୍ୱୀପାନ୍ତରରେ ବାଣିଜ୍ୟ ଓ ବାଣିଜ୍ୟ ମାଧ୍ୟମରେ ସାଂସ୍କୃତିକ ଉପନିବେଶ ପ୍ରତିଷ୍ଠା କରିଥିବା ଓଡ଼ିଆ ସାଧବଙ୍କର ଇତିହାସ ସଂକଳିତ ନାହିଁ । ଫଳରେ ଗୋଟିଏ ଦୀର୍ଘ ଓ ସୁବିସ୍ତାରୀ ଇତିହାସ ହଜିଯାଇଛି ବିସ୍ମୃତିଗର୍ଭରେ । ଦକ୍ଷିଣପୂର୍ବ ଏସିଆ ମହାଦେଶରେ ଯେତେ ବିଦେଶୀ ନାବିକ ନିଜ ନିଜ ସଂସ୍କୃତିର ଆଲୋକ ଜାଳିଥିଲେ ସେମାନଙ୍କ ମଧ୍ୟରେ ଥିଲେ ଚୀନ୍ ପରିବ୍ରାଜକଙ୍କ ମତରେ 'କୁନ୍-ଲନ୍ (KUNLUN) । ଏହି ଜାତିର ପରିଚୟ ନେଇ ଥିଲା ଅନେକ ଦ୍ୱନ୍ଦ୍ୱ । ଶେଷରେ ଡକ୍ଟର ହିମାଂଶୁ ଭୂଷଣ ସରକାର ତାଙ୍କ ବହି (Cultural Relations Between Indian and South East Asian Countries–1985) ରେ ପ୍ରମାଣ କରିଲେ କୁନ-ଲୁନ୍ ହେଉଛନ୍ତି କଳିଙ୍ଗର ଅଧିବାସୀ । ଏହି ତଥ୍ୟ ଆମକୁ ଦେଇଛନ୍ତି ଓଡ଼ିଶାର ଜଣେ ଗବେଷକ ଐତିହାସିକ ସ୍ୱର୍ଗତ ଡକ୍ଟର ଆଶୁତୋଷ ପ୍ରସାଦ ପଟ୍ଟନାୟକ । ସେ ଲେଖିଛନ୍ତି ଦୁଇଟାର ବିଭକ୍ତ 'The Early Voyagers of the East' । ଏହି ଗ୍ରନ୍ଥରେ କେତେକ ତଥ୍ୟ ଆଧାରରେ ମଧ୍ୟ ଲେଖିଛନ୍ତି ଓଡ଼ିଆରେ ଦୁଇଟି ବହି 'ଆକାମାବଇ' ଓ 'ମହାଦେବତା' । ଜଣେ ଗବେଷକର ଦୃଷ୍ଟି, ତଥ୍ୟ ପ୍ରମାଣ ଅନୁସନ୍ଧାନ କରିବାକୁ କେତେକେତେ ସ୍ଥାନ ଭ୍ରମଣ କରିବାକୁ ପଡ଼େ, ଏହି ଗ୍ରନ୍ଥରୁ ମିଳିବ ତା'ର ପ୍ରମାଣ ।

ଓଡ଼ିଆଙ୍କର ଧାରଣା ଓଡ଼ିଆ ସାଧବମାନେ ଜାଭା, ସୁମାତ୍ରା, ସିଂହଳ, ବାଲି ଆଦି ଅଳ୍ପ କେତୋଟି ଦ୍ୱୀପାଞ୍ଚଳରେ ସୀମିତ ରଖିଥିଲେ ବାଣିଜ୍ୟ କାରବାର । ମାତ୍ର ସ୍ୱର୍ଗତ ପଟ୍ଟନାୟକ ଏହି ବାଣିଜ୍ୟ ସାଧନ ଅତୀତର ଇଜିପଟ, ପାରସ୍ୟ, ଗ୍ରୀସ୍, ରୋମ ଏବଂ ଦକ୍ଷିଣ ପୂର୍ବ ଏସିଆର ଚୀନ, ଜାପାନ ଆଦି ଦେଶରେ ସୁବିସ୍ତୃତ ଥିବାର ପ୍ରମାଣ ଦେଇଛନ୍ତି । ଖଣ୍ଡଗିରି ଗୁମ୍ଫାରେ ଥିବା ପକ୍ଷବିଶିଷ୍ଟ ପଶୁର ଚିତ୍ର ବିଦେଶୀ ଯବନ ଦ୍ୱାରପାଳ ମୂର୍ତ୍ତିରୁ ସିଦ୍ଧାନ୍ତ ହୋଇଛି ଯେ କଳିଙ୍ଗର ସ୍ଥାପତ୍ୟ ଶିଳ୍ପୀମାନେ ବାବିଲୋନୀୟ, ପର୍ସିପୋଲିସୀୟ ଆଦି କଳାକୃତି ସହିତ ପରିଚିତ ଥିଲେ । ଏପରି କଳାକୃତି ଜ୍ଞାନ ଅଭାବରେ ଖଣ୍ଡଗିରି ସ୍ଥାପତ୍ୟ ସଂଗଠନ ସମ୍ଭବ ହୁଅନ୍ତା ନାହିଁ । ଏହି ତଥ୍ୟରୁ ଆଉ ଏକ ସୂଚନା ମିଳୁଛି ଯେ ବାଣିଜ୍ୟ କାରବାର ସହ ସ୍ଥାପତ୍ୟ ବିଦ୍ୟା ବିଶାରଦ ଭାବେ ବିଦେଶରେ କୀର୍ତ୍ତିସ୍ତମ୍ଭ ପ୍ରତିଷ୍ଠା କରିଥିବେ । ସ୍ୱର୍ଗତ ଚକ୍ରଧର ମହାପାତ୍ର 'ଅର୍ଣ୍ଣବ ବିହାର' ନାମକ ଗୋଟିଏ ନୌଶାସ୍ତ୍ର ଆବିଷ୍କାର କରିଥିଲେ । ଏହା ପୂର୍ବରୁ 'ବହିତ୍ର କୀର୍ତ୍ତିବିଭବ', 'ଜଳଯାନ' ଓ 'ବିଶାଖା ନିର୍ଦ୍ଦେଶ' ନାମରେ ନୌଶାସ୍ତ୍ର ରଚିତ । ଗ୍ରନ୍ଥଗୁଡ଼ିକ ବିଲୁପ୍ତ କି ଦୁଷ୍ପ୍ରାପ୍ୟ, ଯାହାହେଉ, ଏହା ଇତିହାସର ତଥ୍ୟ ଯେ ପ୍ରାଚୀନ ନୌବିଦ୍ୟା ଆମ ଜାତି ପାଖରେ ଅଜ୍ଞାତ । କେବଳ ପିତୃପିତା ପରଂପରାରେ କାର୍ତ୍ତିକ ପୂର୍ଣ୍ଣିମୀରେ ଡଙ୍ଗା ଭସା ଓ ମହାନଦୀକୂଳରେ ବାଲିଯାତ୍ରା ଆୟୋଜନ ।

ବାଲିଯାତ୍ରା ଇତିହାସର ସ୍ମାରକୀ; ସ୍ମାରକୀ ନୌବାଣିଜ୍ୟର ଓ ଏହା ମାଧ୍ୟମରେ ଦୂର ଦେଶରେ ସାଂସ୍କୃତିକ ଉପନିବେଶ ସ୍ଥାପନର । ପୃଥିବୀର ବହୁଦେଶ ନୌବାଣିଜ୍ୟର ସୁଯୋଗ ନେଇ ଭିନ୍ନଭିନ୍ନ ଦେଶରେ ରାଜନୀତିକ ଉପନିବେଶ ଓ ଶେଷରେ ଶାସନ ପ୍ରତିଷ୍ଠା କରିଛନ୍ତି । କିନ୍ତୁ ଓଡ଼ିଆ ସାଧବମାନେ ସେପରି କରିନାହାନ୍ତି । ତାର ଗୋଟିଏ କାରଣ ହୋଇପାରେ କ୍ଷମତାଭୋଗ ପ୍ରତି ନଥିଲା ମୋହ ବା ଆସକ୍ତି ।

ତେବେ ପ୍ରସଙ୍ଗକ୍ରମେ ଗୋଟିଏ କଥା ସ୍ମରଣୀୟ । କହ୍ନାଇ ଚମ୍ପତିରାୟ ନାମକ ଜଣେ ବ୍ୟକ୍ତି ରଚନା କରିଛନ୍ତି 'ପାଇକ ଖେଦା' । ଏଥିରେ ପାଇକମାନଙ୍କର ଯୁଦ୍ଧସଜ୍ଜାର ଚିତ୍ର ବର୍ଣ୍ଣନା ବ୍ୟତୀତ ଓଡ଼ିଶାରେ ଯୁଦ୍ଧଯାତ୍ରା ପାଇଁ ବ୍ୟବହୃତ ଜାହାଜ ଓ ପୋତର ବିସ୍ତୃତ ବର୍ଣ୍ଣନା ଦେଇଛନ୍ତି । ପୋତଯୁଦ୍ଧର କୌଶଳ ଓ ସେ କୌଶଳ ପାଇଁ ପୋତର ନିୟନ୍ତ୍ରଣ ଓ ପରିଚାଳନ ଥିଲା ସ୍ୱତନ୍ତ୍ର । ଚମ୍ପତିରାୟ ୯ ପ୍ରକାର ପୋତର ବର୍ଣ୍ଣନା ଦେଇଛନ୍ତି । ବାଣିଜ୍ୟ କାରବାରରେ 'ଗେଟ୍ ମୁଖି' ଓ 'ଗାଣ୍ଡିଆ' ପୋତର ଆବଶ୍ୟକତା ଥିଲା । ସମରକଳାରେ ନିଯୁକ୍ତ ପୋତର ନାମ



'ସୁରଚାତୁରୀ', ରାଜପୁର, ଲାଞ୍ଜୁଆ, ଖାଇଜଂଗା, ଗଂଗପ୍ରସାଦ, ନନ୍ଦିଆ ଓ ଖୁତୁପ । ଏ ସବୁ ପୋତ ଗୁରୁ ବା ଶ୍ରେଷ୍ଠ । ଲାଞ୍ଜୁଆ ବୋଇତ ସୁନ୍ଦର ଓ ବୃହତ୍‌କାୟ । ଦୂରରୁ ମହାମେରୁ ପରି ଦିଶେ । 'ପାଇକଖେଦା' ବହିଟି ଯତ୍ନ ସହ ସଂପାଦିତ ହୋଇ ନଥିବାରୁ ତାହାର ଅନେକ ବର୍ଣ୍ଣନା ସ୍ପଷ୍ଟ ନୁହେଁ । ତେବେ ଏଠାରେ ଗ୍ରନ୍ଥର ବିଚାର ହେଉନାହିଁ, କେବଳ ପ୍ରାସଙ୍ଗିକ ସୂଚନା ପ୍ରଦାନ କରାଯାଉଛି ।

ଅବସରପ୍ରାପ୍ତ ଆଇ.ଏ.ଏସ୍. ଅଫିସର ହୃଷିକେଶ ପଣ୍ଡା ଲେଖିଛନ୍ତି, 'ଗର୍ବ କରିବାର କଥା (୨୦୧୦, ଫ୍ରେଣ୍ଡସ୍) । ଏଇଟିକୁ ଉପନ୍ୟାସ ରୀତିରେ ଲେଖିଲେ ମଧ୍ୟ ଆମୂଳଚୂଳ ବୋଇତରେ ବାଣିଜ୍ୟ ବ୍ୟବସାୟର ଚିତ୍ର ଦେଇଛନ୍ତି । ଗ୍ରନ୍ଥଟିରେ ବିଭିନ୍ନ ଶ୍ରେଣୀର ବୋଇତ ତିଆରି, ତାର ଆକାର ଓ ଆବଶ୍ୟକତା ଅନୁସାରେ ଲମ୍ବା, ଚଉଡ଼ା ଓ ଉଚ୍ଚତାର ନିର୍ଣ୍ଣୟ ହେଉଥିଲା । ଗୋଟିଏ ଗୋଟିଏ ବୋଇତ ଥିଲା ତିନି ବା ଚାରିମହଲାବିଶିଷ୍ଟ । ପ୍ରତ୍ୟେକ ମହଲାର ଉପଯୋଗିତା ନିର୍ଣ୍ଣୟ କରାଯାଉଥିଲା । ଏହି ସୂଚନାମାନର ଉଦ୍ଦେଶ୍ୟ ପ୍ରାଚୀନ ବାଣିଜ୍ୟ କାରବାର ଇତିହାସ ପ୍ରସିଦ୍ଧ ଓ ଏଥିସହିତ ବାଣିଜ୍ୟ-ସମର-ଯାତ୍ରୀ ପରିବହନ- ଦେଶପାତ୍ର ଯୋଗଯୋଗ ମାଧ୍ୟମରେ ସାଂସ୍କୃତିକ ସାମ୍ରାଜ୍ୟର ଦୃଢ଼ ଭିତ୍ତିଭୂମିର ପ୍ରତିଷ୍ଠା ହେଉଥିଲା । ସମରକୁଶଳ ଗୋଟିଏ ଜାତି ବାଣିଜ୍ୟ ବାହାଦୁର ଥିଲା । ସୁଦୂରାଞ୍ଚଳରୁ ଆୟ କରୁଥିବା ସଂପତ୍ତି ଦେଶର ବିକାଶରେ ବିନିଯୁକ୍ତ ହେଉଥିଲା । ବାଣିଜ୍ୟ ପାଇଁ ବସ୍ତୁ ସଂଗ୍ରହ ଓ ଆମଦାନି ସୂତ୍ରରେ ପ୍ରାପ୍ତ ଧନରତ୍ନର ସୁରକ୍ଷାପାଇଁ ରାଜନୀତି ଓ ପରିଚାଳନା ଥିଲା ସୁଦୃଢ଼ । ଇଂରାଜୀ ଭାଷାର ଇତିହାସକାର ଆଲବର୍ଟ ସି.ବର୍ ଲେଖିଛନ୍ତି, ଅବଶ୍ୟ ଇଂରେଜ ଜାତିର ଜାତୀୟ ଚରିତ୍ର ସଂପର୍କରେ ଯେ ଗୋଟିଏ ଜାତି ପ୍ରସିଦ୍ଧ ଓ ସ୍ମରଣୀୟ ହୁଏ ତିନୋଟି ଲକ୍ଷଣ ଥିଲେ (୧) ବହିର୍ବାଣିଜ୍ୟରେ ସିଦ୍ଧି, (୨) ସୁଶିକ୍ଷିତ ସୈନ୍ୟବାହିନୀ, (୩) ଆନ୍ତଃ ରାଜକୀୟ ସଂପର୍କରେ ଦୃଢ଼ତା । ଇଂରାଜୀ ଜାତି ପକ୍ଷରେ ଏହି ତିନୋଟି ସୁସଂଗଠିତ ଥିଲାରୁ ତା'ର ସାମ୍ରାଜ୍ୟରେ ସୂର୍ଯ୍ୟ ଅସ୍ତ ଯାଉ ନ ଥିଲା । ପ୍ରାଚୀନ କଳିଙ୍ଗ କ୍ଷେତ୍ରରେ ଏହି ଲକ୍ଷଣ ଥିଲା ବେଶ୍ ଉଦାହରଣୀୟ । ବ୍ରିଟିଶ ଜାତିଠାରୁ କାହିଁ କେତେ ବିସ୍ତୃତ ବିଶାଳ ସାମ୍ରାଜ୍ୟ, ନୌସେନା, ବାଣିଜ୍ୟ କାରବାର, ସୁଦୂର ଦ୍ୱୀପାଞ୍ଚଳ ବା ସ୍ଥଳଭୂମିରେ ଉପନିବେଶ କଳିଙ୍ଗ ଓଡ଼ିଶା ଭୂମିର ସ୍ମରଣୀୟ ଇତିହାସ । ବାଲିଯାତ୍ରା ଉତ୍ସବ ପାଳନ ବେଳେ ଓଡ଼ିଆ ଜାତି ଏହି କଥା ସ୍ମରଣକୁ ଆଣୁ । ତା'ର କର୍ତ୍ତବ୍ୟ ସ୍ଥିର କରୁ ।

ନଟବର ଶତପଥୀ

ଭ୍ରାମ୍ୟ : ୯୯୩୭୧୬୮୬୬୦

# ସୂଚୀପତ୍ର



## ଓଡ଼ିଆ ବିଭାଗ

## *English Section*





## *English Section*











ମା'କଟକ ଚଣ୍ଡୀ



ମା'ଗଡ଼ଚଣ୍ଡୀ



ମା'ଝାଞ୍ଜିର ମଙ୍ଗଳା, କଟକ



ମା'ବାସନ୍ତୀ ଦୁର୍ଗା, କଟକ



ଶ୍ରୀ ଶ୍ରୀ ଧବଳେଶ୍ୱର, କଟକ



କଟକ ଜୁଡିସିଆଲ ଏକାଡେମୀ



ଆକାଶମାର୍ଗରୁ ଜୋବ୍ରା, କଟକ





କାର୍ତ୍ତିକ ପୂର୍ଣ୍ଣିମାରେ ମହାନଦୀରେ ଡଙ୍ଗାଭସାର ସ୍ମୃତି







ରେଭେନ୍ସାର ସୂର୍ଯ୍ୟଘଡି ଓ କନିକା ପାଠାଗାର




ରେଭେନ୍ସା ବିଶ୍ୱବିଦ୍ୟାଳୟର ସେଭେନ୍ ପିଲାରସ୍



ବାରବାଟୀ ଷ୍ଟାଡ଼ିୟମ୍, କଟକ



ବିକାଶ ଭବନ, କଟକ



ଗଡ଼ଖାଇସ୍ଥିତ ସୟଦ୍ ଶହୀଦ ବାବା ବୁଖାରୀ



ଚନ୍ଦନ ପୋଖରୀ, କଟକ



କଟକ ସ୍ୱରାଜ ଆଶ୍ରମରେ ଗାନ୍ଧୀସ୍ମୃତି




ମଧୁବାବୁଙ୍କ ସମାଧିସ୍ଥଳ, ଗୋରାକବର



ପଲ୍ଲୀକବି ନନ୍ଦକିଶୋରଙ୍କ ବାସଭବନ, କୁସୁପୁର



ଗଣକବି ବୈଷ୍ଣବ ପାଣିଙ୍କ ପ୍ରତିମୂର୍ତ୍ତି, କୋଠପଦା



ଭଜନସମ୍ରାଟ ଭିକାରୀ ବଳଙ୍କ ପ୍ରତିମୂର୍ତ୍ତି, କଟକ



ନେତାଜୀଙ୍କ ପ୍ରତିମୂର୍ତ୍ତି, ଓଡ଼ିଆ ବଜାର, କଟକ

# ଓଡ଼ିଆ ଇତିହାସରେ ନୌବାଣିଜ୍ୟର ଚିତ୍ର

❖ ଆଶୁତୋଷ ପ୍ରସାଦ ପଟ୍ଟନାୟକ

ଦୀର୍ଘ ଦୁଇହଜାର ବର୍ଷରୁ ଅଧିକ କାଳ ଧରି ଯେଉଁଜାତି ସାମୁଦ୍ରିକ ବାଣିଜ୍ୟରେ ସକ୍ରିୟ ରହିଥିଲା ଓ ଏହି ସୁଦୀର୍ଘ ସମୟରେ, ପ୍ରଥମ କେତେ ଶହ ବର୍ଷ କାଳରେ, ଯେଉଁ ଜାତି ସମୁଦ୍ର ଯାତ୍ରାରେ ସମଗ୍ର ପୂର୍ବୋପକୂଳରେ ଅଗ୍ରଣୀ ଥିଲା, ଆଜି ତା'ର ଇତିହାସରେ ନୌ-ବାଣିଜ୍ୟର ଚିତ୍ର ଖୋଜି ବସିଲେ ଆମକୁ ନିରାଶ ହେବାକୁ ପଡ଼େ । ଅବଶ୍ୟ ଏ କଥା ସତ ଯେ, ଖାରବେଳଙ୍କ କଳିଙ୍ଗ ରାଜତ୍ୱ ପରେ ଦୀର୍ଘ ୫୦୦ ବର୍ଷ ଧରି 'ମାଠର' ରାଜବଂଶର ଅଭ୍ୟୁତ୍ଥାନ ପର୍ଯ୍ୟନ୍ତ, କଳିଙ୍ଗର ଅଦ୍ୟାବଧି ଅସ୍ପଷ୍ଟ ରହିଯାଇଛି । ତେଣୁ କେହି କେହି ଐତିହାସିକ ଏହାକୁ ଏକ ଅନ୍ଧକାର ଯୁଗ କହିଥାନ୍ତି । କିନ୍ତୁ ଏହା ପରେ, ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ, ଯେଉଁସବୁ ଐତିହାସିକ ଉପାଦାନ, ଅର୍ଥାତ୍ ଶିଳାଲିପି, ତାମ୍ରପତ୍ର, ପୋଥି ଓ ପୁରାଣ ଉପରେ ନିର୍ଭର କରି ଆମର ଇତିହାସ ଆଜି ରଚିତ ହୋଇଛି, ସେଥିରେ କୌଣସି ସ୍ଥଳରେ ଏହି ସମୁଦ୍ର ଯାତ୍ରା, ଅନ୍ୟ ଦେଶରେ ବାଣିଜ୍ୟ କାରବାର ଓ ଦ୍ୱୀପାନ୍ତରରେ ରାଜ୍ୟବିସ୍ତାର ସଂପର୍କରେ ଉଲ୍ଲେଖ ନାହିଁ । ଏ କଥା ଆମ ପାଇଁ ଯେପରି ସତ, ସମଗ୍ର ଭାରତ ପାଇଁ ମଧ୍ୟ ସେହିଭଳି ସତ । ଅର୍ଥାତ୍ ସମଗ୍ର ଦେଶର ପୂର୍ବ ଓ ପଶ୍ଚିମ ଉପକୂଳ ବନ୍ଦର ମାନଙ୍କ ଦ୍ୱାରା ହଜାର ହଜାର ବର୍ଷ ଧରି ଅନ୍ୟ ଦେଶ ସହ ବାଣିଜ୍ୟ ବ୍ୟବସାୟ ଚାଲି ଆସିଥିଲେ ସୁଦ୍ଧା ସେ ସମ୍ପର୍କରେ ଐତିହାସିକ ଦଲିଲ୍ ଖୋଜିଲେ ମଧ୍ୟ ମିଳେ ନାହିଁ । ଯାହା ମିଳେ, ତାହା କେବଳ ଧର୍ମ, ଯୁଦ୍ଧ ଓ ରାଜ୍ୟଜୟ ସମ୍ପର୍କୀୟ ବିବରଣୀ । ତହିଁରେ ବ୍ୟବସାୟ ବାଣିଜ୍ୟକୁ କେବେହେଲେ ଅଗ୍ରାଧିକାର ଦିଆଯାଇନାହିଁ । ଉଦାହରଣ ସ୍ୱରୂପ ପାଳ ବଂଶୀୟ ରାଜା ଦେବପାଳଦେବଙ୍କର ଖ୍ରୀ.ଅ ୮୪୯ ରେ ପ୍ରସିଦ୍ଧ 'ନାଳନ୍ଦା ଘୋଷଣାନାମା' (Nalanda Charter) କୁ ବିଚାରକୁ ନିଆଯାଇପାରେ । ଏହାଦ୍ୱାରା ସୁବର୍ଣ୍ଣଦ୍ୱୀପର ଶୈଳେନ୍ଦ୍ର ବଂଶୀୟ ରାଜା ବାଳପୁତ୍ର ଦେବଙ୍କ ଦ୍ୱାରା ନିର୍ମିତ 'ବିହାର' ରକ୍ଷଣାବେକ୍ଷଣ ପାଇଁ ୫ଟି ଗ୍ରାମ ଦାନ ଦିଆଯାଇଥିଲା । ଠିକ୍ ସେହିଭଳି, ଶ୍ରୀବିଜୟରେ ରାଜତ୍ୱ କରୁଥିବା ଶୈଳେନ୍ଦ୍ର ବଂଶୀୟ ମହାରାଜ କୁମାର ବିଜୟତୁଙ୍ଗ ବର୍ମନଙ୍କୁ ନିଜ ପିତାଙ୍କ ନାମରେ 'ନାଗି ପାଟଣା'ରେ ଏକ ବିହାର ନିର୍ମାଣ କରିବା ପାଇଁ ଚୋଳରାଜ ରାଜରାଜ (ପ୍ରଥମ) ଖ୍ରୀଷ୍ଟାବ୍ଦ ୧୦୦୫ ରେ ଦେଇଥିବା ଅନୁମତି ପତ୍ର ଓ ଏହି ବିହାରର ରକ୍ଷଣାବେକ୍ଷଣ ପାଇଁ ଗ୍ରାମଦାନର ଘୋଷଣା ସଂସ୍କୃତ ଓ ତାମିଲ ଭାଷାରେ ଲିପିବଦ୍ଧ ରହିଛି । ପରବର୍ତ୍ତୀ କାଳରେ ଚୋଳରାଜ ରାଜେନ୍ଦ୍ର ଚୋଳଙ୍କର ସୁବର୍ଣ୍ଣଦ୍ୱୀପ ଆକ୍ରମଣ, ବିଜୟପ୍ରାପ୍ତି ଓ ସେଠାରେ ବହୁ ଦ୍ୱୀପର ଅଧିକାର ବୃତ୍ତାନ୍ତ, ଏକ ବିସ୍ତୃତ ବିବରଣୀ ଆକାରରେ ଖ୍ରୀଷ୍ଟାବ୍ଦ ୧୦୩୦-୧୦୩୧ ରେ ଲିଖିତ 'ତାନଯୋର୍‌ର' ଏକ ଶିଳାଲିପିରେ ଦେଖିବାକୁ ମିଳେ । କିନ୍ତୁ ପୂର୍ବୋପକୂଳର କୌଣସି ରାଜ୍ୟରେ ଦକ୍ଷିଣ-ପୂର୍ବ ଏସିଆର ରାଜ୍ୟମାନଙ୍କ ସହ ଅତୀତରେ ଚାଲିଥିବା ବ୍ୟବସାୟ ବାଣିଜ୍ୟ ବିଷୟକ ଏକ ଶିଳାଲିପି କିମ୍ବା ତାମ୍ରପତ୍ରର ଲିକିତ ପ୍ରମାଣ ଏ ପର୍ଯ୍ୟନ୍ତ ମିଳି ନାହିଁ । ବର୍ତ୍ତମାନ ଭାରତୀୟ ସାହିତ୍ୟ ତଥା ଓଡ଼ିଆ ସାହିତ୍ୟରେ ଏପରି କୌଣସି ନିର୍ଭରଯୋଗ୍ୟ ପ୍ରମାଣ ରହିଛି କି ନାହିଁ ଆମର ଦେଖିବା କଥା ।

### ଭାରତୀୟ ପ୍ରାଚୀନ ସାହିତ୍ୟରେ ନୌ-ବାଣିଜ୍ୟର ଚିତ୍ର

ଇତିହାସ ସମ୍ବଳିତ ପ୍ରାଚୀନ ଭାରତୀୟ ସାହିତ୍ୟକୁ ତତ୍‌ତୁଲ୍ୟ ଚୀନଦେଶର ସାହିତ୍ୟ ସହିତ ତୁଳନା କଲେ, ସାଧାରଣତଃ ଆମେ ଭାରତୀୟ ସାହିତ୍ୟରେ ବହୁ ଦୁର୍ବଳତା ଲକ୍ଷ୍ୟ କରିଥାଉ । ପରିମାଣ ଦୃଷ୍ଟିରୁ ଏହା ଯଥେଷ୍ଟ କମ୍ ଏହାର ବର୍ଣ୍ଣନା ଅନେକ କ୍ଷେତ୍ରରେ ଭ୍ରମାତ୍ମକ ଓ ଏହାର କାଳ ନିରୂପଣ ମଧ୍ୟ ସହଜ ନୁହେଁ । ତେଣୁ ବହୁ କ୍ଷେତ୍ରରେ ଏହା ଚୀନ୍ ଓ ସିଂହଳର ପ୍ରାଚୀନ ତଥା ମଧ୍ୟଯୁଗୀୟ



ଭଳି ନିର୍ଭରଯୋଗ୍ୟ ମନେହୁଏ ନାହିଁ । ସର୍ବପ୍ରାଚୀନ ତଥା ମଧ୍ୟଯୁଗୀୟ ଗ୍ରନ୍ଥଗୁଡ଼ିକ ଭଳି ନିର୍ଭରଯୋଗ୍ୟ ମନେହୁଏ ନାହିଁ । ସର୍ବପ୍ରାଚୀନ ଭାରତୀୟ ଗ୍ରନ୍ଥ ଭିତରେ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର, ମହାନିର୍ଦ୍ଦେଶ ଓ କେତେକ ଜାତକ ଗଳ୍ପରେ 'ସୁବର୍ଣ୍ଣଭୂମି' ଅଞ୍ଚଳ ସମ୍ପର୍କରେ କେତେକ କଥା ରହିଥିବାର ଜଣାଯାଇଛି । ତେଣୁ ଏହା ରଚିତ ହେଲାବେଳକୁ ସେହିସବୁ ଅଞ୍ଚଳ ସହିତ ସାମୁଦ୍ରିକ ସମ୍ପର୍କ ସ୍ଥାପିତ ହୋଇଥିଲା ବୋଲି ବିଶ୍ୱାସ କରାଯାଇପାରେ । ବୁଦ୍ଧଦେବଙ୍କ ଜୀବନକାଳ ଓ ପରବର୍ତ୍ତୀ ସମୟରେ, ଜାତକଗୁଡ଼ିକ ପ୍ରଥମେ ଲୋକମୁଖରେ ଗଳ୍ପାକାରରେ କଥିତ ହେବା ଓ ପରବର୍ତ୍ତୀ କାଳରେ କୌଣସି ସମୟରେ, ପୋଥିରେ ଲିପିବଦ୍ଧ ହୋଇଥିବାକୁ ପଣ୍ଡିତମାନେ ବିଶ୍ୱାସ କରନ୍ତି । ଏହାର ବହୁ ଶତାବ୍ଦୀ ପରେ ରଚିତ ହୋଇଥିବା ସିଂହଳର କେତେକ ପଞ୍ଜିକା (Chronical) ରେ ଉଲ୍ଲେଖ ଅଛି ଯେ, ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀ ବେଳକୁ ଏ ଦେଶରେ ଜାତକ ଗଳ୍ପର ପ୍ରଚଳନ ଆରମ୍ଭ ହୋଇଯାଇଥିଲା । କିନ୍ତୁ ସୁବର୍ଣ୍ଣଭୂମିର ବର୍ଣ୍ଣନା ରହିଥିବା ନିର୍ଦ୍ଦିଷ୍ଟ ଜାତକଗୁଡ଼ିକ ସେ ସମୟରେ ରଚିତ ହୋଇଥିଲା କି ନାହିଁ, କହିବା ଏକାନ୍ତ କଷ୍ଟକର । ବୌଦ୍ଧଗ୍ରନ୍ଥ 'ମହାନିର୍ଦ୍ଦେଶ' ସମ୍ରାଟ ଅଶୋକଙ୍କର ରାଜତ୍ୱକାଳରେ ଖ୍ରୀ.ପୂ ତୃତୀୟ ଶତାବ୍ଦୀରେ ରଚିତ ହୋଇଥିଲା ବୋଲି, ଅନେକ ପଣ୍ଡିତ ଯୁକ୍ତି କରନ୍ତି । ଏହି ଗ୍ରନ୍ଥରେ ଥିବା ଭୌଗୋଳିକ ବିଷୟବସ୍ତୁରେ ଦକ୍ଷିଣ-ପୂର୍ବ ଏସିଆର କେତେକ ସ୍ଥାନର ନାମ ରହିଯାଇଥିବାରୁ, ସେତେବେଳକୁ ଭାରତୀୟମାନେ ଏହି ଅଞ୍ଚଳ ସହ ସମ୍ପର୍କ ସ୍ଥାପନ କରିଥିବେ ବୋଲି ବିଶ୍ୱାସ କରାଯାଏ । 'ରାମାୟଣ' ଓ 'ମହାଭାରତ' ଭଳି ପ୍ରାଚୀନ ଗ୍ରନ୍ଥ ବହୁ ଶତାବ୍ଦୀ ଧରି ବହୁ ମୁନିଙ୍କ ଦ୍ୱାରା ପରିବର୍ତ୍ତିତ ଓ ପରିବର୍ଦ୍ଧିତ ହୋଇଥିବାରୁ, ସେଥିରେ ଥିବା କେତେକ ତଥ୍ୟର ସମୟ ନିରୂପଣ, ଆଜି ଏକ ସମସ୍ୟା ହୋଇ ଦେଖାଦିଏ । କେତେକ ପଣ୍ଡିତଙ୍କ ମତରେ ମହାଭାରତ ତା'ର ବର୍ତ୍ତମାନର ରୂପ ଗ୍ରହଣ କଲାବେଳକୁ ଖ୍ରୀଷ୍ଟାବ୍ଦ ଚତୁର୍ଥ ଶତାବ୍ଦୀ ହୋଇଯାଇଥିଲା । ଏ ଦୁଇଟି ମହାଗ୍ରନ୍ଥର ରଚନାକାଳ ଯାହା ହେଉନା କାହିଁକି, ଏହା ସୁବର୍ଣ୍ଣଦେଶ ଓ ସୁବର୍ଣ୍ଣଦ୍ୱୀପ ସହିତ ଆମର ଅତୀତ ସମ୍ପର୍କ ସୂଚାଇବାରେ ବିଶେଷ ଉପଯୋଗୀ ନୁହେଁ ।

ମହାଭାରତ ଓ ରାମାୟଣ ଏ ଦେଶରେ ଅଠରଟି ପୁରାଣ ରଚିତ ହୋଇଥିଲା । କେତେକ ପଣ୍ଡିତଙ୍କ ମତରେ, ଖ୍ରୀଷ୍ଟାବ୍ଦ ଚତୁର୍ଥ ଶତାବ୍ଦୀରେ, ଏଗୁଡ଼ିକର କେତେକ ପରିବର୍ତ୍ତନ ମଧ୍ୟ କରାଯାଇଥିଲା । ଦକ୍ଷିଣ-ପୂର୍ବ ଏସିଆର କେତେକ ସ୍ଥାନର ନାମ ଏହି ପୁରାଣ ଗୁଡ଼ିକରେ ମିଳିଲେ ବି, ସେଗୁଡ଼ିକର ନିତାନ୍ତ ଅସଙ୍ଗତମ ଭାବରେ ଦେଖା ଦେଇଥାଏ । ସମସ୍ତ ପୁରାଣରେ କେତୋଟି କଥା ପ୍ରାୟ ସମାନ ଥିବାର ଜଣାଯାଇଛି, ଯଥା-ପୃଥିବୀର ସପ୍ତଦ୍ୱୀପ, ସପ୍ତସମୁଦ୍ର, ଜମ୍ବୁଦ୍ୱୀପର ବିଭିନ୍ନ ବିଭାଗ, ମେରୁର ଅବସ୍ଥିତି ଓ ଆୟତନ ଇତ୍ୟାଦି । ଏହି ପୁରାଣରେ ମିଳୁଥିବା ଅନେକ ବିଦେଶାଞ୍ଚଳର ନାମ, ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ରଚିତ 'ମଞ୍ଜୁଶ୍ରୀ ମୂଳକଳ୍ପ'ରେ ମଧ୍ୟ ରହିଛି; କିନ୍ତୁ ଏହାର ବର୍ଣ୍ଣନା ଅଧିକ ଆକର୍ଷଣୀୟ ମନେହୁଏ ।

ସୁବର୍ଣ୍ଣଦେଶ ଓ ଦ୍ୱୀପାଞ୍ଚଳ ସମ୍ପର୍କରେ, ବିଶେଷତଃ ସମୁଦ୍ରଯାତ୍ରା ଓ ବାଣିଜ୍ୟ ବିଷୟରେ ଅଧିକ ନିର୍ଭରଯୋଗ୍ୟ ତଥ୍ୟ ପ୍ରାଚୀନ କଥା ସାହିତ୍ୟରୁ ମିଳିଥାଏ । ଠିକ୍ ବୌଦ୍ଧଜାତକ ଭଳି, ଏଗୁଡ଼ିକର ମଧ୍ୟ ସମୟ ନିରୂପଣ ସହଜରେ କରାଯାଇପାରେ ନାହିଁ; କିନ୍ତୁ ଏ ସମସ୍ତ କଥା ସାହିତ୍ୟ ଗୁଣାଢ଼୍ୟଙ୍କର 'ବୃହତ୍ କଥା'ରୁ ଉତ୍ପତ୍ତି ବୋଲି ପଣ୍ଡିତମାନେ ବିଶ୍ୱାସ କରନ୍ତି । ଏହି 'ବୃହତ୍ କଥା', 'ପୈଶାଚୀ-ପ୍ରାକୃତ' ଭାଷାରେ, ଖ୍ରୀଷ୍ଟାବ୍ଦ ଦ୍ୱିତୀୟ ଶତାବ୍ଦୀଠାରୁ ଚତୁର୍ଥ ଶତାବ୍ଦୀ ମଧ୍ୟରେ ରଚିତ ହୋଇଥିଲା ବୋଲି କୁହାଯାଇଥାଏ । ଆଜି ଗୁଣାଢ଼୍ୟଙ୍କର ମୂଳ 'ବୃହତ୍ କଥା' ସମ୍ପୂର୍ଣ୍ଣ ଲୁପ୍ତ ହୋଇଥିବାରୁ, ପରବର୍ତ୍ତୀ କାଳରେ ଏଥିରେ କେତେକ ପରିବର୍ତ୍ତନ ହୋଇଥିବ ବୋଲି ଅନୁମାନ କରାଯାଏ । କିନ୍ତୁ ଏହି କଥା ସାହିତ୍ୟରୁ ଏକ ବିଶେଷ ସତ୍ୟ ଅନୁମିତ ହୋଇଥାଏ; ତାହା ହେଲା-ସଂସ୍କୃତରେ ରଚିତ ଅର୍ଥଶାସ୍ତ୍ର, ପୁରାଣ ଓ ଧର୍ମଗ୍ରନ୍ଥ ଅପେକ୍ଷା ପ୍ରାଚୀନ ଲୋକଗଳ୍ପର ଭିତ୍ତିଭୂମି ଉପରେ ରଚିତ, ଜାତକ ଗଳ୍ପ ଓ କଥା ସାହିତ୍ୟରେ ପ୍ରାଚୀନ ଭାରତର ଜନଜୀବନ ଅଧିକ ପ୍ରତିଫଳିତ ହୋଇଛି ଓ ସେଗୁଡ଼ିକରେ ସମୁଦ୍ରଯାତ୍ରା, ନୌ-ବାଣିଜ୍ୟ ଓ ବିଦେଶ ବର୍ଣ୍ଣନା ଅଧିକ ପରିମାଣରେ ରହିଛି ।

**ଓଡ଼ିଆ ଭାଷା ଓ ଏହାର ସୃଷ୍ଟିକାଳ**

ଓଡ଼ିଆ ଭାଷା ସାହିତ୍ୟରେ ସମୁଦ୍ରଯାତ୍ରା ଓ ନୌ-ବାଣିଜ୍ୟ ଚିତ୍ର ଅଛି କି ନାହି ଜାଣିବା ଓ ତା'ର କାଳ ନିରୂପଣ କରିବା





ପୂର୍ବରୁ, ଏହି ଭାଷାର ସୃଷ୍ଟିକାଳ ଓ ଇତିହାସ ସମ୍ପର୍କରେ ସମ୍ୟକ୍ ଆଲୋଚନା ଆବଶ୍ୟକ । ଖ୍ରୀଷ୍ଟାବ୍ଦ ପ୍ରଥମ ଶତାବ୍ଦୀରେ ସଂସ୍କୃତରେ ରଚିତ ଭରତଙ୍କ ନାଟ୍ୟଶାସ୍ତ୍ରରେ 'ଉଡ୍ର' ଭାଷାକୁ ଏକ ଭାରତୀୟ ବିଭାଷା ବା ନିକୃଷ୍ଟ ଭାଷା କୁହାଯାଇଥିଲେ ସୁଦ୍ଧା, ସେତେବେଳର ଉଡ୍ରଭାଷାର ସ୍ୱରୂପ ସମ୍ପର୍କରେ, ଆମେ ଆଜି ସମ୍ପୂର୍ଣ୍ଣ ଅନଭିଜ୍ଞ । ଓଡ଼ିଆଭାଷାର ଇତିହାସ ସମ୍ପର୍କରେ ବିଭିନ୍ନ ପଣ୍ଡିତଙ୍କ ତଥା ବିଚାରକୁ ନେଲେ ଦେଖାଯାଏ ଯେ କପିଳେନ୍ଦ୍ରଦେବଙ୍କ ରାଜତ୍ୱ କାଳରେ ଅର୍ଥାତ୍ ପାଞ୍ଚଦଶ ଶତାବ୍ଦୀରେ, ରାଜକୀୟ ଅନୁଶାସନ ମାନଙ୍କରେ ତତ୍କାଳୀନ ଓଡ଼ିଆ ଭାଷାର ବ୍ୟବହାର ହେବା ସହିତ, ଓଡ଼ିଆ ସାହିତ୍ୟର ପ୍ରଧାନ ଆଦିଗ୍ରନ୍ଥ 'ଶାରଳା ମହାଭାରତ' ରଚିତ ହୋଇଥିଲା । କିନ୍ତୁ ଏହାର ବହୁପୂର୍ବରୁ ଏ ଭାଷା ନିଶ୍ଚିତ ଭାବେ ସୃଷ୍ଟି ହୋଇଥିବ । ତ୍ରୟୋଦଶ ଶତାବ୍ଦୀରେ ଗଠିତ 'କୋଣାର୍କ'ର ନାଟମନ୍ଦିର ଗାତ୍ରରେ ଜଣେ ଶିଳ୍ପୀର ନାମ ଓଡ଼ିଆ ଅକ୍ଷରରେ ଲେଖାଯାଇଛି । ମାର୍ଜିତ ଓଡ଼ିଆଭାଷା ସପ୍ତଦେଶ, ଅଷ୍ଟାଦଶ ଶତାବ୍ଦୀରେ ରଚିତ କାବ୍ୟ କବିତାରେ ଆତ୍ମପ୍ରକାଶ କରିଥିଲେ ସୁଦ୍ଧା, ତା'ର ପାଞ୍ଚଶହ ବର୍ଷ ପୂର୍ବରୁ ଏ ରାଜ୍ୟର ଲୋକେ ବୋଧହୁଏ ଓଡ଼ିଆରେ ଲେଖାପଢ଼ା କରିପାରୁଥିଲେ । ବହୁକାଳ ଧରି ସଂସ୍କୃତ ରାଜଭାଷା ଓ ଶିକ୍ଷିତ ଗୋଷ୍ଠୀର ଭାଷା ହୋଇଥିବାରୁ, ତ୍ରୟୋଦଶ ଶତାବ୍ଦୀ ପୂର୍ବରୁ ଓଡ଼ିଆ ଅକ୍ଷରରେ ରଚନା ବିଶେଷ ପ୍ରଚଳିତ ନ ଥିଲା । ସାଧାରଣତଃ ପାଲୀ, ପ୍ରାକୃତଭାଷାରୁ କାଳକ୍ରମେ ଓଡ଼ିଆ ଭାଷାର ସୃଷ୍ଟି ହେଲା ବୋଲି ଆମେ ମନେକରୁ ଓ ଏହି ଭାଷା ଉପରେ ବିଭିନ୍ନ ଦିଗରୁ ସଂସ୍କୃତ, ଦ୍ରାବିଡଭାଷା ଓ କୋଲ୍ହ, ମୁଣ୍ଡା, ଶବର ପ୍ରଭୃତି ଆଦିବାସୀ ଭାଷାର ପ୍ରଭାବ ରହିଛି ବୋଲି ସ୍ୱୀକାର କରିଥାଉ । କିନ୍ତୁ ଏହି ଅଞ୍ଚଳର ଅଧିବାସୀମାନେ ଦୀର୍ଘକାଳ ଧରି ବହୁ ବୈଦେଶିକ ଜାତିଙ୍କର ସଂସ୍ପର୍ଶରେ ଆସିଥିବାରୁ 'ଓଡ଼ିଆ ଭାଷା' ଉପରେ ବହୁ ବୈଦେଶିକ ଭାଷାର ପ୍ରଭାବ ନିଶ୍ଚିତ ଭାବରେ ପଡ଼ିଥିବ । ସାଧାରଣତଃ ଯେଉଁ ଦେଶ ଯେତେ ବେଶୀ ବୈଦେଶିକ ବାଣିଜ୍ୟ ଉପରେ ନିର୍ଭର କରେ, ସେ ଦେଶ, ଅନ୍ୟ ଦେଶ ଓ ଜାତିମାନଙ୍କ ସହ ସେତେ ବେଶୀ ବ୍ୟବସାୟିକ ଆଦାନପ୍ରଦାନ କରିଥାଏ । ଫଳରେ ଏହି ସାମୁଦ୍ରିକ ବାଣିଜ୍ୟ କେବଳ ଏକମୁଖୀ ହୋଇ ରହେନାହିଁ । ଏ ଦେଶର ଲୋକ ସେ ଦେଶକୁ ବାଣିଜ୍ୟ ପାଇଁ ଗଲେ, ସେହିମାନଙ୍କ ସାହାଯ୍ୟରେ, ସେ ଦେଶର ଲୋକ ମଧ୍ୟ ଏ ଦେଶକୁ ଆସନ୍ତି, ଏଠାରେ ବାଣିଜ୍ୟ ବ୍ୟବସାୟ କରନ୍ତି ଓ ନୂଆ ନୂଆ ବସତି ମଧ୍ୟ ସ୍ଥାପନ କରନ୍ତି । ତ୍ରୟୋଦଶ ଓ ଚତୁର୍ଦ୍ଦଶ ଶତାବ୍ଦୀରେ ଏପରି ଆସିଥିବା, ଅନେକ ଚୀନାଲୋ ଏ ଦେଶରେ ବସତି ସ୍ଥାପନ କରିଥିବାର ପ୍ରମାଣ ପୂର୍ବରୁ ଦିଆଯାଇଛି । ଠିକ୍ ସେହିଭଳି ଦୀର୍ଘ ଅତୀତରେ ଜାଭା, ସୁମାତ୍ରା, ବାଲି, ମାଳୟ, ବର୍ମା, କୋରିଆ ଓ ଜାପାନର ବଣିକ ତଥା ନାବିକମାନେ ଆସି ଏ ରାଜ୍ୟର ବିଭିନ୍ନ ଅଞ୍ଚଳରେ ବସତି ସ୍ଥାପନ କରିଥିବାର ପ୍ରମାଣ ଆଜି ବିଭିନ୍ନ ସ୍ଥାନର ନାମରୁ ମିଳିଥାଏ । ସାଧାରଣତଃ ଏହି ବୈଦେଶିକ ବସତିଗୁଡ଼ିକ ଆଜି ସୁଦୂର ଅତୀତରେ ଆସିଥିବା ଦେଶ କିମ୍ବା ସେଠାକାର କୌଣସି ପ୍ରଧାନ ବନ୍ଦରରେ ନାମ ବହନ କରନ୍ତି, ଯଥା-ଲଙ୍କା, ସିଂହଳ, କଲମ୍ବୋ, ଜାଭା, କର୍ମରଙ୍ଗା, ବାଲି, ନିପ୍ପନ (ଜାପାନ), ପୁଞ୍ଜିୟାମା, କୋରିଆ ଓ ଚମ୍ପା ପ୍ରଭୃତି ସହସ୍ରାଧିକ ସ୍ଥାନର ନାମ ଓଡ଼ିଶାରେ ରହିଛି । କିନ୍ତୁ ଏହିସବୁ ବସତିର ପ୍ରାଚୀନ ଅଧିବାସୀମାନେ, ସମୟକ୍ରମେ, ନିଜକୁ ସ୍ଥାନୀୟ ଅଧିବାସୀମାନଙ୍କ ସହ ଏପରି ମିଶାଇ ଦେଇଛନ୍ତି ଯେ, କେବଳ ସ୍ଥାନର ନାମ ବ୍ୟତୀତ ସେମାନଙ୍କର କୌଣସି ପୃଥକ୍ ପରିଚୟ ଆଜି ଖୋଜିଲେ ମଧ୍ୟ ମିଳେନାହିଁ । କିନ୍ତୁ ଦକ୍ଷିଣ-ପୂର୍ବ ଏସିଆର ଦେଶଗୁଡ଼ିକରେ ସବୁ ସ୍ଥଳରେ ଏପରି ହୋଇନାହିଁ । ଇଣ୍ଡୋନେସିଆ, ମାଲୟେସିଆ ଓ ଫିଲିପିନ୍ସର କେତେକ ଅଞ୍ଚଳରେ ଦିନେ ପ୍ରଶଚୀନ କଳିଙ୍ଗରୁ ଯାଇଥିବା ଲୋକେ, ଆଜି ମଧ୍ୟ 'କ୍ଲିଙ୍ଗ୍' ଓ 'କେଲିଙ୍ଗ୍' ରୂପେ ପରିଚିତ । ଅର୍ଥାତ୍ ସେଠାକାର ଓମାଜ, ପ୍ରାଚୀନ କଳିଙ୍ଗ ଭଳି ଉଦାର ଭାବରେ ସମସ୍ତ ବୈଦେଶିକମାନଙ୍କୁ ନିଜର କରିପାଣି ନାହିଁ । ବୋଧହୁଏ କଳିଙ୍ଗର ଜାତୀୟ ଚରିତ୍ରରେ ଏହି ମହାନୁଭବତା ପାଇଁ ଏହି ରାଜ୍ୟ ବହୁକାଳ ଧରି ବୈଦେଶିକ ମାନଙ୍କର ଏକ ପ୍ରଧାନ ସମ୍ମିଳନ ତୀର୍ଥ ହୋଇଥିଲା ଓ ବହୁଭାଷା ତଥା ସଂସ୍କୃତିର ଧାରା ଏହିଠାରେ ହିଁ ବିନା ବାଧାରେ ମିଳିତ ହୋଇପାରୁଥିଲା । ଏକଦା ଏହିସବୁ କାରଣରୁ ଏହି ରାଜ୍ୟରେ ବହୁ ଆଞ୍ଚଳିକ ଭାଷା ସୃଷ୍ଟି ହୋଇଥିବ ଓ ସେଥିପାଇଁ ସମନ୍ୱୟ ରକ୍ଷାକାରୀ ଭାଷାର ଆବଶ୍ୟକତା ଦେଖା ଦେଇଥିବ । କାଳକ୍ରମେ ଉଡ୍ରଭାଷା ହିଁ ଏହି ଭୂମିକା ଗ୍ରହଣ କରିଥିବ ଓ ଏହି ବାଟରେ ଭାଷାର ସମୃଦ୍ଧି ଘଟି,



ଏହା ଏଖ ସର୍ବବୃହତ୍ ଗୋଷ୍ଠୀର ଭାଷା ହେଲା ବେଳକୁ ବହୁ ସମୟ ଅତିବାହିତ ହୋଇଥିବ । ତାହାହିଁ ବୋଧହୁଏ, ଏକ ପରିପୁଷ୍ଟ ଭାଷାର ସୃଷ୍ଟିରେ ବିଳମ୍ବର ପ୍ରଧାନ କାରଣ । ଆଜିର ଓଡ଼ିଆ ଭାଷାରେ କି ବୈଦେଶିକ ଶବ୍ଦ ରହିଛି ଓ ତାହା କେଉଁ କେଉଁ ଭାଷାରୁ ଆସିଛି, ସେ ସମ୍ପର୍କରେ ଆମେ ଅଦ୍ୟାବଧି ଯଥେଷ୍ଟ ଅବଗତ ନୋହୁ । ଏ ବ୍ୟାପାରରେ ଗବେଷଣା କରାଯାଇ ପାରିଲେ, ଏ ଜାତିର ପ୍ରାଚୀନ 'ବୈଦେଶିକ ସମ୍ପର୍କ' ସହଜରେ ସୂଚିତ ହୋଇପାରନ୍ତା ।

## ପ୍ରାଚୀନ ଗ୍ରନ୍ଥରେ କଳିଙ୍ଗର ନୌ-ବାଣିଜ୍ୟ

ଓଡ଼ିଆଭାଷା ଏ ମାଟିରେ ଏକ ମୁଖ୍ୟଭୂମିକା ଗ୍ରହଣ କରିବାର ବହୁପୂର୍ବରୁ, ଏଠାରେ ସଂସ୍କୃତଭାଷାରେ ବହୁ ପ୍ରାଚୀନ ଗ୍ରନ୍ଥ ରଚିତ ହୋଇଥିଲା; କିନ୍ତୁ କୌଣସିଟିରେ ନୌ-ବାଣିଜ୍ୟ ସମ୍ପର୍କୀୟ ବିବରଣୀ ରହିଥିବାର ପ୍ରମାଣ ଏ ପର୍ଯ୍ୟନ୍ତ ମିଳିନାହି । ବିଭିନ୍ନ ପୁରାଣ ତଥା ବୌଦ୍ଧଧର୍ମ ଗ୍ରନ୍ଥରେ କଳିଙ୍ଗ, ଉତ୍କଳ, କୋଶଳ କିମ୍ବା କୋଙ୍ଗଦ ରାଜ୍ୟର ବହିର୍ବାଣିଜ୍ୟ କଥା ଉଲ୍ଲେଖ ଥିବାର ମଧ୍ୟ ଜଣାଯାଇନାହିଁ । କିନ୍ତୁ ଏହି ଅଞ୍ଚଳରେ ଦୀର୍ଘକାଳ ଅନୁସୃତ ଜୈନଧର୍ମର କେତେକ ଗ୍ରନ୍ଥରେ କଳିଙ୍ଗର ପ୍ରଧାନ ନଗର ଓ ବନ୍ଦର 'କାଞ୍ଚନପୁର' ସମ୍ପର୍କରେ ଉଲ୍ଲେଖ ରହିଛି । ଏକଦା ଶ୍ରୀଲଙ୍କା ଓ ଏହି ନଗରୀ ମଧ୍ୟରେ ମୁକ୍ତ ବାଣିଜ୍ୟ କାରବାର ରହିଥିବାର ମଧ୍ୟ କୁହାଯାଇଛି । (ବାସୁଦେବ ହିନ୍ଦୀ-ପୃ-୧୧୧) । ଜୈନ ନରପତି କରକଣ୍ଡୁ (କରଣ୍ଡୁ)ଙ୍କର କଳିଙ୍ଗ ରାଜତ୍ୱ କାଳରେ 'କାଞ୍ଚନପୁର' ଏକ ପ୍ରଧାନ ବାଣିଜ୍ୟସ୍ଥଳୀ ହୋଇଥିବାର ଜଣାଥିବାରୁ, ଶ୍ରୀଲଙ୍କା ସହିତ କଳିଙ୍ଗର ବାଣିଜ୍ୟ ଖ୍ରୀ.ପୂ. ଅଷ୍ଟମ କିମ୍ବା ସପ୍ତମ ଶତାବ୍ଦୀରେ ଆରମ୍ଭ ହୋଇଥିବ ବୋଲି ବିଶ୍ୱାସ କରାଯାଇପାରେ । କାଞ୍ଚନପୁରର ତତ୍କାଳୀନ ଭୌଗଳିକ ଅବସ୍ଥିତି ସମ୍ପର୍କରେ ଅଧିକ ତଥ୍ୟ ଜଣା ନଥିବାରୁ, ଏହି ପ୍ରାଚୀନ ନଗରୀର ସ୍ଥାନ ନିରୂପଣ କରିବା ଆଜି ଏକାନ୍ତ କଷ୍ଟକର ।

'ନ୍ୟାୟ ଧମ୍ମ କାହା' ନାମକ ପ୍ରାକୃତ ଭାଷାରେ ରଚିତ ଜୈନ ଧର୍ମଗ୍ରନ୍ଥ (ସମ୍ପାଦନା ବୈଦ୍ୟ, ୧୯୪୦, ପୁନା-ପୃ-୨୦୧)ରେ ଉଲ୍ଲେଖ ରହିଛି ଯେ, କଳିଙ୍ଗର 'ହାଠସିସ୍' (Hatthasis) ନାମକ ନଗର ଏକଦା ଏକ ପ୍ରଧାନ ବାଣିଜ୍ୟ କେନ୍ଦ୍ର ହୋଇଥିଲା । ଏହି ନଗରୀରୁ ବହୁ ବଣିକ ସାମୁଦ୍ରିକ ବାଣିଜ୍ୟ ପାଇଁ 'କଳିଙ୍ଗ ଦ୍ୱୀପ' (ଜାଭା)କୁ ଯାଇଥିଲେ । ମହାବୀର, ତାଙ୍କର କଳିଙ୍ଗ ଭ୍ରମଣ କାଳରେ, ଏହି ନଗରୀରେ କିଛିକାଳ ଅବସ୍ଥାନ କରିଥିବା ବିଷୟ ମଧ୍ୟ ଜୈନ ଧର୍ମଗ୍ରନ୍ଥରେ ଉଲ୍ଲେଖ ରହିଛି । କିନ୍ତୁ ଏହା ସତ ଯେ, ମହାବୀରଙ୍କ ଜୀବନକାଳ, ଅର୍ଥାତ୍ ଖ୍ରୀ.ପୂ ପଞ୍ଚମ ଶତାବ୍ଦୀରେ, 'ହାଠସିସ୍' ନଗରୀ ରହିଥିଲେ ସୁଦ୍ଧା 'କଳିଙ୍ଗ ଦ୍ୱୀପ'ର ଅସ୍ତିତ୍ୱ ନଥିଲା । ଚୀନଦେଶର ଇତିହାସରୁ ଜଣାଯାଏ New History of Tang ଯେ ଖ୍ରୀଷ୍ଟାବ୍ଦ ସପ୍ତମ ଶତାବ୍ଦୀରେ ଜାଭା ଦ୍ୱୀପରେ ହୋଲିଙ୍ଗ (କଳିଙ୍ଗ) ନାମକ ଏକ ସମୃଦ୍ଧିଶାଳୀ ରାଜ୍ୟ ଗଢ଼ି ଉଠିଥିଲା । ସେତେବେଳେ ଏହା, ବୌଦ୍ଧ ସଂସ୍କୃତିର ଏକ ପ୍ରଧାନକେନ୍ଦ୍ର ଥିଲା ଓ ଏଠାରେ 'ଜ୍ଞାନଭଦ୍ର' ନାମକ ପ୍ରସିଦ୍ଧ ବୌଦ୍ଧ ସନ୍ନ୍ୟାସୀ ଜନ୍ମଗ୍ରହଣ କରିଥିଲେ । 'ନ୍ୟାୟଧର୍ମ୍ମ କାହା' ଗ୍ରନ୍ଥରେ କଳିଙ୍ଗ ଦ୍ୱୀପ କଥା' ଉଲ୍ଲେଖ ଥିବାରୁ, ଏହା ନିଶ୍ଚିତଭାବରେ ଖ୍ରୀଷ୍ଟାବ୍ଦ ସପ୍ତମ କିମ୍ବା ଅଷ୍ଟମ ଶତାବ୍ଦୀରେ ରଚିତ ହୋଇଥିବ ବୋଲି ବିଶ୍ୱାସ କରାଯାଏ । କଳିଙ୍ଗର ଏହି 'ହାଠସିସ୍' ବନ୍ଦର ନଗରୀ ସମ୍ପର୍କରେ ଅନ୍ୟ କୌଣସି ସ୍ଥଳରେ ଉଲ୍ଲେଖ ନଥିବାରୁ, ଏହା ଏବେ ମଧ୍ୟ ଐତିହାସିକ ମାନଙ୍କ ନିକଟରେ ଅଜ୍ଞାତ ରହିଯାଇଛି । ତେଣୁ ଆଜିପର୍ଯ୍ୟନ୍ତ ଏହାର ସ୍ଥାନ ନିର୍ଣ୍ଣୟ ହୋଇ ନାହିଁ । ବହୁ ପରୀକ୍ଷା ପରେ, ଏ ଲେଖକ, କଟକ ଜିଲ୍ଲା, ଟାଙ୍ଗୀ ଅଞ୍ଚଳର ବିରୂପା ନଦୀ ତୀରବର୍ତ୍ତୀ 'ହାଟଶିଶୁଆ' ଗ୍ରାମକୁ ପ୍ରାଚୀନ ହାଠସିସ୍ ନଗରୀର ରୂପାନ୍ତରି ନାମ ବୋଲି ଗ୍ରହଣ କରେ । ଏହି ଗ୍ରାମ ନିକଟର 'ବନିକା' ଗ୍ରାମ ବୋଧହୁଏ ଏକଦା କଳିଙ୍ଗ ଦ୍ୱୀପକୁ ଯାଉଥିବା, 'ବଣିକ' ମାନଙ୍କର ନିବାସସ୍ଥଳୀ ହୋଇଥିଲା । କିନ୍ତୁ ବିରୂପା ନଦୀ ବାରମ୍ବାର ଶଯ୍ୟା ପରିବର୍ତ୍ତନ କରିଥିବା ଯୋଗୁଁ, ବିଗତ ୧୨୦୦ ବର୍ଷ ଭିତରେ ଏହି ଗ୍ରାମର ଅଳ୍ପ ଦୂରରେ କଣ୍ଡରାକଣ (କାଣ୍ଡାରୀ କୋଣ) ନାମକ ସ୍ଥାନରେ ଥିବା ବିଶାଳ କୁଦ (Mound) ଟି ଏକଦା ହାଠସିସ୍ ବନ୍ଦର ହୋଇଥିବା ବିଶ୍ୱାସ ହୋଇଥାଏ । ହାଟଶିଶୁଆ ଗାଁର ଗ୍ରାମଦେବତୀଙ୍କ ପୀଠରେ ଅନେକଗୁଡ଼ିଏ ଭଗ୍ନମୂର୍ତ୍ତି ଭିତରେ, ଲେଖକ ଏକ ଭଗ୍ନ ତୀର୍ଥଙ୍କର ମୂର୍ତ୍ତି ଦେଖିବାକୁ ପାଇଥିଲା । ତେଣୁ ସେହି ଅଞ୍ଚଳରେ ଏକଦା ଯେ ଜୈନଧର୍ମର ପ୍ରଭାବ ରହିଥିଲା, ଏଥିରେ କୌଣସି ସନ୍ଦେହ ନାହିଁ ।

## ଓଡ଼ିଆ ସାହିତ୍ୟରେ ନୌ-ବାଣିଜ୍ୟର ବର୍ଣ୍ଣନା

ଓଡ଼ିଆ ଭାଷା ସାହିତ୍ୟ, ବିଶେଷତଃ ପ୍ରାଚୀନ ସାହିତ୍ୟରେ ବିଦେଶଭିତ୍ତିକ ନୌ-ବାଣିଜ୍ୟର ବର୍ଣ୍ଣନା କୌଣସି ସ୍ଥାନରେ ପ୍ରାୟ





ଦେଖାଯାଏ ନାହିଁ । ଅଷ୍ଟାଦଶ ଶତାବ୍ଦୀରେ କବି ଉପେନ୍ଦ୍ରଭଞ୍ଜଙ୍କ ଲାବଣ୍ୟବତୀ କାବ୍ୟ ରଚିତ ହୋଇଥିଲା ଏଥିରେ ବୋଇତ ସିଂହଳ ଦ୍ୱୀପରେ ଲାଗିବାର ବର୍ଣ୍ଣନା ରହିଛି । ଏହାଛଡା କବି ସେହି କାବ୍ୟରେ ବହିତ୍ର ବାଣିଜ୍ୟର କଷ୍ଟକର ଦିଗ, ଅର୍ଥାତ୍, ବାଣିଜ୍ୟପୋତର ଶତ୍ରୁ ଜଳଦସ୍ୟୁ, ଝଡ, ତୋଫାନ ଇତ୍ୟାଦିର କଥା କହିଛନ୍ତି । ଏଥିରୁ ଏହାହିଁ ମନେହୁଏ ଯେ ଅଷ୍ଟାଦନ ଶତାବ୍ଦୀ ବେଳକୁ, ଏ ରାଜ୍ୟର ନୌ-ବାଣିଜ୍ୟ ସମ୍ପୂର୍ଣ୍ଣ ଲୋପ ପାଇଯାଇ ନଥିଲା । କିନ୍ତୁ ଏହି କାବ୍ୟଟିରେ 'ଦ୍ୱୀପାନ୍ତର' କିମ୍ବା ଦକ୍ଷିଣ-ପୂର୍ବ ଏସିଆର କୌଣସି ରାଜ୍ୟର ନାମୋଲ୍ଲେଖ; ଏହାଛଡା ସମୁଦ୍ରଯାତ୍ରାର କୌଣସି ବାସ୍ତବ ବର୍ଣ୍ଣନା ମଧ୍ୟ ଏଥିରେ ସ୍ଥାନ ପାଇନାହିଁ । ବୋଧହୁଏ କବି ସମୁଦ୍ରଯାତ୍ରା ସମ୍ପର୍କରେ ଅନ୍ୟ ଲୋକଙ୍କ ପାଖରୁ ଯେତିକି ଶୁଣିଛନ୍ତି, ସେତିକିହିଁ କାବ୍ୟରେ ପ୍ରକାଶ କରିଛନ୍ତି ।

ଓଡ଼ିଆ ସାହିତ୍ୟରେ ନୌ-ବାଣିଜ୍ୟର ଚିତ୍ର ଅନ୍ୱେଷଣ କରିବାକୁ ଯାଇ, ଓଡ଼ିଆଭାଷାରେ ରଚିତ 'ପାଇକ ଖେଦା' ପୋଥି ସମ୍ପର୍କରେ ଏଠାରେ କିଛି ଆଲୋଚନା କରିବା ବୋଧହୁଏ ଅପ୍ରାସଙ୍ଗିକ ହେବ ନାହିଁ । ଶ୍ରୀରେଙ୍ଗଲଗଡ କହ୍ନାଇବର ଚମ୍ପତିରାୟ ଚୂଡାମଣିଙ୍କ ରଚିତ ଏହି ପୋଥି ବୋଲଗଡ଼ର ଶ୍ରୀଗଙ୍ଗାଧର ବିଦ୍ୟାଧରଙ୍କ ସୌଜନ୍ୟରୁ ପାଇ ଶ୍ରୀ ସଦାଶିବ ରଥଶର୍ମାଙ୍କ ସଂପାଦନାରେ, ୧୯୩୫ ମସିହାରେ 'ଜଗନ୍ନାଥ ଗବେଷଣା ସମିତି' ଦ୍ୱାରା ଏହା ପ୍ରକାଶିତ ହୋଇଥିଲା । ଏହି ପୁସ୍ତକଟି ପଦ୍ୟରେ ରଚିତ । ଏହାର ଭାଷା ଓ ଏଥିରେ କେତେକ ପ୍ରାଚୀନ ଶବ୍ଦର ବ୍ୟବହାରକୁ ଲକ୍ଷ୍ୟ କଲେ, ଏହା ସପ୍ତଦଶ ଶତାବ୍ଦୀରେ ଶେଷଭାଗ କିମ୍ବା ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗରେ ରଚିତ ହେଲାଭଳି ମନେହୁଏ । ଏହି ପୋଥିର ଗୋଟିଏ ଅଧ୍ୟାୟରେ 'ପୋତଯୁଦ୍ଧ' ସମ୍ପର୍କରେ ବର୍ଣ୍ଣନା କରିବାକୁ ଯାଇ, କବି ଓଡ଼ିଶାରେ ଏକଦା ପ୍ରଚଳିତ ୯ ପ୍ରକାର ପୋତର ବର୍ଣ୍ଣନା ଦେଇଛନ୍ତି ଓ ପୋତ ଗୁଡ଼ିକର ଚିତ୍ର ମଧ୍ୟ ଦେଇଛନ୍ତି ।

ସମୁଦାୟ ୯ ପ୍ରକାର ପୋତରୁ କବି ତିନୋଟିକୁ ବାଣିଜ୍ୟ ପାଇଁ ଉପଯୁକ୍ତ କହିଛନ୍ତି ଓ ବାକି ୬ ପ୍ରକାର ପୋତ କିପରି ଯୁଦ୍ଧରେ ବ୍ୟବହାର କରାଯାଇ ପାରିବ ଦର୍ଶାଇଛନ୍ତି । ପୁସ୍ତକଟିରେ ପୋତଗୁଡ଼ିକର ଚିତ୍ର ଉତ୍ତମରୂପେ ଦର୍ଶାଯାଇନଥିବାରୁ ଓ ଏହାର ବର୍ଣ୍ଣନାରେ ଅନେକ ଗୁଡିଏ ବ୍ୟବହାର ରହିତ ଶବ୍ଦ ପ୍ରୟୋଗ କରାଯାଇଥିବାରୁ, ଏହି 'ଜଳଯାନ' ଗୁଡିକ ମଧ୍ୟରୁ କେତେକର ଆକୃତି ଉତ୍ତମ ରୂପେ ଜାଣି ହୁଏ ନାହିଁ । ଏହାଛଡା 'ସୁରଚାତୁରୀ' ପୋତକୁ କବି ଏକ ବାଷ୍ପ (Steam) ଚାଳିତ ଜଳଯାନ ରୂପେ ବର୍ଣ୍ଣନା କରିଥିବାରୁ, ଏହା ତତ୍କାଳୀନ ପୃଥିବୀ ପରିପ୍ରେକ୍ଷୀରେ ଏକ ଅବାସ୍ତବ ପରିକଳ୍ପନା ଭଳି ମନେହୁଏ । ଜେମ୍ସ ୱାଟଙ୍କ ଦ୍ୱାରା 'ବାଷ୍ପୀୟ କଳ'ର ଉଦ୍‌ଭାବନ ପୂର୍ବରୁ 'ବାଷ୍ପଶକ୍ତି' ଦ୍ୱାରା ପୋତ ଚାଳନା ଯେ ଏ ଦେଶରେ ସମ୍ଭବ ହୋଇଥିଲା, ଏପରି ଐତିହାସିକ ପ୍ରମାଣ କୌଣସି ସ୍ଥଳରେ ମିଳେ ନାହିଁ । ତେଣୁ ଏହି 'ପାଇକ ଖେଦା' ପୋଥି ଅନ୍ତର୍ଗତ 'ପୋତ ଯୁଦ୍ଧ' ସମ୍ପର୍କୀୟ ବିବରଣୀ ସମ୍ପର୍କରେ ଅଧିକ ଗବେଷଣା ଆବଶ୍ୟକ । ବର୍ତ୍ତମାନ ଏଥିରୁ କେବଳ ଏତିକି ଗ୍ରହଣ କରାଯାଇପାରେ ଯେ, ଦିନେ ପ୍ରାଚୀନ କଳିଙ୍ଗରେ ନୌ-ବାଣିଜ୍ୟ ଓ ନୌଯୁଦ୍ଧ ପାଇଁ ଭିନ୍ନ ଭିନ୍ନ ପ୍ରକାରର ଜଳଯାନ ବ୍ୟବହାର କରାଯାଉଥିଲା ।

## ଓଷା, ବ୍ରତ ଓ ପର୍ବପର୍ବାଣିରେ ସାମୁଦ୍ରିକ ବାଣିଜ୍ୟର ସ୍ମୃତି

ଆମର ଇତିହାସରେ ସାମୁଦ୍ରିକ ବାଣିଜ୍ୟ କଥା ଲେଖାନାହିଁ ଓ ଆମର ପ୍ରାଚୀନ ସାହିତ୍ୟରେ ତାହାର ଉପଯୁକ୍ତ ପ୍ରତିଫଳନ ହୋଇନଥିଲେ ସୁଦ୍ଧା, ଆମ ଲୋକ-ଗଳ୍ପ, ଲୋକସଂଗୀତ ଓ ଗାଁଗହଳର ଲୋକସଂସ୍କୃତିରେ ପୁରୁଷାନୁକ୍ରମେ ପ୍ରାଚୀନ କାଳରୁ ଚଳିଆସୁଥିବା ଯେଉଁ କେତେ ପ୍ରଥା, ଆଜି ଧର୍ମାଚାରରେ ପରିଣତ ହୋଇଛି, ସେଥିରୁ କେତେକ ଏଠାରେ ଆଲୋଚନା କରିବା ଆବଶ୍ୟକ ମନେ ହୁଏ । ସେହି ପ୍ରଥା ଗୁଡିକ ଉପକୂଳ ଅଞ୍ଚଳରେ ମହାସମାରୋହରେ ପାଳିତ ହୋଇଥାଏ । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ସାମୁଦ୍ରିକ ବାଣିଜ୍ୟ ପାଇଁ ଯେଉଁ ସମୟର ନିର୍ଦ୍ଦେ ଦିଆଯାଇଛି, ତାହା ଆଷାଢ଼ମାସ ଅମାବାସ୍ୟାର ସାତଦିନ ପୂର୍ବରୁ ଆରମ୍ଭ ହୋଇ, କାର୍ତ୍ତିକ ମାସ ଅମାବାସ୍ୟାର ସାତଦିନ ପୂର୍ବରୁ ଶେଷ ହୁଏ । ଅର୍ଥାତ୍ ବର୍ଷା ଋତୁହିଁ ସମୁଦ୍ରଯାତ୍ରା ପାଇଁ ଉପଯୁକ୍ତ ଧରାଯାଇଛି । ଆମ ଓଡ଼ିଶାରେ, ଏଥିରେ ସାମାନ୍ୟ ବ୍ୟତିକ୍ରମ ହୋଇ, ଏହା କାର୍ତ୍ତିକମାସ ପୂର୍ଣ୍ଣିମା ପର୍ଯ୍ୟନ୍ତ ଚାଲୁଥିଲା । ଏହାପରେ, ଚୈତ୍ରମାସ ଆରମ୍ଭରେ, ପୁଣି ସମୁଦ୍ରଯାତ୍ରା ପାଇଁ ଅଳ୍ପ କିଛିଦିନ ଉପଯୁକ୍ତ ମନେ କରାଯାଉଥିଲା । ଏହାଥିଲା କଳିଙ୍ଗର ବଣିକମାନଙ୍କର ଆଚରିତ ସମୁଦ୍ରଯାତ୍ରାର ସମୟ । ତେଣୁ ସମୁଦ୍ରଯାତ୍ରା ସହ ସଂପୃକ୍ତ ପୂଜା ପର୍ବାଣି ଏହି ସମୟ ଭିତରେ ପଡ଼ିଥାଏ ।

ଠଠ



# ଇଣ୍ଡୋନେସିଆରେ କଳିଙ୍ଗ

❖ ଆର. ବାଳକ୍ରିଷ୍ଣନ୍

ଅନୁବାଦ : ସଂଗ୍ରାମ ମହାପାତ୍ର

*(ଶ୍ରୀ ଆର୍. ବାଳକ୍ରିଷ୍ଣନ୍‌ଙ୍କ ଜନ୍ମ ତାମିଲନାଡୁରେ । ଭାରତୀୟ ପ୍ରଶାସନିକ ସେବାରେ ଯୋଗଦେଇ ଚାକିରି କଲେ ଓଡ଼ିଶାରେ । ଶିଖିଲେ ଓଡ଼ିଆ ସାହିତ୍ୟ ସଂସ୍କୃତି । ଲେଖିଲେ ଅନେକ ବହି । ଜଣେ ଗବେଷକ ଭାବେ ପାଇଛନ୍ତି ସମ୍ମାନ ଓ ଆଦର । ତାଙ୍କ ଦ୍ୱାରା ଲିଖିତ ମୂଳ ଲେଖାକୁ ଅନୁବାଦ କରିଛନ୍ତି ଅନ୍ୟତମ ବରିଷ୍ଠ ପ୍ରଶାସନିକ ଅଫିସର ଶ୍ରୀ ସଂଗ୍ରାମ ମହାପାତ୍ର । ଶ୍ରୀ ମହାପାତ୍ରଙ୍କ ସଦୟ ଅନୁମତି କ୍ରମେ ଏଠାରେ ତାହା ସ୍ଥାନିତ ହୋଇଅଛି ।*

*- ନଟବର ଶତପଥୀ)*

ଆସନ୍ତୁ 'କଳିଙ୍ଗ' ଶବ୍ଦର ପ୍ରଚଳନ/ଉପଯୋଗରୁ ଆରମ୍ଭ କରିବା । ଭାରତବର୍ଷ ପରିପ୍ରେକ୍ଷୀରେ ପ୍ରାଚୀନ କଳିଙ୍ଗ କହିଲେ ପଶ୍ଚିମରେ ପାର୍ବତ୍ୟାଞ୍ଚଳ ତଥା ମାଳଭୂମି ମଣ୍ଡିତ ପଶ୍ଚାତକ୍ଷେତ୍ର ବା ଆଭ୍ୟନ୍ତରୀଣ କ୍ଷେତ୍ରକୁ ଧାରଣ କରି ଉତ୍ତରରେ ଗଙ୍ଗାନଦୀଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିବା ଏକ ସମୃଦ୍ଧ ଏବଂ ଉର୍ବର ଉପକୂଳ ଭୂମି ରୂପେ ପରିଗଣିତ । ମହାଭାରତରେ କଳିଙ୍ଗ ସମ୍ପର୍କରେ ବହୁ ଉପାଖ୍ୟାନ ରହିଛି 'ଜାତକ' ଗୁଡ଼ିକରେ ମଧ୍ୟ କଳିଙ୍ଗର ବହୁଧା ବ୍ୟାଖ୍ୟାନ ସନ୍ନିବେଶିତ ।

ଇଣ୍ଡୋନେସିଆ ପରିପ୍ରେକ୍ଷୀରେ କଳିଙ୍ଗର ପରିଭାଷା ବହୁ ପ୍ରକାରେ ପ୍ରତିଫଳିତ ହୁଏ । ୟାନ ଡ୍ୱାଙ୍ଗ୍ କଳିଙ୍ଗକୁ 'କଲେଙ୍ଗ-କା' ନାମରେ ନାମିତ କରିଛନ୍ତି । ଜାଭା ଦ୍ୱୀପରେ 'ହୋ-ଲିଙ୍ଗ' ନାମରେ ଏକ ପୁରାତନ ରାଜ୍ୟ ଅବସ୍ଥିତ ଥିଲା । ହ୍ୱେଟଲୀ 'ହୋ-ଲିଙ୍ଗ'ରେ କଳିଙ୍ଗର ପ୍ରତିଧ୍ୱନିର ସନ୍ଧାନ କରିଛନ୍ତି । ଚୀନା ଗ୍ରନ୍ଥାବଳୀରେ ଆକର୍ଷଣ କେନ୍ଦ୍ରବିନ୍ଦୁ ପାଲଟିଥିବା 'କୁନ୍-ଲୁନ୍' ବାସୀଙ୍କୁ ଏଚ୍.ବି. ସରକାର, କଳିଙ୍ଗ ନିବାସୀ ବୋଲି ଅଭିହିତ କରିଛନ୍ତି । ପୂର୍ବ ଜାଭାର ଏକ ସାଂପ୍ରତିକ ଶିଳାଲେଖ ରାଜା ଗିରିନ୍ଦ୍ର ବର୍ଦ୍ଧନଙ୍କୁ 'ଭତର କ୍ଲିଙ୍ଗ' (କ୍ଲିଙ୍ଗ୍ ଅର୍ଥାତ୍ କଳିଙ୍ଗର ନରେଶ) ଭାବେ ବର୍ଣ୍ଣନା କରିଛି ଏବଂ ତାଙ୍କ ପାଟରାଣୀ 'କମଳା ବର୍ଣ୍ଣଦେବୀ'ଙ୍କୁ କଳିଙ୍ଗପୁରର ମହାରାଣୀ ବୋଲି ଅଭିହିତ କରିଛି । ଯେଉଁଠାରେ ଜାଭାର ଖୋଦିତ ଲିପି ଓ ଅଭିଲେଖଗୁଡ଼ିକରେ ଭାରତୀୟ ବଂଶୋଦ୍ଭବମାନଙ୍କର ବର୍ଣ୍ଣନା ହୋଇଛି, ସେଠାରେ ସ୍ପଷ୍ଟରୂପେ ନିଜର ପ୍ରାଧାନ୍ୟ ଯୋଗୁଁ କଳିଙ୍ଗର ମୂଳନିବାସୀମାନେ ବିଭିନ୍ନ ସଜ୍ଞାତୀୟ ଗୋଷ୍ଠୀ ତାଲିକାରେ ନିଜର ଶୀର୍ଷ ସ୍ଥାନ ମଣ୍ଡନ କରିଆସିଛନ୍ତି । ପୂର୍ବଜାଭାରେ ଏକ ନଦୀ 'କଲି-କେଲିଙ୍ଗ' ନାମରେ ନାମିତ ଥିଲା । ବାଲିଠାରେ ସ୍ୱଦେଶତ୍ୟାଗୀ ବ୍ରାହ୍ମଣମାନଙ୍କୁ ଏବେ ମଧ୍ୟ 'ବ୍ରାହ୍ମଣ ବୁଦ୍ଧ କଳିଙ୍ଗ' ରୂପରେ ବିବେଚନା କରାଯାଏ ।

ଓଡ଼ିଶାରେ ଏକକ ଶବ୍ଦବିଶିଷ୍ଟ ସ୍ଥାନ ନାମ ଭାବେ 'କଳିଙ୍ଗ' ଯଥାକ୍ରମେ ଗଞ୍ଜାମ, ଫୁଲବାଣୀ, ଢେଙ୍କାନାଳ, କେନ୍ଦୁଝର ଏବଂ ଜଗତସିଂହପୁର ଆଦି ପାଞ୍ଚଟି ଜାଗାରେ ଅବସ୍ଥିତ । ଏହା ହେଲା ଗଞ୍ଜାମ ଜିଲ୍ଲାର 'କଳିଙ୍ଗଦଳ' ଓ 'କଳିଙ୍ଗପଦର' ଏବଂ ଫୁଲବାଣୀ ଜିଲ୍ଲାରେ 'କଳିଙ୍ଗ ବାଡ଼ି' ଆଦି କଳିଙ୍ଗ ପ୍ରାକ୍ ଉପସର୍ଗଯୁକ୍ତ ସ୍ଥାନ ଗୁଡ଼ିକ ଆମେ ଦେଖିବାକୁ ପାଇବା । ଇଣ୍ଡୋନେସିଆରେ 'କଲାଙ୍ଗ୍', 'କାଲାଙ୍ଗ୍' ଏବଂ 'କୌଲିଙ୍ଗମ୍' ଆଦି ସ୍ଥାନ ଆମର ଦୃଷ୍ଟି ଆକର୍ଷଣ କରନ୍ତି । ତନ୍ମଧ୍ୟରୁ 'କଲାଙ୍ଗ୍' 'କାଲାଙ୍ଗ୍' ନାମଦ୍ୱୟ ସୁମାତ୍ରାଠାରେ ପରିଦୃଷ୍ଟ । ଏହି ନାମଗୁଡ଼ିକ ପୃଥକ୍ ହୋଇ ପ୍ରକାଶିତ ହୁଅନ୍ତି ନାହିଁ । ଗୋଟିଏ ସ୍ଥାନ ଅନ୍ୟ ସ୍ଥାନ ସହ ସଂଯୁକ୍ତ ହୋଇ ପ୍ରକାଶିତ ହୁଅନ୍ତି, ଯାହାର ନମୁନା ଓଡ଼ିଶାରେ ମଧ୍ୟ ଉପଲବ୍ଧ ।

ଓଡ଼ିଶାରେ ଚିଲିକା ହ୍ରଦ ନିକଟରେ ବାଲୁଗାଁ ଓ ଗଞ୍ଜାମ ମଧ୍ୟରେ ରମ୍ଭା ନାମକ ଏକ ସ୍ଥାନ ଅଛି । ଚିଲିକା ଅଞ୍ଚଳର ଦୁଇଟି ପୁରାତନ ପୋତାଶ୍ରୟ ମଧ୍ୟରୁ 'ପାଲୁର'କୁ ଛାଡ଼ି 'ରମ୍ଭା' ଅନ୍ୟତମ । ରମ୍ଭା ବେଳାଭୂମିରେ କେତେକ ପୁରୁଣା ବନ୍ଦରତଳି ଜନବସତି ଥିଲା । ରମ୍ଭାଠାରେ ନୌବାଣିଜ୍ୟ ଐତିହ୍ୟର ନିଦର୍ଶନ

ସ୍ୱରୂପ ବୃହତ୍ ଜଳ ବିଭାଜିକା ସଦୃଶ ଦୁଇଟି ସଂରକ୍ଷିତ ଶିଳାର ନିରୂପଣ ହୋଇଛି । ଅପର ପକ୍ଷରେ ସୁମାତ୍ରାର 'ରିଆଉ' ଅଞ୍ଚଳରେ ମଧ୍ୟ ରମ୍ଭା ନାମରେ ଗୋଟିଏ ସ୍ଥାନ ଅଛି । 'ଚିଲିକ' ଟାପୁ ଏବଂ 'ବାଲିକାନ୍' ନାମରେ ଦୁଇଟି ସ୍ଥାନ ମଧ୍ୟ ଇଣ୍ଡୋନେସିଆରେ ଦେଖିବାକୁ ମିଳେ ।

ଓଡ଼ିଶାର ଗଞ୍ଜାମ ଜିଲ୍ଲାରେ 'ଜଙ୍ଗଜଙ୍ଗା' ଓ 'ଜଙ୍ଗା' ନାମକ ଦୁଇଟି ସ୍ଥାନ ରହିଛି । 'କଲାଙ୍ଗ୍' ଓ 'କାଲାଙ୍ଗ୍' ସ୍ଥାନଦ୍ୱୟ ଥିବା ସୁମାତ୍ରାରେ ଏବଂ 'ଜାଭା ବରଟ' ପ୍ରଦେଶରେ ମଧ୍ୟ 'ଜଙ୍ଗା' ନାମକ ସ୍ଥାନ ଦେଖିବାକୁ ମିଳେ । ଗଜପତି ଜିଲ୍ଲାରେ ଗୁମ୍ମା ପାହାଡ଼ ନିକଟରେ 'ଲିଙ୍ଗା' ବୋଲି ଏକ ଜାଗା ଅଛି । ସୁମାତ୍ରାରେ ଆମେ ମଧ୍ୟ ଲିଙ୍ଗା ନାମ ଦେଖିବାକୁ ପାଉ । ପୁନର୍ବାର, ଇଣ୍ଡୋନେସିଆର 'ବୃହତ୍ ସୁନ୍ଦା' ଦ୍ୱୀପସମୂହ ମଧ୍ୟରେ 'ଲିଙ୍ଗା ଦ୍ୱୀପସମୂହ' ରୂପେ ଦ୍ୱୀପସମୂହର ଏକ ଉପଗୋଷ୍ଠୀ ଅନ୍ତର୍ଭୁକ୍ତ ହୋଇଛି । ସେଠାରେ ମଧ୍ୟ ଆମେ 'କେରାଣ୍ଡିନ' ନାମକ ଏକ ସ୍ଥାନ ଦେଖିବାକୁ ପାଇବା ଏବଂ ଅନ୍ୟ ପକ୍ଷରେ 'କେରାଣ୍ଡି' ହେଉଛି ଓଡ଼ିଶାର ଗଜପତି ଜିଲ୍ଲାର 'ଲିଙ୍ଗା' ଗ୍ରାମର ଅବସ୍ଥିତ ଅଞ୍ଚଳର ଏକ ସ୍ଥାନ । ଏହା କଦାପି ଏକ ଆକସ୍ମିକ ସଂଯୋଗ ହୋଇ ନପାରେ । ଗଜପତି ଜିଲ୍ଲାରେ 'ଗଡ୍ରିଙ୍ଗ୍' ବୋଲି ଏକ ସ୍ଥାନ ଅଛି ଏବଂ ଅପରପକ୍ଷରେ ଇଣ୍ଡୋନେସିଆର ଚାରୋଟି ଭିନ୍ନ ଭିନ୍ନ ଅଞ୍ଚଳରେ 'ଗଡ଼ିଙ୍ଗ' ନାମଧେୟ ସ୍ଥାନ ନିରୂପିତ ହୋଇଛି । ତନ୍ମଧ୍ୟରୁ ସୁମାତ୍ରାରେ ଗୋଟିଏ ସ୍ଥାନର ଉତ୍ପତ୍ତି ହୋଇଛି, ତା' ମଧ୍ୟ 'କେରାଣ୍ଡିନ'ର ଉତ୍ପତ୍ତି ଅଞ୍ଚଳରେ । ସୁମାତ୍ରାର 'କଲାଙ୍ଗ' ଓ 'କାଲାଙ୍ଗ୍'ର ଅବସ୍ଥିତି ଅଞ୍ଚଳରେ ଆମେ 'ଇନ୍ଦ୍ରପୁରୀ', 'ଇନ୍ଦ୍ରପୁର' ଏବଂ 'ଇନ୍ଦ୍ରାଳୟ' ଆଦି ଭାରତୀୟ ସଂଯୋଗକୁ ସ୍ପଷ୍ଟ ପ୍ରତିପାଦନ କରୁଥିବା ସ୍ଥାନ ବିଶେଷ ଦେଖିବାକୁ ପାଇବା ।

ଏଣୁ ତଥ୍ୟଭିତ୍ତିକ ଅନୁସରଣରେ ଦେଖିବାକୁ ଗଲେ, ସ୍ଥାନ ନାମଗୁଚ୍ଛର ଏକ ଅଂଶ ବିଶେଷ ବୋଲାଉଥିବା 'କଲାଙ୍ଗ୍' ଓ 'କାଲାଙ୍ଗ୍' ପୁରାତନ କଳିଙ୍ଗର ଉତ୍ତରାଧିକାରୀ ବୋଲାଉଥିବା ଓଡ଼ିଶାର ସ୍ଥାନ ନାମସମୂହ ସହିତ ଅପୂର୍ବ ସାମଞ୍ଜସ୍ୟକୁ ପ୍ରତିପାଦନ କରନ୍ତି ।

ଏହାଛଡ଼ା ଇଣ୍ଡୋନେସିଆର 'ଇରିଆନ୍ ଜୟା' ଅଞ୍ଚଳରେ 'କୌଲିଙ୍ଗମ' ବୋଲି ଏକ ଜାଗା ଅଛି । ଏଠାରେ ମଧ୍ୟ ଓଡ଼ିଶାର ଗଜପତି ଓ ଗଞ୍ଜାମ ଜିଲ୍ଲାରେ ସ୍ଥାନ ନାମଗୁଡ଼ିକ ସହିତ ସାଦୃଶ୍ୟତାକୁ ପ୍ରତିଫଳନ କରୁଥିବା ନିର୍ଦ୍ଦିଷ୍ଟ ନାମଗୋଷ୍ଠୀର ଉପାଦାନ ଭାବେ 'କୌଲିଙ୍ଗମ୍' ଅନ୍ତର୍ଭୁକ୍ତ । ଉଦାହରଣ ସ୍ୱରୂପ, 'ଇରିଆନ୍ ଜୟା' ଅଞ୍ଚଳରେ 'କୌଲିଙ୍ଗମ୍'ଠାରୁ କୋଡ଼ିଏ କି.ମି. ଦକ୍ଷିଣ-ପଶ୍ଚିମରେ 'ବିଷମ୍' ନାମରେ ଏକ ଜାଗା ଅଛି । ଗଜପତି ଜିଲ୍ଲାରେ ମଧ୍ୟ 'ବିଷମ୍' ବୋଲି ଏକ ସ୍ଥାନ ରହିଛି । 'ଇରିଆନ୍ ଜୟା'ଠାରେ 'ଶୋବା' ନାମକ ଗ୍ରାମ ଅଛି, ଯାହାର ଅନୁରୂପ ଭାବେ ଗଜପତି ଜିଲ୍ଲାର ମହେନ୍ଦ୍ରଗିରି ନିକଟରେ ମଧ୍ୟ ଏହି ନାମରେ ଏକ ସ୍ଥାନ ଅବସ୍ଥିତ । 'କନକ' ହେଉଛି ଗଞ୍ଜାମ ଜିଲ୍ଲାର ଗୋଟିଏ ଜାଗା । ଅପରପକ୍ଷରେ ପ୍ରଶାନ୍ତ ମହାସାଗର ଉପକୂଳରେ 'ଇରିଆନ୍ ଜୟା'ଠାରେ ମଧ୍ୟ ଏହି ସମାନ ନାମରେ ଏକ ସ୍ଥାନ ଦେଖିବାକୁ ମିଳେ । ଟାଙ୍ଗିରି ପର୍ବତ ହେଉଛି ଗଜପତି ଜିଲ୍ଲାର ବାହୁଡ଼ା ନଦୀର ଉତ୍ତର-ପଶ୍ଚିମ ଦିଗରେ ଅବସ୍ଥିତ ଏକ ପାହାଡ଼ । ସେହିଭଳି, 'ଟାଙ୍ଗରି' ମଧ୍ୟ 'ଇରିଆନ୍ ଜୟା'ର ଏକ ସ୍ଥାନ । ଏଣୁ 'କଲାଙ୍ଗ୍', 'କାଲାଙ୍ଗ୍' ଓ 'କୌଲିଙ୍ଗମ୍' ସହିତ କଳିଙ୍ଗର ସାମଞ୍ଜସ୍ୟର ସନ୍ଦେଶ କଦାପି ଖାମଖିଆଲ ହୋଇନପାରେ ।

କହିବା ବାହୁଲ୍ୟ ଯେ, ଦ୍ରାବିଡ଼ ଭାଷା ତେଲୁଗୁ ଓ ତାମିଲରେ 'କଳିଙ୍ଗ' ପଦଟି ଉଭୟ ଓଷ୍ଠ ଉଚ୍ଚାରିତ 'ଏମ୍' ବା 'ମ୍' ବର୍ଣ୍ଣ ସହ ସଂଯୁକ୍ତ ହୋଇ 'କଳିଙ୍ଗମ୍' ରୂପେ ଅଭିହିତ ହୋଇଛି । ଏହି ଦୃଷ୍ଟିରୁ, ଚିରାଚରିତ ଦ୍ରାବିଡ଼ ଶୈଳୀରେ ଅନେକ ସ୍ଥାନ ନାମ, ଇଣ୍ଡୋନେସିଆରେ ମଧ୍ୟ ପରିଦୃଷ୍ଟ ହୁଏ ଏବଂ ସେଠାରେ ଗୋଟିଏ ଜାଗା ଭାବେ 'କୌଲିଙ୍ଗମ୍'ର ଉତ୍ପତ୍ତିକୁ ପର୍ଯ୍ୟବେକ୍ଷଣ କରାଯାଇପାରେ ।

**ମହେନ୍ଦ୍ର, ମେରୁ ଓ ପୁରୀ**

ମହେନ୍ଦ୍ରଗିରି ନାମରେ ପ୍ରସିଦ୍ଧ ମହେନ୍ଦ୍ର ପର୍ବତ ହେଉଛି ଦକ୍ଷିଣ ଓଡ଼ିଶାର ମହତ୍ତ୍ୱପୂର୍ଣ୍ଣ ଓ ପ୍ରମୁଖ ଭୌଗୋଳିକ ବୈଶିଷ୍ଟ୍ୟମାନଙ୍କ ମଧ୍ୟରୁ ଅନ୍ୟତମ । ଏହି ପର୍ବତଶ୍ରେଣୀ ମଣ୍ଡାସା ସମୀପରେ ଆଧୁନିକ ଓଡ଼ିଶା ଓ ଆନ୍ଧ୍ରକୁ ଦୁଇ ଭାଗରେ ବିଭକ୍ତ କରିଛି । 'ରଘୁବଂଶ' ଓ 'ଉତ୍ତର-ନୈଶାଦ-ଚରିତ' ମହେନ୍ଦ୍ରଗିରିକୁ କଳିଙ୍ଗରେ ଅବସ୍ଥିତ ଥିବା ଉଲ୍ଲେଖ କରିଛନ୍ତି । ମହେନ୍ଦ୍ରଗିରି ହେଉଛି କଳିଙ୍ଗର ଶ୍ରେଷ୍ଠତମ ପର୍ବତ । ମହେନ୍ଦ୍ରଗିରି ବ୍ୟତୀତ ଗଜପତି ଜିଲ୍ଲାରେ ମହେନ୍ଦ୍ରଗଡ଼ ନାମରେ ଏକ ବସତି ମଧ୍ୟ ମୁଣ୍ଡ ଟେକିଛି ।

ଇଣ୍ଡୋନେସିଆରେ ହିନ୍ଦୁ ସ୍ତୋତ୍ର ଏବଂ କିମ୍ବଦନ୍ତୀରେ ମହେନ୍ଦ୍ର ପର୍ବତ ଓ ପୁଣ୍ୟତୋୟ ମହେନ୍ଦ୍ରତନୟା ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଅଳଙ୍କୃତ କରିଛନ୍ତି । ଇଣ୍ଡୋନେସିଆର 'ଜାଭା ବରଟ' ପ୍ରଦେଶରେ ମହେନ୍ଦ୍ର ନାମରେ ଏକ ସ୍ଥାନ ଅବସ୍ଥିତ । ତେବେ ଓଡ଼ିଶାର ମହେନ୍ଦ୍ର ଓ

ଇଣ୍ଡୋନେସିଆର ମହେନ୍ଦ୍ର ମଧ୍ୟରେ କିଛି ସମ୍ବନ୍ଧ ଥାଇପାରେ କି ? ନିଶ୍ଚିତ ଭାବରେ ଏହା ଏକ ସମ୍ଭାବନା ।

ଗଜପତି ଜିଲ୍ଲାର ମହେନ୍ଦ୍ର ପର୍ବତ ସମୀପବର୍ତ୍ତୀ ଗୁମ୍ମା ପାହାଡ଼ରେ ଲାଞ୍ଜିଆ ସଉରା ଜନଜାତି ଅଧିକୃତ 'ସେରାଙ୍ଗ' ଗ୍ରାମ ଅବସ୍ଥିତ । ଏହି ତଥାକଥିତ ସଉରା ଗ୍ରାମର ନାମ ଇଣ୍ଡୋନେସିଆରେ ଅନ୍ୟୁନ ଚାରୋଟି ଜାଗାରେ ଉପଲବ୍ଧ । 'ଜାଭା ବରଟ' ପ୍ରଦେଶର ଦୁଇଟି ପୃଥକ ଜାଗାରେ ଏହି ଅବିକଳ ନାମ ଥିବା ଦୁଇଟି ଗ୍ରାମ ରହିଛି । 'ଜାଓ୍ୱା ତିମୁର' ପ୍ରଦେଶରେ ମଧ୍ୟ 'ସେରାଙ୍ଗ' ନାମରେ ଏକ ଗ୍ରାମ ବିଦ୍ୟମାନ । ବିଷୁବ ରେଖା ଉପରିସ୍ଥ 'ଗ୍ରେଟର ସୁନ୍ଦା ଦ୍ୱୀପପୁଞ୍ଜ'ରେ ମଧ୍ୟ ଠିକ୍ ଏହି ନାମରେ ଅନ୍ୟ ଗ୍ରାମ ଅଛି । ସଉରାମାନଙ୍କୁ ଛାଡ଼ି ମହେନ୍ଦ୍ରଗିରି ସମ୍ପର୍କରେ ଆଲୋଚନା ନିଶ୍ଚିତ ଭାବରେ ଏକ ଦୁରୂହ ବ୍ୟାପାର । ଇଣ୍ଡୋନେସିଆର ମହେନ୍ଦ୍ର ପ୍ରସଙ୍ଗରେ ମଧ୍ୟ ସଉରା ସଂପ୍ରଦାୟ ଏକ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ । 'ଗଡ଼େଲ' ହେଉଛି ସଉରା ଜନଜାତିଙ୍କ ବିଶ୍ୱ ଦେବାଳୟ (ସକଳ ଦେବତାଙ୍କ ନିମନ୍ତେ ଉତ୍ସର୍ଗୀକୃତ ମନ୍ଦିର)ର ଏକ 'କିତୁଙ୍ଗ' ବା 'ଦେବତା'ଙ୍କ ନାମ । ଇଣ୍ଡୋନେସିଆରେ 'ମହେନ୍ଦ୍ର' ଓ 'ସେରାଙ୍ଗ'ର ଅବସ୍ଥିତି ଅଞ୍ଚଳରେ 'ଗଡ଼େଲ' ନାମକ ସ୍ଥାନ ରହିଛି । 'ଗଡ଼େଲ'ର ମାତ୍ର ୧୧ କି.ମି. ପୂର୍ବରେ 'କାଳିମାଟି' ନାମକ ଗ୍ରାମ ଅବସ୍ଥିତ ଏବଂ ଏହା ଉଲ୍ଲେଖଯୋଗ୍ୟ ଯେ, ଓଡ଼ିଶାରେ ଆଦିବାସୀ ଅଧ୍ୟୁଷିତ ଫୁଲବାଣୀ, କଳାହାଣ୍ଡି ଓ କେନ୍ଦୁଝର ଜିଲ୍ଲାରେ ମଧ୍ୟ 'କାଳିମାଟି' ଏକ ସାଧାରଣ ଭାବେ ବ୍ୟବହୃତ ସ୍ଥାନର ନାମ ।

ଓଡ଼ିଶାରେ ମହେନ୍ଦ୍ର ପର୍ବତର ପାଖାପାଖି 'ଶିଙ୍ଗାରକୁ' ବୋଲି ଏକ ବନାଞ୍ଚଳ ଅଛି । ବାଲି ପ୍ରଦେଶର ଉତ୍ତର ଉପକୂଳରେ ପ୍ରଶାନ୍ତ ମହାସାଗର ଆଡ଼କୁ ମୁହଁକରି 'ସିଙ୍ଗାରଜା' ନାମକ ଏକ ଗ୍ରାମ ରହିଛି । ପୁନର୍ବାର ଜାଭା ପ୍ରଦେଶରେ ତଥାକଥିତ ଭାରତୀୟ ସ୍ଥଳବିଶେଷ 'ଇନ୍ଦ୍ରାମାୟୁ' ସହ ଜଡ଼ିତ 'ସିଙ୍ଗରାଜ' ବୋଲି ଅନ୍ୟ ଏକ ଜାଗା ଅବସ୍ଥିତ । ଆନ୍ଧ୍ର-ଓଡ଼ିଶା ସୀମାରେ 'ଗୁପ୍ତ ମହେନ୍ଦ୍ର ପର୍ବତ' ମହେନ୍ଦ୍ରଗିରିର ଏକ ଅଂଶ ବିଶେଷ । ଏହି ପାହାଡ଼ରେ 'ଅହିୟା' ବୋଲି ଏକ ସ୍ଥାନ ଅବସ୍ଥିତ । ଅପର ପକ୍ଷରେ ପ୍ରଶାନ୍ତ ମହାସାଗର ଉପକୂଳରେ 'ସୁଲୱେସୀ' ଅଞ୍ଚଳରେ 'ଆୟା' ବୋଲି ଏକ ଜାଗା ଅଛି । ତେବେ ଆମେ ଓଡ଼ିଶାର ଅହିୟାସ ଓ ପ୍ରଶାନ୍ତ ଉପକୂଳର ଆୟା ମଧ୍ୟରେ କିପରି ସଂଯୋଗ ସ୍ଥାପନ କରିପାରିବା ? ଯଦି ଆମ ଅନୁସନ୍ଧାନକୁ ଖୋରାକ୍ ଯୋଗାଉଥିବା ଆଉ କିଛି ଅଧିକ ସଂଖ୍ୟକ ଅବିକଳ ସ୍ଥାନ ନାମ ପାଖାପାଖି ନଥାନ୍ତା, ଏହାକୁ ଏକ ଆକସ୍ମିକ ସଂଯୋଗ ରୂପେ ଏଡ଼ାଇ ଦିଆଯାଇ ପାରିଥାନ୍ତା । କିନ୍ତୁ ସାମଞ୍ଜସ୍ୟ ଥିବା କିଛି ନାମ ଆମକୁ ଗବେଷଣାର ବାଞ୍ଛା ଓ ପ୍ରସ୍ତାବ ଦେବାକୁ ପ୍ରୋତ୍ସାହିତ କରୁଛି । ଉଦାହରଣ ସ୍ୱରୂପ ଓଡ଼ିଶା ସୀମାନ୍ତର ଅନତି ଦୂରରେ 'ପଲାସା' ନାମରେ ଅନ୍ଧ୍ରପ୍ରଦେଶର ଏକ ପ୍ରମୁଖ ସହର ଅବସ୍ଥିତ । ମହେନ୍ଦ୍ର ପର୍ବତ ଏହି ସହରଠାରୁ ବେଶି ଦୂର ନୁହେଁ । ଏହି ସହରର ନାମକୁ ମଧ୍ୟ 'ପଳାଶ' ବୋଲି ଉଚ୍ଚାରଣ କରାଯାଏ । ଆନ୍ଧ୍ର ସୀମାର ଓଡ଼ିଶା ପାର୍ଶ୍ୱରେ 'ପଳାଶପଲ୍ଲୀ' ଏବଂ 'ପଳାଶୀ' ବୋଲି ଜାଗା ରହିଛି । ବର୍ତ୍ତମାନ ପ୍ରଶାନ୍ତ ଉପକୂଳବର୍ତ୍ତୀ 'ସୁଲୱେସୀ' ଅଞ୍ଚଳକୁ ବିଚାରକୁ ନିଆଯାଉ । 'ଆୟା'ଠାରୁ ମାତ୍ର ୨୦ କି.ମି. ଦୂରରେ 'ପଲାସା' ନାମକ ଏକ ବସତି ଅବସ୍ଥିତ । 'ଜାଭା ବରଟ' ପ୍ରଦେଶରେ ମଧ୍ୟ ପଲାସାହ' ନାମରେ ଏକ ଜାଗା ଅମେ ଦେଖିବାକୁ ପାଇବା । ଆନ୍ଧ୍ର ପ୍ରଦେଶରେ ପଲାସାର ଅତି ନିକଟରେ 'ମାଣ୍ଡସା' ରାଜବଂଶର ମୁଖ୍ୟାଳୟ ଭାବେ 'ମାଣ୍ଡସା' ଜନବସତି ଅବସ୍ଥିତ । ସେହିଭଳି ସୁମାତ୍ରାର ବରତ୍ ପ୍ରଦେଶରେ ମଧ୍ୟ 'ମାଣ୍ଡସ୍' ନାମରେ ଏକ ବସତି ବିଦ୍ୟମାନ ।

ଏକକ ସ୍ଥାନ ନାମ ଭାବେ 'କଳିଙ୍ଗ'ର ଆଲୋଚନା ପ୍ରସଙ୍ଗରେ ଓଡ଼ିଶା ଓ ଇଣ୍ଡୋନେସିଆର ଏହା ସାଧାରଣ ଉପାଦାନ ଭାବେ ଅବସ୍ଥିତ । ମହେନ୍ଦ୍ରଗିରି ନିକଟସ୍ଥ କେରାଣ୍ଡି, ଲିଙ୍ଗା ଆଦି ସ୍ଥାନ ସମ୍ପର୍କରେ ଆମେ ଅବଗତ ହୋଇସାରିଛେ । ଉପର ବର୍ଣ୍ଣିତ ଅବିକଳ ସମଜାତୀୟ ନାମ ଗୋଷ୍ଠୀ ପରିପ୍ରେକ୍ଷୀରେ ଓଡ଼ିଶାର ମହେନ୍ଦ୍ର ଓ ଇଣ୍ଡୋନେସିଆର ମହେନ୍ଦ୍ର ମଧ୍ୟରେ ନିହିତ ସମ୍ବନ୍ଧ ସୁସ୍ପଷ୍ଟ । ମହେନ୍ଦ୍ର ପର୍ବତ ବ୍ୟତୀତ 'ମେରୁ' ନାମକ ଅନ୍ୟ ଏକ ପର୍ବତ ହିନ୍ଦୁ ପୌରାଣିକ ଗାଥାରେ ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଅଳଙ୍କୃତ କରିଛି । ଭାରତବର୍ଷରେ, ଏକକ ଶବ୍ଦବିଶିଷ୍ଟ ନାମ ରୂପେ ଓଡ଼ିଶାର ଫୁଲବାଣୀ, ବିହାରର ଚମ୍ପା ଏବଂ ହଜାରିବାଗ ଜିଲ୍ଲା ଓ ହିମାଚଳ ପ୍ରଦେଶରେ 'ମେରୁ' ଆତ୍ମପ୍ରକାଶ କରିଛି । ରୋଚକ କଥନ ଏହିକି ଯେ, ଏହି ମେରୁ ନାମଟି କେବଳ ପାର୍ବତ୍ୟାଞ୍ଚଳରେ ପରିଦୃଷ୍ଟ । ଇଣ୍ଡୋନେସିଆରେ ମଧ୍ୟ ଏକକ ଶବ୍ଦ ବିଶିଷ୍ଟ ନାମକରଣକୁ ଧାରଣ କରି ମେରୁ ପାହାଡ଼ ରୂପରେ ମେରୁ ଦଣ୍ଡାୟମାନ । ଓଡ଼ିଶା ଭଳି ବାଲି ପ୍ରଦେଶରେ ଏକା ପ୍ରକାର ନିର୍ମାଣ ଶୈଳୀର ମନ୍ଦିରକୁ 'ମେରୁ' କୁହାଯାଏ ।

ପ୍ରଭୁ ଜଗନ୍ନାଥଙ୍କ କ୍ଷେତ୍ରରୂପେ ବିଶ୍ୱପ୍ରସିଦ୍ଧ ପୁରୀ ହେଉଛି ସଂସ୍କୃତିର ପ୍ରାଣକେନ୍ଦ୍ର । ଜାଭା ଦ୍ୱୀପ ଏବଂ 'କାଲିମଣ୍ଟନ ତେନ୍‌ଗା' ଠାରେ ମଧ୍ୟ ପୁରୀ ନାମର ପୁନରାବୃତ୍ତି ଘଟିଛି ।

OO







# କଟକର ପ୍ରଥମ ଜେଲ୍

❖ ଡକ୍ଟର ମହେଶ୍ୱର ମହାନ୍ତି

ଇଂରେଜମାନେ ୧୮୦୩ ମସିହା ଅକ୍ଟୋବର ମାସରେ କଟକ ଦଖଲକରିବା ପରେ ୧୮୧୦ ମସିହା ପର୍ଯ୍ୟନ୍ତ ଏଠାରେ ବିଧିବଦ୍ଧ ଭାବରେ ଏକ ସ୍ଥାୟୀ ଜେଲ ପ୍ରତିଷ୍ଠା କରାଯାଇ ନଥିଲା । ଦରଘା ବଜାର ଅଂଚଳରେ ସ୍ଥାପିତ ଜେଲଟି ୧୮୧୧ ମସିହା ଫେବୃୟାରୀ ମାସରୁ କାର୍ଯ୍ୟକାରୀ ହୋଇଥିଲା । ଜି. ଟୟନବିଙ୍କ ଉଲ୍ଲେଖ ଅନୁଯାୟୀ ଏହି ନୂତନ ଜେଲ ନିର୍ମାଣରେ ସେତେବେଳେ ମୋଟ ୩୦ ହଜାର ଟଙ୍କା ବ୍ୟୟ ହୋଇଥିଲା ଏବଂ ରାମଚନ୍ଦ୍ର ସୋମ ନାମରେ ଜଣେ ବ୍ୟକ୍ତି ଏହି କାମର ଠିକା ନେଇଥିଲେ । ୧୮୧୬ ମସିହା ବେଳକୁ ବାଲେଶ୍ୱରଠାରେ ଆଉ ଗୋଟିଏ ଜେଲ ତିଆରି ହୋଇଥିଲା । ଏଥିରେ ସେତେବେଳେ ଚାରି ହଜାର ଟଙ୍କା ଖର୍ଚ୍ଚ ହୋଇଥିଲା ଏବଂ ଏଇଟି ଚାଳ ଛପରର ମାଟିଘର ଥିଲା ବୋଲି ଉଲ୍ଲେଖ ଅଛି । ପରେ ଏଠାରେ ପକ୍କାଘର ନିର୍ମାଣ କରାଯାଇଥିଲା ।

ଏହି ସ୍ଥାୟୀ ଜେଲ ତିଆର ହେବା ପୂର୍ବରୁ ବାରବାଟୀ ଦୁର୍ଗକୁ ବନ୍ଦୀଶାଳାରୂପେ ବ୍ୟବହାର କରାଯାଉଥିଲା । ଜେଲ ତିଆରି ହେବା ପରେ ମଧ୍ୟ ୧୮୧୨ ମସିହା ପର୍ଯ୍ୟନ୍ତ ଏହାକୁ ସେଇ ଉଦ୍ଦେଶ୍ୟରେ ବ୍ୟବହାର କରାଯାଉଥିବାର ଜଣାଯାଏ । କିନ୍ତୁ ସେଠାରେ ମୁଖ୍ୟତଃ ଉଚ୍ଚବର୍ଗର ରାଜନୈତିକ ବନ୍ଦୀମାନଙ୍କୁ ଅଟକ ରଖାଯାଉଥିଲା । ରାଜନୈତିକ ବନ୍ଦୀ କହିଲେ ସେତେବେଳେ ସରକାର ବିରୋଧୀମାନଙ୍କୁ ବୁଝାଯାଉଥିଲା । ଯେଉଁମାନେ ଇଂରେଜମାନଙ୍କର ବଶତା ସ୍ୱୀକାର ନକରି ସେମାନଙ୍କ ବିରୋଧରେ ଆନ୍ଦୋଳନ ଚଳାଉଥିଲେ ସେଇମାନେ ଥିଲେ ରାଜନୈତିକ ବନ୍ଦୀ । ହରିଶପୁର (ବର୍ତ୍ତମାନ ଜଗତସିଂହପୁର ଜିଲ୍ଲା ଅନ୍ତର୍ଗତ)ର ଖଣ୍ଡାୟତ ରାଜା ଦୁର୍ଦ୍ଦାନ୍ତ ନୀଳକଣ୍ଠ ମଙ୍ଗରାଜ ଯିଏ କି ଓଡ଼ିଶାରେ ସର୍ବପ୍ରଥମେ ଇଂରେଜମାନଙ୍କୁ ବିରୋଧ କରି ଆନ୍ଦୋଳନ ଆରମ୍ଭ କରିଥିଲେ ତାଙ୍କୁ ଗିରଫ କରି ଆଣି ଏହି ବାରବାଟୀ ଦୁର୍ଗରେ ବନ୍ଦୀକରି ରଖିଥିଲେ । ଏହା ହେଉଛି ୧୮୦୫ ମସିହାର କଥା । ତାଙ୍କ ପୁତ୍ର ମଧୁସୂଦନ ମଙ୍ଗରାଜ ମଧ୍ୟ ଥିଲେ ପାଇକ ବିଦ୍ରୋହ ସମୟରେ ପ୍ରଖ୍ୟାତ ମେଳି ସର୍ଦ୍ଦାର । ପାଇକ ବିଦ୍ରୋହ ସମୟରେ ୧୮୧୭ ମସିହାରେ କୁଜଙ୍ଗ ରାଜାଙ୍କ ସହିତ ତାଙ୍କ ସହଯୋଗୀ ତଥା ମେଳିର ନେତା ନାରାୟଣ ପରମଗୁରୁ ଏବଂ ବାମଦେବ ପାଟ୍ଟଯୋଶୀଙ୍କୁ ମଧ୍ୟ ଏହିଠାରେ ଅଟକ ରଖାଯାଇଥିଲା । ଖୋର୍ଦ୍ଧାର ତତ୍କାଳୀନ ରାଜା ମୁକୁନ୍ଦଦେବ ମଧ୍ୟ ବାରବାଟୀ ଦୁର୍ଗରେ ବନ୍ଦୀ ଥିଲେ । କିନ୍ତୁ ୧୮୨୫ ମସିହାରେ ଖୋର୍ଦ୍ଧାର ବକ୍‌ସି ଜଗବନ୍ଧୁ ଆତ୍ମ ସମର୍ପଣ କରିବାପରେ ତାଙ୍କୁ ମାସିକ ୧୦୦ ଟଙ୍କା ଭତ୍ତା ଦେଇ ବକ୍‌ସିବଜାର ଅଂଚଳର ଏକ ଭଡ଼ାଘରେ ରଖାଯାଇଥିଲା । ବେପାରି ସାହି ଅଂଚଳର ଯେଉଁ ଏକ ସର୍ବସାଧାରଣ ପୋଖରିରେ ସେ ନିୟମିତ ସ୍ନାନ କରିବାକୁ ଯାଉଥିଲେ ତାହା ଏବେ 'ବକ୍‌ସି ପୋଖରି' ନାମରେ ପରିଚିତ ।

ଅପରପକ୍ଷରେ ଚୋରି ଡକାୟତି, ଦଙ୍ଗାହଙ୍ଗାମା ଭଳି ଫୌଜଦାରି ମାମଲାରେ ଜଡ଼ିତ ନିମ୍ନବର୍ଗର ଅପରାଧୀମାନଙ୍କୁ କାଠଯୋଡ଼ି ନଦୀକୂଳରେ ଲାଲବାଗ ନିକଟରେ ନିର୍ମିତ କେତେଗୁଡ଼ିଏ ଚାଳଘରେ ରଖାଯାଉଥିଲା । ଏହି ଚାଳଘରଗୁଡ଼ିକ ପ୍ରଥମେ ଇଉରୋପୀୟ ସୈନ୍ୟମାନଙ୍କ ରହିବା ନିମନ୍ତେ ନିର୍ମିତ ହୋଇଥିଲା । ବାରବାଟୀ ଦୁର୍ଗ ଦଖଲ କରିବା ନିମନ୍ତେ ୧୮୦୩ ମସିହାରେ ଯେଉଁ ବ୍ରିଟିଶ୍ ସୈନ୍ୟମାନେ କାଠଯୋଡ଼ି ପାରହୋଇ ନଦୀର ଉତ୍ତର ପାର୍ଶ୍ୱରେ ଆସି ସେପ୍ଟେମ୍ବର ମାସରେ ଡେରା ପକାଇଥିଲେ ସେମାନଙ୍କ ରହିବା ଉଦ୍ଦେଶ୍ୟରେ ଏହି ଚାଳଘରଗୁଡ଼ିକ ତିଆରି ହୋଇଥିଲା । ସେମାନେ ପ୍ରଥମେ ଏଠାରେ କିଛିଦିନ ରହିଥିଲେ । ପରେ ସେମାନଙ୍କୁ ଅନ୍ୟତ୍ର ସ୍ଥାନାନ୍ତର କରାଯାଇଥିଲା । ଚାନ୍ଦିନୀଚୌକ ନିକଟବର୍ତ୍ତୀ ଲାଲବାଗ ପ୍ୟାଲେସ୍ ନିକଟରେ କଚେରି ଏବଂ ମାଜିଷ୍ଟ୍ରେଟ ଅଫିସ୍ ତିଆରି କରାଯାଇଥିଲା । ସେଇ ସ୍ଥାନଟି ଏ ପର୍ଯ୍ୟନ୍ତ କଚେରୀ ରୂପେ ବ୍ୟବହୃତ ହୋଇଆସୁଛି ।

ଅସ୍ଥାୟୀ ଜେଲରୂପେ ବ୍ୟବହୃତ ଏହି ଚାଳଘରଗୁଡ଼ିକ କଏଦିମାନଙ୍କୁ ରଖିବା ନିମନ୍ତେ ଯଥେଷ୍ଟ ନଥିଲା । ସେଇ କାରଣରୁ ବିଭିନ୍ନ ବର୍ଗର କଏଦିମାନଙ୍କୁ ପୃଥକ ଭାବରେ ନରଖି ଏକତ୍ର ରଖିବାକୁ ପଡୁଥିଲା । ୧୮୦୮ ମସିହା ଅଗଷ୍ଟ ୧୫ ତାରିଖରେ କଟକର ମାଜିଷ୍ଟ୍ରେଟ କଲିକତାର ନିଜାମତ ଅଦାଲତ ରେଜିଷ୍ଟ୍ରାରଙ୍କୁ ଏକ ଚିଠିରେ ଜଣାଇଛନ୍ତି ଯେ କଟକର ଅସ୍ଥାୟୀ ଜେଲ୍‌ରେ ସର୍ବୋଚ୍ଚ କ୍ଷମତା ୬୦ରୁ ୭୦ ମଧ୍ୟରେ ହୋଇଥିବାବେଳେ ଏବେ ଏଠାରେ ୧୦୦ କଏଦୀ ରହୁଛନ୍ତି । ଏଥିରେ ମଧ୍ୟ ପ୍ରସ୍ତାବ ଦିଆଯାଇଥିଲା ଯେ ଏହି କଏଦୀମାନଙ୍କୁ ଜଳେଶ୍ୱରଠାରୁ ଚିଲିକା ପର୍ଯ୍ୟନ୍ତ ରାସ୍ତା ନିର୍ମାଣରେ ନିଯୁକ୍ତ







କରାଯାଉ । ସେଇ କ୍ରମରେ ବର୍ଷକ ପରେ ୧୮୦୯ ମସିହା ଅଗଷ୍ଟ ୧୪ ତାରିଖରେ କଟକର ମାଜିଷ୍ଟ୍ରେଟ କଲିକତାର ସର୍କିଟ କୋର୍ଟରେ ରେଜିଷ୍ଟ୍ରାରଙ୍କ ଏକ ଚିଠିରେ କଟକ ଜେଲର କ୍ଷମତା ୫୦୦କୁ ବଢ଼ାଇବାକୁ ପ୍ରସ୍ତାବ ଦେଇଥିଲେ । କଟକରେ ସ୍ଥାୟୀ ଜେଲପାଇଁ ଜମି ସ୍ଥିର ହୋଇଥିବା ଏଇ ଚିଠିରେ ସୂଚିତ ହୋଇଛି ଏବଂ ଜେଲ ଗୃହ ନିର୍ମାଣ ପାଇଁ କଟକରେ ଇଂଜିନିୟର ଅଫିସର ମିଃ କେଞ୍ଜି (Dr. Kenjee)ଙ୍କୁ ଦାୟିତ୍ୱ ଦିଆଯିବା ପାଇଁ ଏଥିରେ ସୁପାରିଶ କରାଯାଇଛି । ଏଠାରେ ଉଲ୍ଲେଖଯୋଗ୍ୟ ଯେ କଲିକତା ସେତେବେଳେ ଭାରତର ରାଜଧାନୀ ଥିବାରୁ ସମସ୍ତ ସରକାରୀ ଚିଠିପତ୍ର ସଂପୃକ୍ତ ବିଭାଗକୁ ପଠାଇ ସେଠାରୁ ପରାମର୍ଶ ଓ ମଞ୍ଜୁରି ଇତ୍ୟାଦି ଅଣାଯାଉଥିଲା ।

କଏଦିମାନଙ୍କୁ ଖାଦ୍ୟ ବଦଳରେ ଭତ୍ତା ଆକାରରେ ଦୈନିକ ୨ ପଇସା ବା ୩ ପଇସା ଦିଆଯାଉଥିଲା । ଜେଲ ଦୋକାନରୁ ସେମାନେ ନିଜ ନିଜର ଦରକାର ମୁତାବକ ଜିନିଷ କିଣି ନେଉଥିଲେ ଏବଂ ନିଜ ହାତରେ ରାନ୍ଧିକରି ଖାଉଥିଲେ । ୧୮୧୦ ମସିହା ପର୍ଯ୍ୟନ୍ତ ସେମାନଙ୍କୁ ଏହି ହାରରେ ଖାଦ୍ୟ ଭତ୍ତା ଦିଆଯାଉଥିଲା । ୧୮୧୩ ମସିହା ବେଳକୁ ଖାଦ୍ୟଶସ୍ୟର ଦର ବଢ଼ିଯିବାରୁ କଏଦିମାନଙ୍କୁ ଦିଆଯାଉଥିବା ଦୈନିକ ମାତ୍ର ତିନିପଇସା ଯଥେଷ୍ଟ ନୁହେଁ ବୋଲି ଅନୁଭବ କରି କଟକର ମାଜିଷ୍ଟ୍ରେଟ ବଙ୍ଗଳାର ଚିଫ୍ ସେକ୍ରେଟାରୀଙ୍କୁ ତା ୧ ।୯ ।୧୮୧୩ରିଖରେ ଚିଠି ଲେଖି ଏଇ ଭତ୍ତାର ପରିମାଣ ଏକ ଅଣାକୁ ବୃଦ୍ଧି କରିବାକୁ ପ୍ରସ୍ତାବ ଦେଇଥିଲେ । ସେତେବେଳେ ଟଙ୍କାକ ଷୋଳ ଅଣା ଏବଂ ଅଣାକ ୪ ପଇସା ହିସାବରେ ଗଣାଯାଉଥିଲା । ସୁତରାଂ ଟଙ୍କାକ ଥିଲା ୬୪ ପଇସା । ୧୯୫୭ ମସିହା ଅପ୍ରେଲ ମାସରୁ ଦଶମିକ ମୁଦ୍ରା ପ୍ରଚଳିତ ହେବାରୁ ଟଙ୍କାକ ୧୦୦ ପଇସା କରାଗଲା ଏବଂ ପୁରୁଣା ଅଣା ହିସାବ ରଦ୍ଦ କରାଗଲା ।

କଏଦିମାନଙ୍କୁ ଦୈନିକ ଖାଦ୍ୟଭତ୍ତା ସହିତ ବର୍ଷକୁ ଖଣ୍ଡିଏ କମ୍ବଳ, ଦୁଇଖଣ୍ଡ ଧୋତି, ଦୁଇଖଣ୍ଡ ଚଦର, ମୁଣ୍ଡରେ ବାନ୍ଧିବା ପାଇଁ ଗୋଟିଏ ଠେକା (ସମ୍ଭବତଃ ଖଣ୍ଡିଏ ଗାମୁଛା), ଦୁଇଖଣ୍ଡ ମସିଣା, ଦୁଇଟା ନଡ଼ା ତିଆରି ତକିଆ ଦିଆଯାଉଥିଲା । ଏ ବାବଦରେ ମୋଟ ଖର୍ଚ୍ଚର ସୀମା ଜଣପିଛା ବାର୍ଷିକ ଥିଲା ତିନିଟଙ୍କା । ଅଥଚ ସେତେବେଳେ କଟକର ଜେଲ ଅଫିସରଙ୍କ ମାସିକ ଦରମା ଥିଲା ୨୫ ଟଙ୍କା । ଚାଳଘରେ ଜେଲ୍ ଚାଲିଥିବାବେଳେ କଏଦିମାନଙ୍କର ସୁରକ୍ଷା ନିମନ୍ତେ ମିଲିଟାରୀ ଗାର୍ଡ଼ ନିଯୁକ୍ତ ହୋଇଥିଲେ । ତଥାପି ସୁରକ୍ଷା ବ୍ୟବସ୍ଥା ଯଥେଷ୍ଟ ନଥିଲା । ଜେଲ୍‌ର ପରିଚାଳନା ଭାର ଜିଲ୍ଲା ମାଜିଷ୍ଟ୍ରେଟଙ୍କ ହାତରେ ନ୍ୟସ୍ତ ଥିଲା । ସିଭିଲ ସର୍ଜନ ପ୍ରତି ସପ୍ତାହରେ ଥରେ ଜେଲ୍ ପରିଦର୍ଶନରେ ଆସୁଥିଲେ । ଜେଲ୍ କୋଡ଼ ବା 'ମାନୁଆଲ' ମାତ୍ର ୧୧ ପୃଷ୍ଠା ମଧ୍ୟରେ ସୀମିତ ଥିଲା । ପରେ ଆବଶ୍ୟକତା ଅନୁସାରେ ଏହାକୁ ବଢ଼ାଇ ଦିଆଯାଇଥିଲା ।

କଏଦିମାନଙ୍କୁ ଜେଲ୍ ଭିତରେ ଓ ଜେଲ୍ ବାହାରେ ବିଭିନ୍ନ ପ୍ରକାର ଶ୍ରମରେ ନିଯୁକ୍ତ କରାଯାଉଥିଲା । ଜେଲ୍ ଭିତରେ ସେମାନେ ଇଟା ଗୁଣ୍ଡକରି କୋଠା ତିଆରିରେ ବ୍ୟବହୃତ ହେଉଥିବା ସୁର୍କି ତିଆରି କରୁଥିଲେ । ଟୋକେଇ, ପାଛିଆ ଇତ୍ୟାଦି ବୁଣୁଥିଲେ, ବୋଝ ବା ଛଣିରେ ଚଟ ପ୍ରସ୍ତୁତ କରୁଥିଲେ, ମସିଣା ବୁଣୁଥିଲେ ଇତ୍ୟାଦି । ଆଉ କିଛି କଏଦିଙ୍କୁ ନେଇ ଜେଲ ବାହାରେ ରାସ୍ତା ନିର୍ମାଣ, ସରକାରୀ କୋଠାବାଡ଼ି ନିର୍ମାଣ, ପୋଖରି ଖୋଳା ପଙ୍କୋଦ୍ଧାର, ଗଛଲଟା କାଟି ଅରମା ସଫାକରିବା ଇତ୍ୟାଦି କାର୍ଯ୍ୟରେ ନିୟୋଜିତ କରାଯାଉଥିଲା । ଏ ବାବରେ ସେମାନଙ୍କୁ କିଛି ପାରିଶ୍ରମିକ ଦେବାର ବ୍ୟବସ୍ଥା ନଥିଲା । ୧୮୧୪ ମସିହା ଜୁଲାଇ ୧୧ ତାରିଖରେ କଟକର ଜିଲ୍ଲା ମାଜିଷ୍ଟ୍ରେଟ କଲିକତାର ସର୍କିଟ କୋର୍ଟର ଜଜ୍‌ଙ୍କୁ ଚିଠି ଲେଖି କହିଛନ୍ତି ଯେ କଟକ ସହରର ରାସ୍ତାଘାଟର ଅବସ୍ଥା ଏତେ ଶୋଚନୀୟ ହୋଇପଡ଼ିଛି ଯେ କେବଳ କଏଦୀମାନଙ୍କୁ ନେଇ ଏ କାର୍ଯ୍ୟ ଶେଷ କରିବା ସମ୍ଭବ ନୁହେଁ । ତେଣୁ ବାହାରର ଶ୍ରମିକଙ୍କୁ ଲଗାଇ କାର୍ଯ୍ୟ ଶେଷ କରିବାକୁ ୧୦୦ ଟଙ୍କା ମଞ୍ଜୁର କରାଯାଉ । ମିଶନାରିମାନେ କଟକରେ ଗୋଟିଏ ସ୍କୁଲ ସ୍ଥାପନ କରିବା ଉଦ୍ଦେଶ୍ୟରେ ଜାଗାଟିଏ ସ୍ଥିରକରି ତାକୁ ସଫାସୁତୁରା କରି ସମତଳ କରିବା ଉଦ୍ଦେଶ୍ୟରେ କଟକ ଜେଲ୍‌ରୁ କିଛି କଏଦିଙ୍କୁ ଆଣିଥିଲେ । କାର୍ଯ୍ୟ ସମାପନ ପରେ ସେମାନେ ଖୁସିହୋଇ ତାଙ୍କ କଲିକତା ମିଶନକୁ ଜଣାଇଥିଲେ ଯେ ଏହାଦ୍ୱାରା ସେମାନେ ୫୦ ଟଙ୍କା ଖର୍ଚ୍ଚ ବଂାଇ ପାରିଛନ୍ତି । ଏହି କଏଦୀମାନେ ବାହାରେ କାମ କରୁଥିବା ବେଳେ ସେମାନଙ୍କ ଗୋଡ଼ରେ ହାତକଡ଼ି ଭଳି ଗୋଡ଼କଡ଼ି ଲଗାଯାଉଥିଲା । ରାତିରେ ଶୋଇବାବେଳେ ଗୋରୁପଲ ଭଳି ସେମାନଙ୍କ ଗୋଡ଼ର ରିଙ୍ଗ୍ ଭିତରେ ଗୋଟିଏ ଲମ୍ବା ଚେନ୍ ପୂରାଇ ବାନ୍ଧି ଦିଆଯାଉଥିଲା । କେବଳ ରବିବାର ଦିନଟି ସେମାନଙ୍କ ନିମନ୍ତେ ଛୁଟିଥିଲା । ଏଇଦିନ ସେମାନେ ନିଜ ନିଜକୁ ସଫାସୁତୁରା କରିବାକୁ ସମୟ ପାଉଥିଲେ ।

କଏଦିମାନଙ୍କର କଲ୍ୟାଣ ଭଳି କିଛି ଗୋଟାଏ ଶବ୍ଦ ସେତେବେଳେ ନଥିଲା କିମ୍ବା ସେମାନଙ୍କର ପରିଶ୍ରମ ବାବଦରେ ଆଜିକାଲି ଭଳି କିଛି ମୂଲ୍ୟ ଦେବା ବ୍ୟବସ୍ଥା ମଧ୍ୟ ନଥିଲା । ପରବର୍ତ୍ତୀ କାଳରେ ଜେଲ୍ ବ୍ୟବସ୍ଥାରେ ଅନେକ ସଂସ୍କାର କରାଯାଇଛି । ଏ ସବୁ ମୂଳରେ ସବୁଠାରୁ ବଡ଼କଥା ହେଉଛି ମାନବିକ ଅଧିକାର ଏବଂ ସମ୍ବିଧାନ ପ୍ରଦତ୍ତ ମୌଳିକ ଅଧିକାର ।

ଦୂରଭାଷ: ୯୩୩୭୩୫୦୦୧୧







# ଭଞ୍ଜ ସାହିତ୍ୟରେ ନୌଯାତ୍ରା

❖ ଡକ୍ଟର ତ୍ରିନାଥ ପଟ୍ଟନାୟକ

ଭଂଜଙ୍କର ନାୟକ ନାୟିକାମାନେ କେବଳ ଉତ୍କଳର ନୁହନ୍ତି ଉତ୍କଳ ଗଜପତିଙ୍କ ଦ୍ୱାରା ଅଧିକୃତ ସମଗ୍ର ଅଞ୍ଚଳର ଓ ଭାରତ ବର୍ଷର । ଦ୍ୱୀପଦ୍ୱୀପାନ୍ତର ପର୍ଯ୍ୟନ୍ତ ତାଙ୍କ କବି ଦୃଷ୍ଟି ପ୍ରସାରିତ ହୋଇଛି । ସେତେବେଳେ ସ୍ଥଳପଥ ବିପଦସଂକୁଳ । ଯାତାୟତର ସୁଗମ ରାସ୍ତା ନଥିଲା । ଏଣୁ ଜଳପଥରେ ଯାତାୟତ କରିବା ଓ ବାଣିଜ୍ୟ କରିବା ସହଜ ଥିଲା । ନୌକା ଓ ବୋଇତ ଏକମାତ୍ର ମାଧ୍ୟମ ଥିଲା । ଉପେନ୍ଦ୍ର ନୌଯାତ୍ରା ନ କରିଥିଲେ ଏତେ ସୁନ୍ଦର ଭାବେ ନୌଯାତ୍ରା ଓ ବୋଇତ ଯାତ୍ରାର ବର୍ଣ୍ଣନା ନିଖୁଣ ଭାବେ କରି ପାରିନଥାନ୍ତେ ।

ଉପେନ୍ଦ୍ର ଭଂଜ ନୌଯାତ୍ରାର ଦୃଶ୍ୟ ଅଙ୍ଗେ ନିଭାଇଛନ୍ତି । ଦକ୍ଷିଣ ଓଡ଼ିଶାର ବିଭିନ୍ନ ନଦୀମାନଙ୍କ ମଧ୍ୟରେ ବଡ଼ ନଦୀ ଓ ଋଷିକୂଲ୍ୟା ସର୍ବକାଳୀନ ସୁନାବ୍ୟା ଥିଲା । ଭଂଜଙ୍କ ନିବାସ ଗଡ଼ ଠାରୁ ଏ ଦୁଇନଦୀ ପ୍ରାୟତ ନିକଟବର୍ତ୍ତୀ । ପଣ୍ୟଦ୍ରବ୍ୟ ସବୁ ଜଳ ପଥରେ ଯିବା ଆସିବା କରୁଥିଲା । ଉତ୍କଳବାସୀ ବହୁ ଶତାବ୍ଦୀ ତଳୁ ଦୂର ଦେଶମାନଙ୍କୁ ବୋଇତ ବାଣିଜ୍ୟ କରିବା ନିମନ୍ତେ ଯାଉଥିଲେ । ଓଡ଼ିଶାର ପ୍ରତ୍ୟେକ ଅଞ୍ଚଳରେ ନାବିକ ଓ ବୋଇତିଆଳ, ସାଧବମାନେ ଥିଲେ । ସାଧବମାନେ ଆମେ ଦେଶୀ କୌଶଳରେ ନିର୍ମିତ ବୋଇତମାନଙ୍କୁ ଧରି ଦେଶ ବିଦେଶକୁ ଯାଉଥିଲେ । ରାଜ୍ୟ ରାଜ୍ୟ ମଧ୍ୟରେ ସୁସମ୍ପର୍କ ଏପରିକି ବୈବାହିକ ସଂପର୍କ ମଧ୍ୟ ଥିଲା ।

ଭଂଜଙ୍କର ସୁଭଦ୍ରା ପରିଣୟ କାବ୍ୟର ସଭାମଣ୍ଡପ ବର୍ଣ୍ଣନାରେ କବି ବିଭିନ୍ନ ଦେଶର ରାଜାମାନଙ୍କର ଆଗମର ଦୃଶ୍ୟ ବର୍ଣ୍ଣନା କରିଛନ୍ତି । ଗୋଶୃଙ୍ଗ ଦାବର ସୈନ୍ୟ ଚାଳନାର ଭୟଙ୍କର ଦୃଶ୍ୟ ଚିତ୍ରଣ କରିବାକୁ ଯାଇ କବି କହିଛନ୍ତି- ଭୀଷଣ ଉତ୍ପାତର ଆଶଙ୍କା ହେଲା, ନଦୀମାନେ ଶଙ୍କିତ ହେଲେ । ଏହି ପ୍ରସଙ୍ଗରେ ବିଭିନ୍ନ ନଦୀର ନାମ ଦେବା ଉତ୍କଳର କେତୋଟି ନଦୀର ନାମ ଦେବା ପାଇଁ ସେ ଭୁଲି ନାହାନ୍ତି । ସେଗୁଡ଼ିକ ହେଲେ- ବ୍ରାହ୍ମୀ, ଚିତ୍ରୋତ୍ପଳା, ଭାର୍ଗବୀ, ସବୁର୍ଣ୍ଣରେଖା, ଋଷିକୁଲ୍ୟା, ଚନ୍ଦ୍ରଭାଗା (ପ୍ରାଚୀ) କୌଶିକୀ ତୁଙ୍ଗଭଦ୍ରା ଇତ୍ୟାଦି ।

ସିନ୍ଧୁ କାବେରୀ ଜାହ୍ନବୀ ଗୋଳା,
ଯମୁନା ବ୍ରାହ୍ମୀ, ଭାର୍ଗବୀ ସରସ୍ୱତୀ ମେଖଳ
ରେବା ନର୍ମଦା ଯେ, ସୁବର୍ଣ୍ଣରେଖା ସୁଋଷିକୂଲ୍ୟା
ସରଯୁ ଚନ୍ଦ୍ରଭାଗା ସୁରଳା
କୌଶକୀ ସରାବତୀ ବିମଳା ସୁତଙ୍ଗ ଭଦ୍ର ଯେ ।
ସଦାନୀରାଦି ନଦୀ ହେଲେ ଶଙ୍କିତ ଯେ । (ଷଷ୍ଠ ଛାନ୍ଦ)

ସେହିଭଳି ରାଜସଭାରେ ଯୋଗ ଦେଇଥିବା ରାଜ୍ୟମାନଙ୍କର ନାମ ଉଲ୍ଲେଖ କରିଛନ୍ତି- ସୌରାଷ୍ଟ୍ର, ନଟ, ଚୋଡ଼ଙ୍ଗ, ଭୋଟ, କଳିଙ୍ଗ, ବଙ୍ଗ, ମର୍ହଟ, ସବିଡ, ଗୌଡ଼, ମଘ, କର୍ଣ୍ଣାଟ, ମତ୍ସ୍ୟ, ଲୋମଶ, ବିଦେହ, ବୈଦର୍ଭ, ବାହ୍ଲୀକ, ନିଷେଦ, ମଗଧ, କାନ୍ୟ କୁବ୍ଜ, ସିନ୍ଧୁ, ଉତ୍କ. ଚୋଳ, କୁନ୍ତକ, କେରଳ, କୁଞ୍ଜଗଳ, ନେପାଳ, ମାଳବ, ଗୁଜୁରାତି, କୋଶଳ, ମଳବାରକ ।

ଲାବଣ୍ୟବତୀ କବ୍ୟରେ କର୍ଣ୍ଣାଟକ କଥା ବର୍ଣ୍ଣନା କରିଛନ୍ତି । କର୍ଣ୍ଣାଟକ ବୃହତ ଉତ୍କଳ ଦେଶର ଅଂଶ ବିଶେଷ ଥିଲା, ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଉତ୍କଳର ଅଧୀନସ୍ଥ ଥିଲା । ପୁରୀ ଗଜପତିଙ୍କ ନାମରେ କର୍ଣ୍ଣାଟକ ଉତ୍କଳ କଳବର୍ଗେଶ୍ୱର ବୋଲି ଉପାଧି ଲାଗୁଥିଲା । କର୍ଣ୍ଣାଟକରୁ ବୋଇତିଆଳମାନେ ଦେଶ ବିଦେଶକୁ କଳିଙ୍ଗ ବୋଇତ ନେଇ ଯାଉଥିଲେ । ଭଂଜ ଏହି ସୂଚନା ତାଙ୍କ କାବ୍ୟ କବିତାରେ ବିଭିନ୍ନ ସ୍ଥାନରେ ଚିତ୍ରଣ କରିଛନ୍ତି ।

ଲାବଣ୍ୟବତୀ କାବ୍ୟରେ କବି ଉଲ୍ଲେଖ କରିଛନ୍ତି । ଯେ କଳିଙ୍ଗର ବୋଇତିଆଳମାନେ ଦେଶ ବିଦେଶକୁ ନୌଯାତ୍ରା କରି ତଥା ବାଣିଜ୍ୟ କରି ବହୁବିଧ ଧନରତ୍ନ ଆଣୁଥିଲେ । ରାଜ ପୁରୁଷମାନଙ୍କୁ ଭେଟି ଦେଉଥିଲେ ।

ଏହି କାଳେ ଜଣାଇଲା ବେତ୍ରକର
ଆସି ବୋଇତିଆଳ ଅଛି ଦ୍ୱାରା
ବୋଲେ ସିଂହଳ ଦ୍ୱୀପୁଁ ଆସିଅଛି ମୁହିଁ
ଇଚ୍ଛା ମୋର ଯୁବରାଜ ଭେଟ ପାଇଁ ।
ଶିରେ କର ଦେଇ ଭେଟି ଏତେ ଦ୍ରବ୍ୟ



ଦେଲା ପ୍ରମୋଦ ଚିତ୍ତରେ ସେ ସାଧବ ।
ମେଷ ଚକ୍ଷୁନୀଳା, ବ୍ରହ୍ମଜାତି ହୀରା
ତାର ମୁକୁତା କୁକୁଟ ଡ଼ିମ୍ବ ପରା ।
ଅଛି ସୁମାଣିକ୍ୟ ପଦ୍ମରାଗ ଜାତି
ଅଷ୍ଟ କଚ୍ଚ ବାଳ ହି ଯନ୍ତି ପନ୍ତି ।
ଚନ୍ଦ୍ରକାନ୍ତ ପାଷାଣ ନୀଳେନ୍ଦ୍ରମଣି
ଲକ୍ଷ୍ମୀ ନାରାୟଣ ଶିଳା ନୁହେଁ ଗଣି । (ସପ୍ତମ ଛାନ୍ଦ)

କେବଳ ସେତିକି ନୁହେଁ ଉପେନ୍ଦ୍ର ଭଂଜ ଅନ୍ୟାନ୍ୟ ପଣ୍ୟ ଦ୍ରବ୍ୟର ନାମ ଉଲ୍ଲେଖି ତାଙ୍କ ସାହିତ୍ୟର ବିଭିନ୍ନ ସ୍ଥାନରେ କରିଛନ୍ତି । ଯଥା- ଅଗୁରୁ, ଚନ୍ଦନ, ଶ୍ରୀକର୍ପୂର, ପାତାଳ ଚୂଆ, ପନୀର ଜଳ, ସୋମରାଜି, ଜୁଆଦ, ଗଙ୍ଗାଜଳ, ବଂଶ ପତ୍ରୀ ହରିତାଳ, ଇକ୍ଷ୍ୱାକୁ ଫୁଲ ତୁଲ୍ୟ ରୂପା, ଜମ୍ବୁନଦ ସୁନା, ମିହିରମଣି, ହସ୍ତୀଦନ୍ତ, ବ୍ୟାଘ୍ର ନଖ, କୃଷ୍ଣାଜିନ, ମୃଗଚର୍ମ ଆସନ, ଢ଼ାଲ, ଗଣ୍ଡାର ଚ଼ର୍ମ, ତରବାରି, ଦକ୍ଷିଣାବର୍ତ୍ତୀ ଶଙ୍ଖ, ଏକମୁଖୀ ରୁଦ୍ରାକ୍ଷ, କନକ ମୃଗ ଚ଼ଉରୀ, ଲହୁରି ଦେଶଜାତ ଶୁଭ୍ର କାଗଜ, ସିନ୍ଧୁଜାତ ଅଶ୍ୱ, ବନଜାତି ଗଜ, ପାଟଭାଲି କୀର, ନେପାଳିକା ମୂଷା, ସାଲିଆ ଲବଙ୍ଗଲତା, ଜାଇଫଳ ଗଛ, ଚ଼କୋର, ପାରାବତ, କଳପେଡ଼ା, ଶୂନ୍ୟଖୁରୀ, ଲୋହ ଚୁମ୍ବକ, ପରଶୁମଣି ପଥର, ଗଉରତ ବେତ୍ର, ଶୃଙ୍ଗ, କମାଣ, ତୀର, ଚାତକ ଯନ୍ତ୍ର ଓ ମନକାମନା ଧାତୁ ।

ଏସବୁ ପଦାର୍ଥ ଭେଟି ରୂପେ ପାଇ ରାଜା ପଚାରିଲେ -
ଏକ ଦେଶେ ତ ନମିଳେ ବିଚାରିଲେ
କେଉଁ ଦେଶରୁ ଆଗତ ପଚାରିଲେ ।

ଓଡ଼ିଶାରେ ଲୋକମାନେ ନୌବାଣିଜ୍ୟ ମାଧ୍ୟମରେ ଦେଶ ବିଦେଶରୁ ଅପୂର୍ବ ପଦାର୍ଥମାନ ସ୍ୱଦେଶରୁ ନେଇ ଆସୁଥିଲେ ଓ ଆମ ଦେଶର ବିଭିନ୍ନ ପଦାର୍ଥକୁ ଅନ୍ୟ ସ୍ଥାନକୁ ରପ୍ତାନୀ କରୁଥିଲେ ।

ପିପିଲିର ଚାନ୍ଦୁଆ, ବିଭିନ୍ନ ପ୍ରକାର କାଠ କାମ ହାତୀ ଦାନ୍ତ ନିର୍ମିତ ପାନିଆ, ଅଳଙ୍କାର, ଖଟ ପଲଙ୍କ ପ୍ରଭୃତି ବିଦେଶକୁ ରପ୍ତାନୀ ହେଉଥିଲା । ଭଂଜଙ୍କ ସମୟରେ ଉତ୍କଳର ହାତୀ ଦାନ୍ତ ନିର୍ମିତ ପଦାର୍ଥ, ସୂକ୍ଷ୍ମ ବସ୍ତ୍ର, ପାଟ ମଠା ପାଇଁ ପ୍ରସିଦ୍ଧ ଥିଲା । ଉତ୍କଳର ଗଡ଼ଜାତ ଜଙ୍ଗଲମାନଙ୍କରେ ଅସଂଖ୍ୟ ହାତୀ ଥିଲେ । ମୃତ ହସ୍ତୀମାନଙ୍କର ଦନ୍ତ ସଂଗ୍ରହ କରାଯାଇ ଏସବୁରେ ସୂକ୍ଷ୍ମ କାରୁକାର୍ଯ୍ୟ ପୂର୍ଣ୍ଣ ନିତ୍ୟ ବ୍ୟବହାର୍ଯ୍ୟ ସୌଖୀନ ପଦାର୍ଥ ସବୁ ପ୍ରସ୍ତୁତ ହେଉଥିଲା । ପ୍ରାଚୀନ ବୁଣାକାରମାନଙ୍କ ସୂକ୍ଷ୍ମ ବସ୍ତ୍ର ଗୁଡ଼ିକ ବାଉଁଶ ନଳୀ ମଧ୍ୟରେ ଭର୍ତ୍ତିକରାଯାଇ ପଠା ଯାଉଥିଲା ।

ଏହାର ପ୍ରମାଣ ସ୍ୱରୂପ କବି ସମ୍ରାଟ ଉପେନ୍ଦ୍ର ଭଂଜ ବୈଦେହୀଶ ବିଳାସ କାବ୍ୟରେ ଉଲ୍ଲେଖ କରିଛନ୍ତି-

ବଂଶନଳୀରେ ରଖି ଲେଖି,
ବସନ ଦେଲେ ସୀତା ପାଇଁ ଆଣି
କହିଲେ ସେ ପାତ୍ର ଲକ୍ଷ୍ମଣ ଇକ୍ଷାକୁ କୁଳର ଯେ ଚୂଡ଼ାମଣି
ବାହାରିଲେ ସେ ତିନି
ବଧୂ ବୋଧନ୍ତି ରାମ ଜନନୀ ।
(ବୈ.ବି.-୧୭ଶ ଛାନ୍ଦ ୨୮ପଦ)

ବୈଦେହୀଶବିଳାସ କାବ୍ୟରେ ସୂକ୍ଷ୍ମ ବସ୍ତ୍ର ବିଷୟରେ ଅନ୍ୟତ୍ର କହିଛନ୍ତି । ଯେତେବେଳେ ସୀତାଙ୍କୁ ବେଶ କରାଯାଇଛି । ସଖୀମାନେ ବେଶ ସଂରଚନା କରୁଛନ୍ତି, ଭଂଜ ରଚନା ମାଧ୍ୟମରେ କହିଛନ୍ତି-

ବେଢ଼ରେ ପାଦରେ ଲେଖିଲେ ଲାକ୍ଷା
ବାରି ହେଲା ବେନି ରଙ୍ଗ କି ଦକ୍ଷା
ବିକଶିତ କୋକନଦ ମଧର
ବେଢ଼ି ଭ୍ରମେ କି ସରସ୍ୱତୀ ନିର ଯେ
ବଂଶନଳୀରେ ଥିବାର ଯେ
ବାଛି ପିନ୍ଧି ଦୁର୍ବାଜଳ ନୀଳ ଚେଳ
କୋଳ ଇଛି ଶ୍ରୀରାମର ଯେ । (ବୈ.ବି. ୧୦ମ ଛାନ୍ଦ)

ଯେଉଁମାନେ ବୋଇତ ବାଣିଜ୍ୟ କରୁଥିଲେ ଜାତି ଧର୍ମ ନିର୍ବିଶେଷରେ ସେମାନଙ୍କୁ ସାଧବ ବୋଲି କୁହାଯାଉଥିଲା । ସାଧବ ଓ ସାଧବ ବୋହୂ, ସାଧବ ଝିଅ କଥା ଓଡ଼ିଶାର ଘରେ ଘରେ ପରିଚିତ । ଯେତେସବୁ ଓଷାବ୍ରତ କଥା ପ୍ରଚଳନ ଅଛି ସେଥିରେ ସାଧବ ସାଧବାଣୀଙ୍କ ବିଷୟରେ ନିଶ୍ଚିତ ଭାବେ ଉଲ୍ଲେଖ ଥିବ । ଖୁଦୁରକୁଣୀ ଓଷାର ତଅପୋଇ, ନିଶାମଙ୍ଗଳବାର ଓଷା ବହିର ଯଯନା, ଖୁଳଣା ଓ ଧନେଶ୍ୱର ସାଧବ କଥା ବର୍ଣ୍ଣନା କରାଯାଇଛି । ଓଡ଼ିଶାର ବିଭବ, ସଂସ୍କୃତି, ଭ୍ରମଣ, ସାହସିକତା କଥା ସାଧବ ବାଣିଜ୍ୟ ରୀତିରୁ ହିଁ ଆମ୍ଭେମାନେ ଜାଣିବାକୁ ପାଇଥାଉ ।

କବି ଉପେନ୍ଦ୍ର ଭଂଜ ତାଙ୍କ ଦ୍ୱାରା ରଚିତ ଗ୍ରନ୍ଥ ମାନଙ୍କରେ, ବାଣିଜ୍ୟ ବ୍ୟବସାୟର ଚିତ୍ର ଚିତ୍ରଣ କରିଛନ୍ତି । ବାଣିଜ୍ୟ ସାରି ବୋଇତ କୂଳରେ ଲାଗେ, ଚିରାଚରିତ ଲୋକ ପ୍ରଚଳିତ ସାମାଜିକ ପ୍ରଥାକୁ କିପରି ପାଳନ କରାଯାଏ ସେ ଦୃଶ୍ୟକୁ ଦର୍ଶାଇଛନ୍ତି । ବିଦେଶାଗତ ସାଧବମାନଙ୍କର ସାଧବ କୂଳବଧୂ ଓ କନ୍ୟାମାନେ ପିତା, ସ୍ୱାମୀ ଓ ଭାଇଙ୍କୁ ବନ୍ଦାପନାକରି ଘରକୁ ନେଇଛନ୍ତି ।

ବହିତ୍ର ଲାଗିଲା ଯାଇ ସିଂହଳ ଦ୍ୱୀପରେ
ସାଧବ ଯୁବତୀଗଣ ଅତି ପ୍ରମୋଦରେ
ଗଲେ ବହିତ୍ର ବନ୍ଦାଇ
ଅର୍ଘ୍ୟସ୍ଥଳୀମାନେ କରେ ହୁଳହୁଳି ଦେଇ
ରତ୍ନାକର ସାଧୁ ତା ଭଗିନୀ ମେଘମାଳା ।

ଦଇବେ ସେ ଦିନ ଭାତୃପୁରେ ଯାଇଥିଲା
ତାକୁ ଜାୟା ସଙ୍ଗେ ଦେଖି,
ହୋଇଲା ବୋଇତିଆଳ ଅତିଶୟ ସୁଖୀ ।

ବୋଇତ ବାଣିଜ୍ୟ ସର୍ବଦା, ବିପଦ ପୂର୍ଣ୍ଣ ଥିଲା । ଜଳଦସ୍ୟୁମାନଙ୍କର ଆକ୍ରମଣ, ସାମୁଦ୍ରିକ ଝଡ଼ର ସମ୍ମୁଖୀନ, ଶତ୍ରୁମାନଙ୍କର ଆକ୍ରମଣ ପ୍ରଭୃତି ବିପଦ ବୋଇତ ଓ ବୋଇତ ଯାତ୍ରୀଙ୍କର କ୍ଷତି ଘଟାଇବାର ଆଶଙ୍କା । ପାଦେ ପାଦେ ବିପଦ । ସେଥିଯୋଗୁଁ ସାଧବ ପରିବାରର ନିଜ ଲୋକମାନେ ବିପଦ ଆଶଙ୍କାରେ କାତର ଭାବେ ଦିନ କାଟୁଥାନ୍ତି । ବୋଇତ ସର୍ବ ଶୁଭରେ ଧନରତ୍ନ ବୋଝେଇ କରି ବନ୍ଦର ସ୍ଥାନରେ ପହଞ୍ଚିଗଲେ ଉଲ୍ଲସିତ ହୋଇ ଉଠନ୍ତି । ଶ୍ରୀଜଗନ୍ନାଥ ଓ ମା' ମଙ୍ଗଳା ସେମାନଙ୍କର ପ୍ରାର୍ଥନା ଶୁଣଛନ୍ତି ବୋଲି ପ୍ରଭୁଙ୍କ ନିକଟରେ କୃତ୍ୟକୃତ୍ୟ ହୋଇ ଉଠନ୍ତି । ବାଣିଜ୍ୟରୁ ଆଣିଥିବା ମୂଲ୍ୟବାନ ପଦାର୍ଥରୁ କିଛି ଶ୍ରୀମନ୍ଦିରଙ୍କୁ ପ୍ରଦାନ କରିଥାନ୍ତି । ଶ୍ରୀଜଗନ୍ନାଥ ହେଉଛନ୍ତି କୋଟି ଓଡ଼ିଆର ପ୍ରାଣ ଦେବତା ।

ଉପେନ୍ଦ୍ର ଭଂଜ ପରମେଶ୍ୱର ଦଇବଙ୍କୁ ସ୍ମରଣ କରି ବୋଇତିଆଳ ସାଧବର ଆତ୍ମସମର୍ପଣ ଭାବକୁ ବ୍ୟକ୍ତି କରିଛନ୍ତି-

ଅତି ଦରିଦ୍ର ମୁଁ ବହିତ୍ର ବଣିଜ କରିଛି ଉପାୟ ବଳରେ
ଭଲମନ୍ଦ ଅଛି କି କପାଳରେ
ଦଇବ ଯେ ତୁହି ସେ ତୋତେ ଗୋଚର ଦୟାରେ ଲଗା କୂଳରେ । (ଲାବଣ୍ୟବତୀ)

ଭଂଜ ମଧ୍ୟ 'ବୈଦେହୀଶ ବିଳାସ' କାବ୍ୟରେ ନୌବାଣିଜ୍ୟ ଚିନ୍ତାକୁ ବ୍ୟକ୍ତ କରି ଲେଖିଛନ୍ତି-

ବାରିରାଶି ମଧ୍ୟେ ମୋର
ବହିତ୍ର ଫଟାଇ ଧନ କରିନେଲା କ୍ରୂର
ବାଣିଜ୍ୟ ବହୁନେ କେହି ଜୀବନ ପୋଷିବ ?

'ବୈଦେହୀଶ ବିଳାସ' କାବ୍ୟରେ ୪ର୍ଥ ଛାନ୍ଦରେ ଋଷ୍ୟଶୃଙ୍ଗ ମୁନିକୁ ଜରତା ସହିତ ଚମ୍ପାବତୀ ନଗ୍ରକୁ ନୌକାରେ ବସାଇ ଭୁଲାଇ ଆଣିବା ଦୃଶ୍ୟର ବର୍ଣ୍ଣନାରେ କହିଛନ୍ତି ।

ବହିତ୍ର ପ୍ରତିମ ନାବେ ପ୍ରଦେଶ ନାଗରୀ
ବ୍ୟବସାୟ ଚୟ କହି ବ୍ୟବସ୍ଥିତ କରି ଯେ ।।

ସେହି ଚତୁରୀ ବେଶ୍ୟମାନେ ବୋଇତ ଭଳି ହୋଇଥିବା ନୌକାରେ ପ୍ରବେଶ କଲେ ଓ ନୌକାକୁ ଚଳେଇ ନେଲେ । ଭଂଜଙ୍କର ନୌଯାତ୍ରାର ବର୍ଣ୍ଣନା ବୈଦେହୀଶ ବିଳାସ କାବ୍ୟର ନବମ ଛାନ୍ଦରୁ ମିଳେ । ଗଙ୍ଗା ବର୍ଣ୍ଣନା କରିବାକୁ ଯାଇ କବି ଯେଉଁ ସବୁ ଶବ୍ଦ ସଂଯୋଜନ କରିଛନ୍ତି ସେ ସବୁ ଅତ୍ୟନ୍ତ ମାର୍ମିକ, ରସସିକ୍ତ ଓ ବୁଦ୍ଧି ଦୀପ୍ତ । ଏହି 'ଗଙ୍ଗାରେ ନୌଯାତ୍ରା' ଛାନ୍ଦଟି ଓଡ଼ିଶାର ଘରେ ଘରେ ସୁପ୍ରସିଦ୍ଧ ।

ବିଶ୍ୱାମିତ୍ରଙ୍କ ସହିତ ଶ୍ରୀରାମ ଲକ୍ଷ୍ମଣ ମିଥିଳା ଯାତ୍ରା କରିବା ବାଟରେ ଗଙ୍ଗା ନଦୀକୁ ଭେଟିଛନ୍ତି । ଗଙ୍ଗା ନଦୀ ହେଉଛି ଭଂଜଙ୍କ ମତରେ ଆର୍ଯ୍ୟ ସଂସ୍କୃତିର ରାଷ୍ଟ୍ରନଦୀ ।

ବିତଳକୁ ଆଲିଙ୍ଗନ କରି ଜାହ୍ନବୀ ଶୋଭନ
ହରେ ସୁରବର ତାପ ଚାରୁ ଧାରା ସେ ।
ବହେ ମକର କେତନ ଉଚ୍ଛନ୍ନ ରତି ସମାନ
ପୂରିତ ରହିଛି ପୁଣି ଅଶେଷ ରସେ ।
ବିଦ୍ୟ ହୈମବତୀ ପଦରେ ।
ବିଷକଣ୍ଠ- ତୋଷଦାନୀ ବେନି ମତରେ ।

ଗଙ୍ଗା ନଦୀର ଆକାଶ, ପାତାଳ ଓ ପୃଥିବୀ ସହିତ ସମ୍ପର୍କ ଓ ପୃଥିବୀ ସହିତ ସମ୍ପର୍କର କଥା । କବି ସମ୍ରାଟ ଉପେନ୍ଦ୍ର ଭଂଜ ନଦୀ ମାନଙ୍କର ପବିତ୍ରତା ତଥା ନିର୍ମଳତା ବିଷୟରେ ବର୍ଣନା କରିବାକୁ ଯାଇ ଏକ ନୂତନ ତଥ୍ୟ ଉପସ୍ଥାପନ କରିଛନ୍ତି, ଗୋଦାବରୀ ନଦୀର ମହତ୍ତ୍ୱ ମଧ୍ୟ ସ୍ୱୀକାର କହିଛନ୍ତି ଶ୍ରୀରାମ ଓ ସୀତାଙ୍କ ପବିତ୍ର ପାଦ ସ୍ପର୍ଶରେ ଆସିଥିବା ଯୋଗୁ ପରମ ପାବନୀ । ସେ ଏକ ନାୟିକା ବନି ଯାଇଛି ।

ବିଲୋକି ନଦୀ ଗୋଦାବରୀ । ବାମା କି ଶୁକ୍ଳ ଅଭିସାରୀ ।
ବିଶଦ ଫେନ ପାଟଶାଢ଼ୀ । ବାନ୍ଧି ହୋଇଛି ଫୁଲ ପଢ଼ି ।।
ବିଶୁଦ୍ଧ ଦଶା ସ୍ଥିତ ହୋଇ । ବୀଚି କରକ ଟେକି ଦେଇ ।
ବିଶେଷ କୁମୁଦ ଛଟକ । ବିରାଜେ ରଜତ କଟକ ।
ଚୁଡ଼ି ଉଠଇ ଚକ୍ର ବସି । ବାସ ଖସିକି ସ୍ତନ ଦିଶି ।
ବିସ୍ୱରେ କ୍ରୀଡ଼େ ହଂସ ଶ୍ରେଣୀ । ବାନ୍ଧିଛି ନିଃସ୍ୱନ କିଂକିଣୀ ।
ବାରିଦ ନେତ୍ରେ ଭୃଙ୍ଗ ଖେଳା । ବିଳସେ କିଟଞ୍ଜଳ ଡୋଳା ?
(ବୈ.ବି.୨୨ଶ ଛାନ୍ଦ)

ସୀତାଙ୍କ ଅନୁରୋଧ ରକ୍ଷା କରି ଶ୍ରୀରାମ ସୀତାଙ୍କ ସହିତ ସରସ୍ୱତୀ ଗୋମତୀ, ନର୍ମଦା, ଯମୁନା, ଗଙ୍ଗା, ଗୋଦାବରୀ ତୀରରେ କିଛି କିଛି ଦିନ ଅତିବାହିତ କରିଛନ୍ତି । କେବଳ ସେତିକି ନୁହେଁ, ସୀତା କାବେରୀ ତରଙ୍ଗରେ କେଶ ପ୍ରକ୍ଷାଳନ କରିଛନ୍ତି । ତା ପରେ ବେତ୍ରବତୀ, ବ୍ରହ୍ମୀ, କୃଷ୍ଣାବେଣୀ ଚନ୍ଦ୍ରଭାଗା ଓ ଋଷିକୁଲ୍ୟାର ଶୋଭା ବର୍ଣ୍ଣନା କରିଛନ୍ତି ।

ଭଂଜ ସାହିତ୍ୟରେ ନଦୀ ବର୍ଣ୍ଣନା ସହ ନୌଯାତ୍ରାର ବିଶଦ ବର୍ଣ୍ଣନା ଛତ୍ରେ ଛତ୍ରେ ଚିତ୍ରିତ ହୋଇଛି । ଭଂଜ ନଦୀ ପୁଷ୍କରିଣୀ ପ୍ରଭୃତି ଜଳାଶୟର ସୌନ୍ଦର୍ଯ୍ୟରେ ବିମୁଗ୍ଧ ହୋଇଉଠିଛନ୍ତି । ଉତ୍କଳୀୟ ପରମ୍ପରା ଓ ନୀତିରୀତିକୁ ମଧ୍ୟ ନଦୀମାନଙ୍କ ସହିତ ଯୋଡ଼ି ନଦୀମାତୃକା ସଂସ୍କୃତିର ପରିଚୟ ଦେଇଛନ୍ତି ।

ଦୂରଭାଷ: ୯୯୩୭୮୪୦୩୮୭

ଠଠ



# ବାଲିଯାତ୍ରା : ସାଂସ୍କୃତିକ ଐକ୍ୟର ଜୀବନ୍ତ ନିଦର୍ଶନ

❖ ପ୍ରଫେସର ବୈଷ୍ଣବ ଚରଣ ସାମଲ

କଟକର ବାଲିଯାତ୍ରା ଏବେ ନୁହେଁ, ଦୀର୍ଘ ଦିନ ଧରି ଆପଣାର ସାଂସ୍କୃତିକ ଐକ୍ୟ, ଜାତି, ବର୍ଣ୍ଣ ଧର୍ମ ନିର୍ବିଶେଷରେ ଭ୍ରାତୃତ୍ୱ ବନ୍ଧନ ଓ ଉଲ୍ଲାସମୟ ସ୍ମୃତି ବହନ କରିଆସିଛି । ଏହା ଗୋଟିଏ କଥା ସୂଚାଇ ଦେଇଛି ଯେ ବାଲିଯାତ୍ରା ଉତ୍ସବ କଟକବାସୀଙ୍କର କେବଳ ନୁହେଁ; ସମଗ୍ର ଓଡ଼ିଶାର ଓ ଓଡ଼ିଆ ଜାତିର ଭବ୍ୟ ଉତ୍ସବ । ବାଲିଯାତ୍ରା ଦେଖିବାକୁ ସାରା ଓଡ଼ିଶାରୁ, ଏପରିକି ଓଡ଼ିଶା ବାହାରୁ ମଧ୍ୟ ଲୋକେ ପିଲାଛୁଆଙ୍କୁ ଧରି ଆସନ୍ତି । କଟକ ସହରରେ ନାନା ପୂଜା ପାର୍ବଣ ଅନୁଷ୍ଠିତ ହୁଏ । ଏସବୁ ପର୍ବ କେବଳ କଟକର ନୁହେଁ; ବାଲିଯାତ୍ରା କିନ୍ତୁ ସ୍ୱତନ୍ତ୍ର ଭାବେ ମହିମାନ୍ୱିତ । ସାରା ଓଡ଼ିଶା ଏଠି ସମବେତ ହୁଏ । ସମସ୍ତଙ୍କ ଭିତରେ ଗୋଟିଏ ଭାବ ଫୁଟି ଉଠି ବାଲିଯାତ୍ରା ଆମର । ଏଠି 'ମୁଁ'ର ସ୍ଥାନ ନ ଥାଏ । ଜାତିବର୍ଣ୍ଣ ଧର୍ମ ନିର୍ବିଶେଷରେ ସମସ୍ତେ 'ଆମେ'ରେ ପରିଣତ ହୋଇଯାଆନ୍ତି ଓ ଯାତ୍ରାର ପରିପୂର୍ଣ୍ଣ ଆନନ୍ଦ ଲାଭ କରନ୍ତି ।

ଯାତ୍ରାର ଲକ୍ଷ୍ୟ ଆନନ୍ଦ । ପର୍ବପର୍ବାଣି ଆନନ୍ଦ ଦିଏ ମାତ୍ର ତା'ର ଲକ୍ଷ୍ୟ ଆଧ୍ୟାତ୍ମିକ ପ୍ରଶାନ୍ତି । ଏହି ଦ୍ୱିତୀୟ କଥାଟି ସଂପ୍ରତି ଗୌଣ ହୋଇଯାଇଛି । ଯାତ୍ରା କେବଳ ଅଖଣ୍ଡ ଆନନ୍ଦର ଉତ୍ସ । ଗୋଟାଏ ମୈତ୍ରୀବୋଧ ସମସ୍ତଙ୍କ ଭିତରେ ସୃଷ୍ଟି ହୁଏ । ବାଲିଯାତ୍ରା କୌଣସି ଅଧ୍ୟାତ୍ମିକ ବା ଧର୍ମୀୟ ପର୍ବ ନୁହେଁ । ଏହା ଏକ ଲୋକ ପର୍ବ । କାଳକ୍ରମେ ଏହି ଲୋକ ପର୍ବ ବଦଳିଯାଇଛି ଅଭିଜାତ ପର୍ବକୁ ।

ଏହା ସତ୍ୟ ଯେ ଏକଦା ଉତ୍କଳ / କଳିଙ୍ଗ ଥିଲା ପୃଥିବୀର ଅନ୍ୟତମ ପ୍ରସିଦ୍ଧ ନୌବାଣିଜ୍ୟ ରାଜ୍ୟ । ଖ୍ରୀଷ୍ଟପୂର୍ବ ପାଂଶ / ଛଅଶ ବର୍ଷ ପୂର୍ବରୁ କଳିଙ୍ଗ/ଉତ୍କଳର ସାଧବମାନେ ସମୁଦ୍ର ପଥରେ ନାନା ଦ୍ୱୀପ, ଉପଦ୍ୱୀପ ଓ ଦେଶକୁ ଯାଉଥିଲେ ଓ ସେସବୁ ସ୍ଥାନରେ ସ୍ୱଦେଶରୁ ନେଇଥିବା ସୂକ୍ଷ୍ମବସ୍ତ୍ର, ମାଟି ନିର୍ମିତ ପାତ୍ର, ନଡ଼ିଆ ଓ ନଡ଼ିଆ କତାରେ ନିର୍ମିତ ନାନା ପଦାର୍ଥ, ସ୍ୱଦେଶରେ ଉତ୍ପନ୍ନ ହେଉଥିବା ନାନା ଶସ୍ୟ ଓ ଫଳ ଫୁଲୁରି ଇତ୍ୟାଦି ବିଭିନ୍ନ ବସ୍ତୁର ବାଣିଜ୍ୟ କରୁଥିଲେ । ବାଣିଜ୍ୟ କରୁକରୁ ସେସବୁ ସ୍ଥାନରେ ଉପନିବେଶ ସ୍ଥାପନ କରୁଥିଲେ, ଆପଣାର ସଂସ୍କୃତି ଓ ଧର୍ମ ଧାରଣା ପ୍ରଚାର କରୁଥିଲେ; କେତେ ମଧ୍ୟ ସ୍ଥାୟୀ ଭାବରେ ରହିଯାଉଥିଲେ । କେଉଁଠି କେଉଁଠି ମନ୍ଦିର ନିର୍ମାଣ କରୁଥିଲେ, ରାମାୟଣ ଓ ମହାଭାରତର କାହାଣୀ କହୁଥିଲେ । ଫଳରେ ସେସବୁ ଅଂଚଳରେ ରାମାୟଣ ଓ ମହାଭାରତର କାହାଣୀ କ୍ରମେ ବଦଳି ଯାଇ ନୂତନ ରୂପରେ ପ୍ରକାଶ ପାଉଥିଲା, ଯାହାର ପରିଚୟ ଆଜି ଆମେ ପାଇଥାଉ ସେସବୁ ଅଂଚଳରେ ପ୍ରଚଳିତ ଥିବା ରାମକଥାରୁ । କେଉଁଠି କେଉଁଠି ମଧ୍ୟ ଜଗନ୍ନାଥ ମନ୍ଦିର ନିର୍ମାଣ କରାଯାଇ ତ୍ରିମୂର୍ତ୍ତିଙ୍କ ଉପାସନା ଦେଖିବାକୁ ମିଳେ । କଳିଙ୍ଗାଗତ ଲୋକେ ସେଠାରେ ରହିଯାଇ ନିଜକୁ କ୍ଲିଙ୍ଗ୍ ଜାତି ରୂପେ ପରିଚୟ ଦିଅନ୍ତି, ଯାହାର ମୂକସାକ୍ଷୀ ଏବେ ମଧ୍ୟ ଜାଭା, ସୁମାତ୍ରା, ମାଳୟ ଆଦି ଦ୍ୱୀପରେ ଦେଖିବାକୁ ପାଉ । ସିଂହଳ ସହିତ କଳିଙ୍ଗ ଓ ଉତ୍କଳର ସଂପର୍କ ନିବିଡ଼ ହୋଇଯାଇଥିଲା । ଏବେ ମଧ୍ୟ ସିଂହଳର ଅନେକ ସାଙ୍ଗିଆ କଳିଙ୍ଗ/ଉତ୍କଳର ସାଙ୍ଗିଆ ସହିତ ସମାନ । ଏହି କଳିଙ୍ଗରୁ ଅଶୋକଙ୍କ ପୁତ୍ର ମହେନ୍ଦ୍ର ଓ କନ୍ୟା ସଂଘମିତ୍ରା ବୋଇତ ସାହାଯ୍ୟରେ ସିଂହଳକୁ ଯାଇଥିଲେ ବୌଦ୍ଧଧର୍ମ ପ୍ରଚାର ପାଇଁ । କଳିଙ୍ଗ ରାଜକନ୍ୟାକୁ ବିବାହ କରି ଦନ୍ତକୁମାର ଯୌତୁକ ସ୍ୱରୂପ ବୁଦ୍ଧଦନ୍ତକୁ ନେଇ ସିଂହଳର ଗୋଟିଏ ସ୍ତୂପରେ ରଖିଥିଲେ । ଇତିହାସ ଏହାର ପ୍ରମାଣ ଦିଏ । ଏବେ ମଧ୍ୟ ବ୍ରହ୍ମଦେଶର ଉତ୍କଳ ରାଟ ଓ କଳିଙ୍ଗ ରାଟ ଅତୀତ ଓଡ଼ିଶାର ନୌବାଣିଜ୍ୟର ସ୍ମୃତିକୁ ମନେ ପକାଇଦିଏ । ଚୀନ ସମ୍ରାଟ ତେ-ସୁଙ୍ଗଙ୍କ ନିକଟକୁ ଉତ୍କଳର ଭୌମବଂଶର ରାଜା ଶୁଭଙ୍କର ଦେବ ରତ୍ନଗିରି ବା ପୁଷ୍ପଗିରି ବିହାରର ଭିକ୍ଷୁ ପ୍ରାଜ୍ଞଙ୍କ ହାତରେ ଗଣ୍ଡବ୍ୟୂହ ପୋଥି ବୋଇତ ସାହାଯ୍ୟରେ ପଠାଇଥିବା ଇତିହାସରୁ ପ୍ରମାଣ ମିଳେ । କେବଳ ପୂର୍ବ ସମୁଦ୍ରରେ ଥିବା ଦ୍ୱୀପପୁଞ୍ଜ ନୁହେଁ; ଜାପାନ, ଚୀନ, ବ୍ରହ୍ମଦେଶ ଓ ପଶ୍ଚିମ ପଟରେ ଥିବା ମରିସସ୍, କୀଟଦ୍ୱୀପ, ସୁଦୂର ଆମେରିକା ପର୍ଯ୍ୟନ୍ତ ଓଡ଼ିଆ ସାଧବମାନେ ବୋଇତ ନେଇ ବାଣିଜ୍ୟ କରୁଥିବା ସଂକେତ ସେସବୁ ଦେଶରୁ ମିଳିଥାଏ । ବିଶିଷ୍ଟ ଔପନ୍ୟାସିକ ଶାନ୍ତନୁ ଆଚାର୍ଯ୍ୟଙ୍କର 'ତୃଷ୍ଣା' ଉପନ୍ୟାସରେ ଆମେରିକାର ଏକ ଗୁମ୍ଫାରେ କେଉଁକାଳରୁ ପ୍ରତିଷ୍ଠା ଲାଭ କରିଥିବା ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ମୂର୍ତ୍ତି ବିଷୟରେ ଉଲ୍ଲେଖ ଅଛି । ଏହା କ'ଣ ସେକାଳର ଓଡ଼ିଆ ଶିଳ୍ପୀଙ୍କ କୃତିତ୍ୱର ପରିଚୟ ଦିଏ ନାହିଁକି ? ବମ୍ବେ ନିକଟବର୍ତ୍ତୀ ସମୁଦ୍ର ଭିତରେ ଥିବା ଏଲିଫେଣ୍ଟା ପାହାଡ଼ର ଗୁମ୍ଫା, ମୂର୍ତ୍ତି ଓ ଚିତ୍ର ଦେଖିଲେ କ'ଣ ଓଡ଼ିଆ ଶିଳ୍ପୀଙ୍କ କୃତିତ୍ୱ ମନେ ପଡ଼େ ନାହିଁ ? ଅତଏବ ଖ୍ରୀଷ୍ଟପୂର୍ବ କାଳରୁ ପରବର୍ତ୍ତୀ ପ୍ରାୟ ସପ୍ତଦଶ/ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଦୁଇହଜାର ବର୍ଷରୁ ଊର୍ଦ୍ଧ୍ୱକାଳ ଧରି ଓଡ଼ିଶାର ବୋଇତ ସମୁଦ୍ରବକ୍ଷରେ ନାନା ଦେଶ ବିଦେଶକୁ ଯାଇ





ସେଠାରେ ସାଧବମାନେ ବାଣିଜ୍ୟ କରୁଥିଲେ ଓ ଓଡ଼ିଶାକୁ ଅର୍ଥନୀତି ସମୃଦ୍ଧ କରୁଥିଲେ । ମନକୁ ପ୍ରଶ୍ନ ଆସେ ଏତେ ଦେଶ, ଏତେ ବଡ଼ବଡ଼ ଦ୍ୱୀପକୁ ଓଡ଼ିଆ ବୋଇତ ଯାଉଥିବାବେଳେ କଟକର ପର୍ବକୁ ବାଲିଯାତ୍ରା କାହିଁକି କୁହାଗଲା ? 'ବାଲି' ତ କ୍ଷୁଦ୍ର ଦ୍ୱୀପଟିଏ । ଅଥଚ ସେହି ବାଲିକୁ ଯାଉଥିଲେ ବୋଲି କ'ଣ ବାଲିଯାତ୍ରା ହେଲା ?

ଗୋଟିଏ ଦୃଷ୍ଟିରୁ 'ବାଲି' ଦ୍ୱୀପଟି ତାତ୍ପର୍ଯ୍ୟପୂର୍ଣ୍ଣ । ବିଶିଷ୍ଟ ଔପନ୍ୟାସିକ କାହ୍ନୁଚରଣ ଏହି ଦ୍ୱୀପର ସଂସ୍କୃତିକୁ ନେଇ ରଚନା କରିଦେଲେ ଉପନ୍ୟାସଟି 'ବାଲିରାଜା' (୧୯୨୪) । ଓଡ଼ିଆ ପାଠକମାନଙ୍କ ପାଖରେ ଏହା ହୋଇଗଲା ଅତ୍ୟନ୍ତ ପ୍ରିୟ । ହୁଏ ପୂର୍ବରୁ ବାଲିଦ୍ୱୀପକୁ ନେଇ ଯେଉଁ କ୍ଷୀଣ ସ୍ମୃତିଟି ଥିଲା ଏହି ଉପନ୍ୟାସ ତାହାକୁ ଆହୁରି ଉଦ୍‌ଜୀବିତ କରିଦେଲା ? 'ବାଲି' କ୍ଷୁଦ୍ର ଦ୍ୱୀପ, ମାତ୍ର ଓଡ଼ିଆ ସାଧବ ଯେତେବେଳେ ବୋଇତ ନେଇ ଯାଉଥିଲା ସେତେବେଳେ କଳିଙ୍ଗ ସାଗର ଭିତରେ ଥିବା ଅନ୍ୟାନ୍ୟ ଦ୍ୱୀପ ତୁଳନାରେ ପ୍ରଥମେ 'ବାଲି' ଦ୍ୱୀପରେ ପହଁଚୁଥିଲେ । ସେଠୁ ଯାଉଥିଲେ ଲାକ୍ଷାଦ୍ୱୀପ ଓ ଅନ୍ୟାନ୍ୟ ଦ୍ୱୀପ ତଥା ଦେଶକୁ । ତେଣୁ ବୋଧହୁଏ ଲୋକମୁଖରେ ହୋଇଗଲା ବାଲିଯାତ୍ରା । ଏହି ଯାତ୍ରା ସମଗ୍ର ଦ୍ୱୀପ ଓ ଦେଶକୁ ଯାଉଥିବାର ଏକ ପ୍ରତୀକ । ଏହି ପ୍ରତୀକ ମଧ୍ୟଦେଇ ସମସ୍ତ ଦ୍ୱୀପ ଓ ଦେଶକୁ ବୋଇତ ଯାତ୍ରା କରୁଥିବା ସୂଚିତ ହୁଏ । ତେଣୁ ଏହି ପର୍ବର ନାମକରଣ ହୋଇଛି ବାଲିଯାତ୍ରା । ପୁଣି ମନ ଭିତରେ ପ୍ରଶ୍ନ ଆସିବା ସ୍ୱାଭାବିକ ଯେ ଯଦି ଏହା ଏକ ଯାତ୍ରା, ତେବେ ବର୍ଷର ଅନ୍ୟ କୌଣସି ମାସରେ ନ ହୋଇ କାର୍ତ୍ତିକ ମାସରେ କାହିଁକି ହେଲା ? ଆମ ସାମାଜିକ ଓ ସାଂସ୍କୃତିକ ଜୀବନରେ କାର୍ତ୍ତିକ ମାସକୁ ଧର୍ମମାସ କୁହାଯାଏ । ସ୍ୱଭାବତଃ ଓଡ଼ିଆ ଜାତି ଧର୍ମଭାବାପନ୍ନ । ତେଣୁ ଏହି ମାସକୁ ବାଲିଯାତ୍ରା ପାଇଁ ଅନୁକୂଳ ମନେ କରିଥିବେ । ଅଧିକନ୍ତୁ ବୋଇତ ଯାତ୍ରାଟା ମୌସୁମୀ ବାୟୁର ପ୍ରବାହକୁ ନେଇ ହୋଇଥାଏ । ଦକ୍ଷିଣ ପଶ୍ଚିମ ମୌସୁମୀ ବାୟୁ ପ୍ରବାହିତ ହେଲେ ବୋଇତ ସବୁ ପାଲ ଟାଣି ଉତ୍ତର ପଟକୁ ଯାଉଥିଲେ ଓ ଉତ୍ତର ପଶ୍ଚିମ ମୌସୁମୀ ବାୟୁ ପ୍ରବାହିତ ହେଲେ ଦକ୍ଷିଣ ପଟକୁ ଫେରି ଆସୁଥିଲେ । କାର୍ତ୍ତିକ ମାସ ବେଳକୁ ବୋଇତ ସବୁ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରୁଥିଲେ । ଲୋକ ଉକ୍ତିରେ ଅଛି-

ଆ କା ମା ବୈ (ଭୈ)
ପାନ ଗୁଆ ଦେଇ / ପାନ ଗୁଆ ତୋର
ମାସକ ଧର୍ମ ମୋର ।

ଆଷାଢ଼ ଠାରୁ କାର୍ତ୍ତିକ ମାସ ମଧ୍ୟରେ ବୋଇତ ସବୁ ଫେରି ଆସିବ । ଭୟ କରିବା ଦରକାର ନାହିଁ । ଚାଣକ୍ୟ ମଧ୍ୟ 'ଅର୍ଥଶାସ୍ତ୍ର'ରେ ବୋଇତ ନିର୍ମାଣ, ବୋଇତଯାତ୍ରା, ବୋଇତର କର୍ମଚାରୀ, ବୋଇତଯାତ୍ରାର ମାସ ସଂପର୍କରେ ଯାହା ଉଲ୍ଲେଖ କରିଛନ୍ତି ଓଡ଼ିଶାର ବୋଇତ ନିର୍ମାଣ ଶିଳ୍ପ ଓ ବୋଇତ ଯାତ୍ରାକୁ ହିଁ ସୂଚାଏ । କାରଣ ମଗଧ ସମୁଦ୍ର ତଟର ନୁହେଁ ବା ସେଠାରେ ବୋଇତରେ ଦୂର ଦେଶକୁ ଯାଇ ବାଣିଜ୍ୟ କରିବାର ପରଂପରା ନଥିଲା । ତେଣୁ କଟକର ପର୍ବଟି ବାଲିଯାତ୍ରା ନାମରେ ସୁଖ୍ୟାତ ଓ ଏହା କାର୍ତ୍ତିକ ପୂର୍ଣ୍ଣିମାକୁ ଲଗେଇ ଅନୁଷ୍ଠିତ ହୁଏ । ସେଦିନ ମଧ୍ୟ ମହାନଦୀରେ ଅତୀତର ସ୍ମୃତିକୁ ମନେପକାଇ ସୋଲ ଓ କଦଳୀପାଟୁଆ ଡଙ୍ଗା ତିଆରି କରି ଭସାଯାଏ ଓ 'ଆ କା ମା ବୈ' ଗୀତ ବୋଲାଯାଏ । କଟକର ବାଲିଯାତ୍ରାକୁ ଅନୁକରଣ କରାଯାଇ ସଂପ୍ରତି ଓଡ଼ିଶାର ନାନା ସ୍ଥାନରେ ବାଲିଯାତ୍ରା ଅନୁଷ୍ଠିତ ହେଉଛି । ତେବେ କଟକରେ ବାଲିଯାତ୍ରାର ମହତ୍ତ୍ୱ ସ୍ୱତନ୍ତ୍ର ।

ବାଲିଯାତ୍ରା ଯେ ନୌବାଣିଜ୍ୟ ଓ ବୋଇତ ଯାତ୍ରାର ସ୍ମୃତି ବହନ କରେ; ଏ କଥାକୁ ଅସ୍ୱୀକାର କରି ହୁଏନାହିଁ । ପୁଣି ପ୍ରଶ୍ନ ଆସେ ବାଲିଯାତ୍ରା ସମୟରୁ ଆରମ୍ଭ ହେଲା ? କେଉଁ ପର୍ଯ୍ୟନ୍ତ ତ ବୋଇତ ଯାତ୍ରା ହଜାରେ ବର୍ଷରୁ ଊର୍ଦ୍ଧ୍ୱ ହୋଇଗଲାଣି, ଏହା ପୂର୍ବରୁ କାହିଁକି ହେଉ ନଥିଲା ? ସ୍ମରଣୀୟ ଯେ କଟକର ନଗର ସୋମବଂଶର ରାଜା ରହିଲେ । ପରେ ପରେ ଗଂଗବଂଶ ଓ ସୂର୍ଯ୍ୟବଂଶର ରାଜାମାନେ ରହିଲେ । ବାରବାଟୀ ଗଡ ନିର୍ମିତ ହେଲା । ମୁକୁନ୍ଦଦେବ ନବତଳ ପ୍ରାସାଦ ନିର୍ମାଣ କଲେ । ତେଣୁ ବାରବାଟୀର ପ୍ରସିଦ୍ଧି ହେଲା ପରେ ଓ ଗଜପତି ହେଲାପରେ ବାଲିଯାତ୍ରା ଅନୁଷ୍ଠିତ ହୋଇଥିବ । ନୌବାଣିଜ୍ୟର ସୁବର୍ଣ୍ଣଯୁଗ ପଞ୍ଚଦଶ ଶତାବ୍ଦୀରୁ ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ ଯାହାର ଚିତ୍ର ଆମେ ଦେଖୁ ଲୋକକଥା, ଲୋକକବିତା, କବି କର୍ଣ୍ଣଙ୍କ ବିବିଧ ପାଲା କାହାଣୀ, ସାରଳା ମହାଭାରତ, ଦୀନକୃଷ୍ଣ ଦାସଙ୍କ ପ୍ରସ୍ତାବ ସିନ୍ଧୁ, ରସକଲ୍ଲୋଳ, ଉପେନ୍ଦ୍ର ଭଂଜଙ୍କ ଲାବଣ୍ୟବତୀ, ବୈଦେହୀଶବିଳାସ ଇତ୍ୟାଦି କାବ୍ୟ କବିତା କାହାଣୀ ଭିତରୁ । ତେଣୁ ବାଲିଯାତ୍ରାର ଆରମ୍ଭ କାଳକୁ ଷୋଡ଼ଶ ଶତାବ୍ଦୀର ପ୍ରଥମ ପର୍ବ ବୋଲି ଧରିନେଲେ ବୋଧହୁଏ ଭୁଲ ହେବ ନାହିଁ । ପାରାଦ୍ୱୀପକୁ ଛାଡି ଦେଲେ ଧାମରା, ଚାନ୍ଦବାଲି ଗୋପାଳପୁର ବନ୍ଦରର ବିକାଶ ହୋଇନାହିଁ । ଏ ଦିଗରେ ଧ୍ୟାନ ଦେବାକୁ ହେବ । ବାଲିଯାତ୍ରା ଆମକୁ ଶିକ୍ଷା ଦେଉଛି ଅର୍ଥନୀତିର ବିକାଶ ହେଲେ ରାଜ୍ୟର ବିକାଶ ହେବ । ଏଥିପାଇଁ ଦରକାର ସମସ୍ତଙ୍କର ସହଯୋଗ । ଦରକାର ମଧ୍ୟ ସଂହତି ଓ କର୍ମନିଷ୍ଠତା । ଗୋଟାଏ ସାଂସ୍କୃତିକ ଜାଗରଣ ଏକାନ୍ତ କାମ୍ୟ । ସଂସ୍କୃତି ହିଁ ଜାତିର ଆତ୍ମା । ତାହା ଜାତି ଭିତରେ ଐକ୍ୟର ଗାୟତ୍ରୀ ତୋଳେ । ଯିଏ ତାର ସଂସ୍କୃତିକୁ ଭୁଲିଯାଏ ସେ ହୁଏ ମୃତ । ତାର ପ୍ରଗତି ଅସମ୍ଭବ । ବାଲିଯାତ୍ରା ସେହି ଜାତୀୟ ସଂସ୍କୃତିର ମନ୍ଦ୍ର ମଧୁର ଧ୍ୱନି । ଏଠି ବ୍ୟକ୍ତି ବଡ ନୁହେଁ, ଧର୍ମ ବଡ ନୁହେଁ; ବଡ ମଣିଷ, ଗୋଟାଏ ମହାଜାତି । ଆସନ୍ତୁ, ସକଳ ଭେଦଭାବ ଭୁଲି ସମସ୍ତେ ଏକ ହେବା ଓ ଜାତି ନନ୍ଦିଘୋଷକୁ ଆଗକୁ ଟାଣି ନେବା । ବାଲିଯାତ୍ରାରୁ ଆମେ କ'ଣ ଏତିକି ଶିକ୍ଷା କରିବା ନାହିଁ ?

ଦୂରଭାଷ: ୯୯୩୮୩୯୨୬୮୭

ଠଠ



# ସାଂସ୍କୃତିକ ଜୁଆର ଭଟ୍ଟା

❖ ବନବିହାରୀ ନାୟକ

ଓଡ଼ିଶୀ ସଂସ୍କୃତି ବିବିଧ ରୂପିଣୀ । ଏହାର ବିଶାଳ ବ୍ୟାପ୍ତିରେ ଅନ୍ତର୍ଭୁକ୍ତ ସକଳ ପ୍ରକାର ସଂସ୍କୃତି - ଧାର୍ମିକ, ଆଧାତ୍ମିକ, ସ୍ଥାପତ୍ୟିକ, ସାହିତ୍ୟିକ, ଶୈଳ୍ପିକ, ବାଣିଜ୍ୟିକ, ସାମରିକ, ଐତିହାସିକ, ନାର୍ତ୍ତନିକ, ସାଙ୍ଗୀତିକ ଓ କୃଷି ପ୍ରଭୃତି । ସାମୂହିକ ଭାବରେ ଏହା ଏକ ବିକଶିତ, ସମ୍ପନ୍ନ ସଂସ୍କୃତି ଯାହା ଅନ୍ୟତ୍ର ନାହିଁ । ଏ ସମସ୍ତ ଆମକୁ ଦେଶ ବିଦେଶରେ ଚିହ୍ନେଇ ଦେଲା ଭଳିଆ ସମ୍ପଦ । ଏଠାରେ ସମସ୍ତ ବିଭାଗ ନୁହେଁ, ଆମ ସଂସ୍କୃତିର କେତେକ ବୈଶିଷ୍ଟ୍ୟ, କେତେକ ବିକୃତି, ସମୟର ସୁଅରେ କେତେକ ଜୁଆର ଭଟ୍ଟା, ମୁଖ୍ୟ ଆଲୋଚ୍ୟ ବିଷୟ ।

ଭାରତୀ ସଂସ୍କୃତି ରୂପକ ମହାଗଙ୍ଗାର ଓଡ଼ିଶୀ ସଂସ୍କୃତି ଏକ ପ୍ରମୁଖ ଧାରା । ମୂଳ ଧାରାଠାରୁ ଏହା ପୃଥକ, ବରଂ ମୂଳକୁ ବହୁଳ ଭାବରେ ପରିପୁଷ୍ଟ କରୁଥିବା ଏକ ନିତ୍ୟ ନଦନଶୀଳ ଜୀବନ୍ତ ପ୍ରବାହ । ଭାରତୀୟ ସଂସ୍କୃତିକୁ ଏହାର ଅବଦାନର ସମ୍ପୂର୍ଣ୍ଣ ଚିତ୍ର ଏଠାରେ ଦେବା ଦୁରୂହ ବ୍ୟାପାର, ଏଣୁ ଏକ ସ୍ଥୁଳଚିତ୍ର ପ୍ରଦାନ କରିବାକୁ ହେଉଛି ।

ଆର୍ଯ୍ୟ ଆର୍ଯ୍ୟେତର ସଂସ୍କୃତିର ମହାମିଳନ କ୍ଷେତ୍ର ଶ୍ରୀକ୍ଷେତ୍ରର ସମନ୍ୱୟାତ୍ମିକା ଶ୍ରୀଜଗନ୍ନାଥ ସଂସ୍କୃତି ଭାରତୀ ସଂସ୍କୃତିକୁ ଶ୍ରେଷ୍ଠ ଅବଦାନ । ଏତଦ୍‌ବ୍ୟତୀତ ସ୍ଥାପତ୍ୟିକ କଳା, ମଧ୍ୟଯୁଗୀୟ ସାହିତ୍ୟରେ ଅଳଂକରଣ କଳା, ନୃତ୍ୟ, ସଙ୍ଗୀତ ଓ ଅନ୍ୟାନ୍ୟ ସାଂସ୍କୃତିକ ଉପଚାର ଓ ଉପାଦାନ ମଧ୍ୟରେ, ଅଷ୍ଟମ ଶତାବ୍ଦୀରୁ ବୌଦ୍ଧଧର୍ମର ମହାଯାନ ଓ ବଜ୍ରଯାନ ଶାଖାକୁ ସଂପ୍ରସାରଣ କରିଥିବା ସମ୍ବଳକ (ଆଧୁନିକ ସମ୍ବଲପୁର) ରାଜା ଇନ୍ଦ୍ରଭୂତି ଓ ତାଙ୍କ ଭଉଣୀ ଲକ୍ଷ୍ମୀଙ୍କରାଙ୍କ ଯଥାକ୍ରମେ ଜ୍ଞାନସିଦ୍ଧି ଓ ଅଦ୍ୱୟସିଦ୍ଧି ଗ୍ରନ୍ଥଦ୍ୱୟ, ୬୪ ଯୋଗିନୀ ଉପାସନା, ଉଡ୍ଡୀୟାନ କ୍ଷେତ୍ରର ଶକ୍ତି ଓ ମାତୃକା ଉପାସନା ଏବଂ ତତ୍‌ସମ୍ପର୍କୀୟ ତନ୍ତ୍ର ସାହିତ୍ୟ, ବୁଦ୍ଧଙ୍କୁ ଶ୍ରଦ୍ଧା ଭକ୍ତିରେ ବିଷ୍ଣୁଙ୍କ ୯ମ ଅବତାର ଭାବେ ଗ୍ରହଣ କରି ବୌଦ୍ଧ ଓ ହିନ୍ଦୁ ଧର୍ମର ସମନ୍ୱୟ ସାଧନ, ଶ୍ରୀଜୟଦେବଙ୍କ 'ଗୀତଗୋବିନ୍ଦ', ଯାଜପୁରରୁ ଯାଇ ନଦିଆ ନବଦ୍ୱୀପର ମୀନାପୁର (ଆଧୁନିକ ମାୟାପୁର)ରେ ସ୍ଥାୟୀ ଭାବେ ବସବାସ କରିଥିବା ଜଗନ୍ନାଥ ମିଶ୍ର (ପ୍ରପିତାମହ ବିଶୁଦ୍ଧ ମିଶ୍ର, ପିତାମହ ମଧୁକର ମିଶ୍ର ବଂଶଜ)ଙ୍କ ପୁତ୍ର ବିଶ୍ୱମ୍ଭର ଓରଫ ଶ୍ରୀଚୈତନ୍ୟ ଦେବଙ୍କ ପ୍ରଚାରିତ ଗୌଡ଼ୀୟ ବୈଷ୍ଣବଧର୍ମ ଦର୍ଶନ ଓ ସେ ଦର୍ଶନର ଭାଷ୍ୟକାର ଓଡ଼ିଶାର ପ୍ରଖ୍ୟାତ ଦାର୍ଶନିକ ବଳଦେବ ବିଦ୍ୟାଭୂଷଣଙ୍କ ଗୋବିନ୍ଦଭାଷ୍ୟ, ସଂସ୍କୃତ ଭାଗବତମ୍‌ର ଟୀକାକାର ଶ୍ରୀଧର ସ୍ୱାମୀ (ରେମୁଣା ବାସୀ ବାଲେଶ୍ୱର, ପଞ୍ଚଦଶ ଶତାବ୍ଦୀ)ଙ୍କ ଭାବାର୍ଥ ଦୀପିକା, ଭଗବଦ୍‌ଗୀତା ଭାଷ୍ୟ, 'ସୁଖବୋଧିନୀ ଟୀକା', ପ୍ରସିଦ୍ଧ ଆଳଂକାରିକ ବିଶ୍ୱନାଥ କବିରାଜଙ୍କ 'ସାହିତ୍ୟ ଦର୍ପଣ', ଖଣ୍ଡପଡ଼ା ନିବାସୀ ସାମନ୍ତ ଚନ୍ଦ୍ର ଶେଖରଙ୍କ ପ୍ରସିଦ୍ଧ ଜ୍ୟୋତିଷଶାସ୍ତ୍ର 'ସିଦ୍ଧାନ୍ତ ଦର୍ପଣ' ଓ ଓଡ଼ିଶାରୁ ଆବିଷ୍କୃତ ଅଥର୍ବବେଦର 'ପିପ୍ପଳାଦ ସଂହିତା' ପ୍ରଭୃତି ସାଂସ୍କୃତିକ ଉପାଦାନ ଭାରତୀୟ ସଂସ୍କୃତିକୁ ଓଡ଼ିଶୀ ସଂସ୍କୃତିର ମହାର୍ଘ ଅବଦାନ । ଏଥିପାଇଁ ଓଡ଼ିଆମାନେ ଗର୍ବକରନ୍ତି ।

ଆକାଶ, ସୂର୍ଯ୍ୟ, ଚନ୍ଦ୍ର, ସଂସ୍କୃତି, ସଂଗୀତ, ଜ୍ଞାନ ବିଜ୍ଞାନ, ସୁନା, ଚାନ୍ଦି ହେଉ ଅଥବା ଲୁଣ, ଚିନି ହେଉ, ସେଗୁଡ଼ିକର ଗୁଣ ଧର୍ମ ସର୍ବତ୍ର ସମାନ ହେଲେ ସୁଦ୍ଧା ବିଶେଷ ପାଣି, ପବନ, ପରିବେଶ ପ୍ରଭାବରେ ବିବର୍ତ୍ତନ ହୋଇଥାଏ ଏଥିପାଇଁ ଏକ ପ୍ରକାର ଦ୍ରବ୍ୟ ଭିନ୍ନ ଭିନ୍ନ ମାଟି ପାଣିରେ ସ୍ୱତନ୍ତ୍ର ଗୁଣ ଧର୍ମର ବାହକ ହୁଏ । ଆଉ ଏକ କଥା, ଏଠାରେ ସୂଚନାଯୋଗ୍ୟ ଯେ ସଂସ୍କୃତିର ଭୂମି ସହ ସମ୍ବନ୍ଧ ଥିବାରୁ ଏଥିରେ ବିଭିନ୍ନତା ଆସେ । କୌଣସି ଦେଶର ଜଳବାୟୁ ଓ ମୃତ୍ତିକା ପ୍ରଭାବରେ ସେ ଦେଶବାସୀଙ୍କ ଆଚାର ବ୍ୟବହାର, ମନ, ଧର୍ମ, ବେଶଭୂଷା, ସାହିତ୍ୟ, ସଂସ୍କୃତି ପ୍ରଭାବିତ ହୁଏ । କୁହାଯାଇଛି, ''ଆହାର ଶୁଦ୍ଧୌ ସତ୍ତ୍ୱ ଶୁଦ୍ଧିଃ'' 'ଯୈସା ଅନ୍ନ, ଐସା ମନ' ଅର୍ଥାତ୍ ଖାଦ୍ୟପେୟର ବହୁତ ପ୍ରଭାବ ପଡ଼େ ଜୀବନଚର୍ଯ୍ୟାରେ । 'ଆଚାର ପ୍ରଭବୋ ଧର୍ମଃ' - ଏହି ଆର୍ଷ ବାକ୍ୟରୁ ବିଦ୍ୱାନମାନେ ଶିଖନ୍ତୁ, ଜାଣନ୍ତୁ । ପାଶ୍ଚାତ୍ୟ ଦେଶର କେତେକ ବିଦ୍ୱାନ ଆଉ ପାଦେ ଆଗକୁ ଯାଇ କହନ୍ତି ଯେ ରାଷ୍ଟ୍ରକୁ ଗର୍ବିତ କଲାଭଳି କୌଣସି ଅସାଧାରଣ ବୈଶିଷ୍ଟ୍ୟ ହିଁ ସେ ରାଷ୍ଟ୍ରର ସଂସ୍କୃତି । ଇଂଲିଶ ଜାତି ଉଦ୍ଭାବନ କରିଥିବା ପାର୍ଲାମେଣ୍ଟାରି ଡେମୋକ୍ରାସି ବା ସଂସଦୀୟ ଗଣତନ୍ତ୍ର ସେମାନଙ୍କ ସଂସ୍କୃତି ବୋଲି ସେମାନେ ଗର୍ବ କରନ୍ତି । ଏହା ମଧ୍ୟ ସେମାନଙ୍କ ସଂସ୍କୃତି ଯେ, କୌଣସି ବ୍ୟକ୍ତି ନାଇଟ୍‌ହୁଡ୍ ଉପାଧି ଗ୍ରହଣ କଲାବେଳେ ରାଜା କି ରାଣୀଙ୍କ ଆଗରେ ନତଜାନୁ ହୋଇ ଗ୍ରହଣ କରନ୍ତି । ତାହା ସେମାନଙ୍କର କୁଆଡ଼େ ଗର୍ବ କଲାଭଳି ସଂସ୍କୃତି ମାତ୍ର ଆମ ନନ୍ଦ ମାଷ୍ଟ୍ରେ ରାଷ୍ଟ୍ରପତି ପଦକ ପାଇଲାବେଳେ ତତ୍‌କାଳୀନ ରାଷ୍ଟ୍ରପତି ମାନ୍ୟବର ଶ୍ରୀଯୁକ୍ତ କୋବିନ୍ଦଙ୍କୁ ଉର୍ଦ୍ଧ୍ୱବାହୁ ଆଶୀର୍ବାଦ କରନ୍ତି ଓ ରାଷ୍ଟ୍ରପତି ମଥାପାତି ପ୍ରତି ନମସ୍କାର ଜଣାଇ ତାହା ସ୍ୱୀକାର କରନ୍ତି । ଏହା ଆମର ଗର୍ବ କଲାଭଳି ସଂସ୍କୃତି ।





ସଂସ୍କୃତିର ରୂପରେ ଭିନ୍ନତା ଥିଲେ ବି ସେଥିରେ ତାତ୍ତ୍ୱିକ ସମାନତା ସର୍ବ ସମ୍ମତ । ସଂସ୍କୃତି ଶବ୍ଦର ବ୍ୟାକରଣଗତ ବ୍ୟୁତ୍ପତ୍ତିରୁ ତା'ର ତତ୍ତ୍ୱ ଓ ସ୍ୱରୂପ ଜାଣିହୁଏ । ସଂସ୍କୃତି ଅର୍ଥ ଭୂଷଣ ସ୍ୱରୂପ ମଣିଷର ତ୍ରିତାପର ଉନ୍ନତି ଅନୁକୂଳ ଚେଷ୍ଟା ହିଁ 'ଭୂଷଣଭୂତ ସମ୍ୟକ୍ ପ୍ରଚେଷ୍ଟା' । ମଣିଷର ଲୌକିକ, ପାରଲୌକିକ ଅଭ୍ୟୁଦୟ ଅନୁକୂଳ ଆଚାର ବିଚାର ହିଁ ସଂସ୍କୃତି । ଏହାର ଅର୍ଥ ଅତ୍ୟନ୍ତ ବ୍ୟାପକ । ସଂସ୍କୃତି ସଂସ୍କାର ପ୍ରସୂତ । ଅସଂଖ୍ୟ ସଂସ୍କାରରେ ସଂସ୍କାରିତ ଏକ ସାମୂହିକ ସ୍ୱରୂପ । ଏହାର ଆଉ ଏକ ସଂଜ୍ଞା ହେଉଛି ପରମ୍ପରାଗତ ଅନୁସ୍ୟୁତ, ବା ଗୁନ୍ଥା ହୋଇଥିବା ସଂସ୍କାର । ଆମ ପ୍ରାଚୀନ ଆଚାର ବିଚାର, ସତ୍ୟ, ଶିବ, ସୁନ୍ଦର ଭାବନା, ଧର୍ମ, କର୍ମାଦି, ସାମାଜିକ ବା ଧାର୍ମିକ ବ୍ୟବସ୍ଥା, ନିରନ୍ତର କ୍ରିୟାକଳାପ ହିଁ ସଂସ୍କୃତି । ଓଡ଼ିଶାର ବାଙ୍ମୟ, ସ୍ଥାପତ୍ୟ, ଭାସ୍କର୍ଯ୍ୟ, ଚିତ୍ରାଦି ନୃତ୍ୟକଳା ଚିତ୍ରକଳା, ନୃତ୍ୟ, ସଂସ୍କୃତିର ପ୍ରତି ଅଙ୍ଗରେ ଶ୍ରୀଜଗନ୍ନାଥ ହିଁ ଅନୁସ୍ୟୁତ ।

ଓଡ଼ିଶା ରାଜ୍ୟ ଅନନ୍ୟ । ''ଉତ୍କଳସ୍ୟ ସମୋଦେଶ ଦେଶୋନାସ୍ତି ମହୀତଳେ'' (କପିଳ ସଂହିତା) । ତଦ୍ରୂପ ଆମ ସଂସ୍କୃତି, ଐତିହ୍ୟ । ଆମ ରାଜା ମହାରାଜାମାନେ ଭଲ ପରିବେଶଟିଏ ଦେଖିଲେ ସେଠାରେ ନିଜ ପାଇଁ ରାଜପ୍ରାସାଦ ନଗଢ଼ି, ସେଠାରେ ଦିଅଁ ଦେବତାଙ୍କ ପାଇଁ ନଭଶ୍ଚୁମ୍ବୀ ମନ୍ଦିର ଗଢୁଥିଲେ । ଜଗନ୍ନାଥଙ୍କ ପାଇଁ ନିର୍ମିତ ଶ୍ରୀବତ୍ସ ଖଣ୍ଡଶାଳ ମନ୍ଦିର, କି ସୂର୍ଯ୍ୟଦେବତାଙ୍କ ପାଇଁ ବିଶ୍ୱର ବିସ୍ମୟ ପଦ୍ମକେଶର କୋଣାର୍କ ତା'ର ମୂକସାକ୍ଷୀ । କେବଳ ପୁରୀ କୋଣାର୍କ ନୁହେଁ, ମନ୍ଦିରମାଳିନୀ ଭୁବନେଶ୍ୱରରେ ଏକଦା ଚାଲିଥିଲା ସ୍ଥାପତ୍ୟକଳାର ମହୋତ୍ସବ । ରାଜା ମହାରାଜାମାନେ ଦେବତାଙ୍କ ପାଦତଳେ ନିଉଛାଳି ହୋଇ ଅଜାଡ଼ି ଦେଉଥିଲେ ସର୍ବସ୍ୱ, ନିଜକୁ ନିଃସ୍ୱ କରି । ସୂର୍ଯ୍ୟବଂଶୀ ଗଜପତି କପିଳେନ୍ଦ୍ର ଦେବ ସର୍ବ ସମକ୍ଷରେ ଯେଉଁ ଉଦ୍‌ଘୋଷଣା କରିଥିଲେ ତାହା ଶ୍ରୀମନ୍ଦିର ଜୟବିଜୟ ଦ୍ୱାରବନ୍ଧରେ ଶିଳାଲିପିରେ ଉତ୍‌କୀର୍ଣ୍ଣ ହୋଇ ଏବେ ମଧ୍ୟ ରହିଛି । ଟିକିଏ ଆଖି ପକାନ୍ତୁ ସେଥିରେ - ''ଶ୍ରୀଜଗନାଥ ମୋହର ବାହିଜ ଅଭ୍ୟନ୍ତର ସମସ୍ତ ତ ତୁ ଜାଣୁ । ମୋହର ଯେତେ ରତନ ପଦାର୍ଥ ଅଛି ସେ ତୋହର । ଏହା ଉଆବର ଆନ ଧନ ଯେ ଅଛି ମୁଇ ବ୍ରାହ୍ମଣ ହାଥରେ ତାହାଜେତେ ଦେଇପାରଇ ତାହା ଦେବି । ଏ ଭୂମିଖଣ୍ଡତୁଂ ଜାହାକୁ ଅନୁଗ୍ରହ କରୁ । ମୋହର ନେ ତା ?''(ଶିଳାଲେଖ ୧୪୬୧ ମସିହା) - ଇଏ ହେଉଛି ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳ କଳବର୍ଗେଶ୍ୱର ବିରାଧି ବୀରବର କପିଳେନ୍ଦ୍ର ମହାରାଜାଙ୍କ ବଦାନ୍ୟତା ଓ ପ୍ରପନ୍ନ ପ୍ରାଣଣାର ପ୍ରକୃଷ୍ଟ ପ୍ରଜ୍ଞାପନ । ରାଜାର ସର୍ବସ୍ୱ ରାଷ୍ଟ୍ରଦେବତାଙ୍କର । ରାଜା କେବଳ ଜଗୁଆଳ । ମାର୍ଫତଦାର । ଆଉ ଗୋଟିଏ ବିଶ୍ୱବିଖ୍ୟାତ ନିଉଛାଳି ଶୁଣନ୍ତୁ ଜଣେ ନିଃସ୍ୱ, ଅନ୍ଧ, କନ୍ଧ କବିଙ୍କର ଯାହା ଆମ ସଂସ୍କୃତିର ବାର୍ତ୍ତାବହ ସାଜିଛି, ଏବଂ ଯାହାକୁ ଜାତିସଂଘ ପରି ଆନ୍ତର୍ଜାତିକ ଅନୁଷ୍ଠାନ ପ୍ରଜ୍ଞାପିତ କରୁଛି ବିଶ୍ୱବାସୀଙ୍କି, ଇଂରାଜୀରେ ଅନୁବାଦ କରି । ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁ ଦେଖୁ କେବା ସହୁ, ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ । (ଭୀମଭୋଇ)

ଆମ ସଂସ୍କୃତି ଦାନ ଧର୍ମରେ ବିଶ୍ୱାସ କରେ । ବେଦବାକ୍ୟ - ''ଦକ୍ଷିଣାବନ୍ତୋ ଅମୃତଂ ଭଜନ୍ତେ'' (ଋଗ୍‌ବେଦ ୧, ୧୨୫.୬) ଦାନୀ ଅମର । ଏହି ବୈଦିକ ପରମ୍ପରାର ଅନୁଗାମୀ, ଆମ ସଂସ୍କୃତି । ପୁନଶ୍ଚ,''ତେନତ୍ୟକ୍ତେନ ଭୁଞ୍ଜିଥା'' (ଯଜୁର୍ବେଦ ୪୦/୧) ତ୍ୟାଗ କରି, ଅବଶିଷ୍ଟ ଭୋଗ କର - ଏହା ଆମର ଆଦର୍ଶ ।

ଶ୍ରୀମନ୍ଦିର ଭିତରେ ରତ୍ନସିଂହାସନରେ ସାତ ଅର୍ଚ୍ଚାବିଗ୍ରହ ସଂପୂଜିତ । ଏଠାରେ ବିଗ୍ରହ ଗୁଡ଼ିକ ଗୋଟିଏ ଅଲୌକିକ ଯୌଥ ପରିବାରର ଭ୍ରମ ସୃଷ୍ଟି କରନ୍ତି । ଲୌକିକ ସମାଜରେ ଅନେକତ୍ର ଯୌଥ ପରିବାର ବିଭଙ୍ଗ । କେତେକ ନାମକୁ ମାତ୍ର ତିଷ୍ଠି ରହିଲେ କ'ଣ ହେଲା, ମାଧୁର୍ଯ୍ୟ ହରେଇଛି । ବିଶ୍ୱବାସୀଙ୍କୁ ନିଜ କୁଟୁମ୍ବ ମନେ କରୁଥିବା ଜାତି ଆଦରି ପାରୁ ନାହିଁ ନିଜ ସହୋଦର ଭାଇ ଭଉଣୀ ଓ ପରିବାରକୁ । ମାତ୍ର ଶ୍ରୀମନ୍ଦିରରେ ପ୍ରଦର୍ଶିତ ହେଉଛି ଯୌଥ ପରିବାର ସଂସ୍କୃତି, ସାଂକେତିକ ଭାବରେ । ଧୂପବେଳେ ଘଣ୍ଟ ବାଡ଼େଇ ସବୁ ଦିଅଁ ଦେବତା, ଦୃଶ୍ୟ ଅଦୃଶ୍ୟ ସକଳ ଜଗତକୁ ନିମନ୍ତ୍ରଣ କରାଯାଏ- ''ଆସ, ବ୍ରହ୍ମାଣ୍ଡ ନାୟକଙ୍କ କୈବଲ୍ୟ ପ୍ରସାଦ ପାଇ ସମସ୍ତେ ତୃପ୍ତ ହୁଅ । ଖାଅ, ପରସ୍ପରକୁ ଖୁଆ ଖୋଇ ହୁଅ ।

ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ସଂସ୍କୃତି ବିଶ୍ୱର ଅନ୍ୟତମ ବିସ୍ମୟ । ଦିଅଁମାନେ ରତ୍ନସିଂହାସନରୁ ଓହ୍ଲେଇ ଆସନ୍ତି ବଡ଼ ଦାଣ୍ଡକୁ ଅଗଣିତ ଦର୍ଶନାଭିଳାଷୀଙ୍କୁ ଦର୍ଶନ ଦେବାକୁ । ଭକ୍ତ କହନ୍ତି ପ୍ରଭୁ ଆମେ ଆପଣଙ୍କର, ପ୍ରଭୁମାନେ କହନ୍ତି, ''ଆମେ ତୁମ୍ଭ ମାନଙ୍କର ।'' ରଥ, ପଥ ସମସ୍ତେ ଦେବତା ପାଲଟି ଯାଆନ୍ତି । ଏହା ଦେଖିସବୁ ଧର୍ମାଚାର୍ଯ୍ୟ କହନ୍ତି, ''ଜଗନ୍ନାଥ ଯଥାର୍ଥ ଜଗତର ନାଥ'' । ବୈଷ୍ଣବ କହନ୍ତି ସେ ବିଷ୍ଣୁ, ଶୈବ କହନ୍ତି ସେ ଶିବ, ଶାକ୍ତ ତାନ୍ତ୍ରିକ କୈବଲ୍ୟୋପନିଷଦ କହେ- ''ସ ବ୍ରହ୍ମା ସ ବିଷ୍ଣୁ ସ ରୁଦ୍ରଃ'' ଏବଂ ବୈଦିକ ସୂକ୍ତି - ଏକଂ ସଦ୍ ବିପ୍ରାଃ ବହୁଧା ବଦନ୍ତି'' - ସେ ଅଦ୍ଭୁତ ବିଗ୍ରହ 'ନ ସ୍ତ୍ରୀ ନ ପୁମାନ ନ ଷଣ୍ଢଃ' ।

ରଥରେ ଗଜପତି ମହାରାଜାଙ୍କ ଛେରା ପହଁରା ନୀତି ଆଚାଣ୍ଡାଳ ବ୍ରାହ୍ମଣଠାରୁ ଗଜପତିଙ୍କ ଯାଏ ସମସ୍ତଙ୍କର ସବୁ କର୍ମ ଦେବ ସେବା ଜ୍ଞାନରେ କରଣୀୟ । କର୍ମରେ ସାନବଡ଼ କିଛି ବାଛବିଚାର ନାହିଁ । ଈଶ୍ୱରଙ୍କ ସମକ୍ଷରେ ରାଜା ପ୍ରଜା ବ୍ରାହ୍ମଣ ଚଣ୍ଡାଳ, ସମସ୍ତେ ସମାନ । ବୌଦ୍ଧ, ଦ୍ୱୈତ, ଅଦ୍ୱୈତ ସଭିଏଁ ତାଙ୍କୁ 'ଆମର ଆମର' କହ ବିହ୍ୱଳ ହୁଅନ୍ତି । ଯେଉଁ ଦିନୁ ବର୍ଣ୍ଣ ବର୍ଣ୍ଣ ଭିତରେ ଉଚ୍ଚ ନୀଚ ଭେଦଭାବ ପୂରେଇ ଦିଆଗଲା କେତେକ ଅବିଦ୍ୟ ଗୋଷ୍ଠୀଙ୍କ ଦ୍ୱାରା ସେହି ଦିନୁ ଆମ ସଂସ୍କୃତି ଅନ୍ତଃସାର ଶୂନ୍ୟ । ଗଜଭୁକ୍ତ କପିତ୍‌ଥବତ୍, ବାହାର ସୁନ୍ଦର ଭିତର ଫମ୍ପା । ଗୁଡ଼ିଏ କର୍ମକୁଣ୍ଡ, ଧର୍ମ, କର୍ମ, ଭକ୍ତି ଭୁଲି କେବଳ ଉଦରଂଭରି ମଣିଷ ପାଲଟି ଯାଇ ପେଟ ଓ ପ୍ରଜନନକୁ ଜୀବନର ପରମ ଲକ୍ଷ୍ୟ ବୋଲି ସ୍ଥିର କଲେଣି । "ମାଗଣା ଚାଉଳ

ଟଙ୍କା, ଧର୍ମ କର୍ମ ଆଡୁ ମୁହଁ ବଙ୍କା ।'' ଏମାନେ ଭୁଲିଗଲେଣି ଯୁଗପୁରୁଷ ଶ୍ରୀକୃଷ୍ଣଙ୍କୁ । ସାରଥି ସାଜି ରଥ ଚଳେଇଲେ, ରଥ ଘୋଡ଼ାଙ୍କୁ ମୋଡ଼ା ଘଷା କଲେ, ଆପଣା ପାଟପୀତାମ୍ବର ପଣତରେ ଦାନା ଭରି ଘୋଡ଼ାଙ୍କୁ ଖୁଆଇଲେ, ଋଷି ମୁନିଙ୍କ ଗୋଡ଼ ଧୋଇଲେ, ତାଙ୍କ ଅଇଁଠା ପତ୍ର ଉଠେଇଲେ, ଯଜ୍ଞଶାଳା ଓଳେଇଲେ, ଆଉ ଏ ଯୁଗରେ ଜଗନ୍ନାଥଙ୍କ ପ୍ରଥମ ସେବକ, ଲକ୍ଷେ ରାଜାଙ୍କ ମଉଡ଼ମଣି, ଚଳନ୍ତି ବିଷ୍ଣୁ ଗଜପତି ଛାଞ୍ଚୁଣି ଧରି ପ୍ରତୀକାତ୍ମକ ଅନ୍ତ୍ୟଜ କର୍ମ କଲେ । ଏ କର୍ମକୁଣ୍ଠ ମଣିଷଙ୍କୁ ଆଉ କେଉଁ ଉଦାହରଣ କର୍ମ ପ୍ରବଣ କରନ୍ତା ? ସଂସାର ସର୍ଜନାର ଅଲୌକିକ କୁମ୍ଭାରଙ୍କୁ ସଂସାର-ରଥର ଅଲୌକିକ ରଥକାରଙ୍କୁ ଯଜୁର୍ବେଦ ରୁଦ୍ର ସୂକ୍ତରେ ପ୍ରଣାମ କରିଛନ୍ତି – ''ରଥକାରେଭ୍ୟୋ ନମଃ, କୁଲାଳେ ଭ୍ୟୋ ନମଃ'' । ପ୍ରତୀକାତ୍ମକ ଭାବେ କହୁଛନ୍ତି ହେ ରଥନିର୍ମାତା (ବଢ଼େଇ) ତୁମକୁ ପ୍ରଣାମ, ହେ କୁଲାଳ (କୁମ୍ଭାର) ତୁମକୁ ନମନ । ଏହିପରି କୁମ୍ଭକାର, ରଥକାର, କର୍ମକାର (କମାର) ବୁଣାକାର, ଚର୍ମକାର, କୃଷିକାରୀ ପ୍ରଭୃତି ସମସ୍ତେ ପ୍ରଣମ୍ୟ ବୋଲି ବେଦ ପ୍ରତୀକାତ୍ମକ ଭାବେ ଉଦ୍‌ଘୋଷଣା କରିଛି । ମୁଣ୍ଡ ହାତ ପାଖରେ ମୁଣ୍ଡ ନୁଆଁଉଛି, ଗୋଡ଼ ପାଖରେ ମୁଣ୍ଡିଆ ମାରୁଛି, ହାତ, ଗୋଡ଼ ସମାଜ ପୁରୁଷଙ୍କ ଦେହ ମୁଣ୍ଡର ସେବା କରୁଛନ୍ତି – ସେବାକାରୀ ହାତ, ଗୋଡ଼ ଓ ନିର୍ଦ୍ଦେଶକ ମୁଣ୍ଡ, ଅର୍ଥାତ୍ ସବୁ ଜାତି ବର୍ଣ୍ଣର ମଣିଷ ସମସ୍ତେ ସମାସନରେ ବସିବା ଥିଲା ଆମ ସଂସ୍କୃତିର ବୈଶିଷ୍ଟ୍ୟ । ଏମାନଙ୍କ ମଧ୍ୟରେ ସଂହତି ଥିଲା । ଛତିଶ ପାଟକ ସେଥିପାଇଁ ଛତିଶା ନିଯୋଗ ରୂପେ ଜଗନ୍ନାଥଙ୍କ ସେବକ । ତାଙ୍କ ଭିତରେ ଭେଦଭାବ ନାହିଁ । ବିଭେଦ ହେଲେ ବ୍ୟାଘାତ ଘଟିବ ସେବାପୂଜାରେ । ସମାଜ ପୁରୁଷଙ୍କ ସେବା ପୂଜା ବିପର୍ଯ୍ୟସ୍ତ ହେଲେ ଧ୍ୱଂସ ଅବଶ୍ୟମ୍ଭାବୀ ।

ଶରୀରର ଅଙ୍ଗ-ପ୍ରତ୍ୟଙ୍ଗ ଭଳି ସମାଜର ସବୁ ଜାତିର ଲୋକେ ନିଃସ୍ୱାର୍ଥପର ଭାବରେ ସମସ୍ତେ କର୍ମ ବ୍ୟସ୍ତ ରହୁଥିଲେ । ସେଥିପାଇଁ ବେଦ କାଳରୁ କର୍ମ ସଂସ୍କୃତିର ଜୟଘୋଷ । ଭାଗବତ କହିଲେ – ''କର୍ମ ହିଁ ସୁଖ ଦୁଃଖ ଦାତା, ବିଶ୍ୱ ସଂସାରେ ବଳବନ୍ତା ।'' ଆଉ ସେଥିପାଇଁ ରଥଯାତ୍ରା ବେଳେ କର୍ମର ପ୍ରତିଭୂ ବଳଭଦ୍ର ଦୁଇହାତରେ କର୍ମର ପ୍ରତୀକ ହଳ ମୂଷଳଧରି (ଦୌର୍ଭ୍ୟାମ୍ ଶୋଭିତଂ ଲାଙ୍ଗଳଂ ସମୂଷଳଂ) ସବା ଆଗରେ ଚାଲନ୍ତି । ସତେ ଯେମିତି ଗୀତାର କର୍ମଯୋଗ ଅଭିନୀତ ହେଉଛି ସେଠାରେ ଏବଂ କୁହାଯାଉଛି – ''ହେ ମଣିଷ, ତୁମେ କେବଳ କର୍ମ କରିଚାଲ, ସେଥିରେ ତୁମର ଅଧିକାର । ସେଥିରେ ମୋକ୍ଷ । କର୍ମଫଳ ଆଶା କରି କର୍ମ କରନା । କର୍ମଫଳ ବନ୍ଧନର କାରଣ । ସେଥିରେ ତୁମର ଅଧିକାର ନାହିଁ । ଫଳ ନିର୍ଦ୍ଧାରଣ କଳାବାଲା ସବା ପଛରେ ଜ୍ଞାନରୂପୀ ଶ୍ରୀଜଗନ୍ନାଥ ଆସୁଛନ୍ତି ନନ୍ଦିଘୋଷରେ

ଆମ ସଂସ୍କୃତି ଧର୍ମ, ଅର୍ଥ, କାମ ଓ ମୋକ୍ଷ – ଏହି ଚଉବର୍ଗ ବା ଚାରି ପୁରୁଷାର୍ଥ ପ୍ରାପ୍ତି ପାଇଁ ଧର୍ମକୁ ପ୍ରାଧାନ୍ୟ ଦେଇ ଅନ୍ୟ ଦୁଇ ପୁରୁଷାର୍ଥ ଅର୍ଥାତ୍ ଅର୍ଥ ଓ କାମକୁ ଧର୍ମମୟ ଅର୍ଥ (ନୀତି) ଧର୍ମମୟ କାମ (କାମନା) ମାଧ୍ୟମରେ ଉପାସନା କରେ । ତାଙ୍କୁ ଉପେକ୍ଷା କରେ ନାହିଁ । ଭାଗବତରେ ଘୋଷଣା କରେ – 'ଧନ ଅର୍ଜନେ ଧର୍ମ କରି, ଧର୍ମେ ପ୍ରାପତ ନରହରି ।' ମାତ୍ର ଯୁଗଧର୍ମ ସମର୍ଥ ହେଉ ନାହିଁ ଅଧର୍ମକୁ ନିୟନ୍ତ୍ରଣ କରିବାକୁ । ଅଧର୍ମ ବିତ୍ତକୁ ଆୟତ୍ତ କରିବାକୁ ସମସ୍ତେ ଉଦ୍ୟତ । ସମସ୍ତେ ଉତ୍ତାନପାଦ । ଅଧର୍ମ ଅର୍ଥ ନୀତି ଚାଲିଛି, ଯେଉଁଥିପାଇଁ ଏ ଅସମାନତା ପରିଲକ୍ଷିତ ହେଉଛି । ଆମ ସଂସ୍କୃତି କାମ ବା କାମନାର ଉପାସନା କରେ । ଆମର ନିଷ୍କାମ ସଂସ୍କୃତି ନୁହେଁ । ମାତ୍ର କାମନା ଧର୍ମୋଚିତ, ନ୍ୟାୟୋଚିତ ହେବା ଉଚିତ । ପରୀକ୍ଷାର୍ଥୀ କୃତକାର୍ଯ୍ୟ ହେବାକୁ, ସୈନିକ ଶତ୍ରୁ ଜୟ କରିବାକୁ, ଖେଳାଳି ଜିତିବାକୁ କାମନା କରିବା ଅଧର୍ମ, ଅନ୍ୟାୟ ନୁହେଁ । ଧର୍ମର ବିରୁଦ୍ଧାଚରଣ କରୁ ନଥିବା 'କାମ' ବା କାମନା 'ମୁଁ ନିଜେ' (ସ୍ୱୟଂ ଶ୍ରୀକୃଷ୍ଣ) ବୋଲି ଶ୍ରୀକୃଷ୍ଣ ଭଗବାନ ଗୀତାରେ କହିଲେ । ''ଧର୍ମାବିରୁଦ୍ଧୋଭୂତେଷୁ କାମୋଽସ୍ମି ଭାରତର୍ଷଭ ।'' ଆମ ବଡ଼ଠାକୁର ବଳଭଦ୍ରଙ୍କ ଅନେକ ନାମ ଭିତରୁ ତାଙ୍କର ଗୋଟିଏ ନାମ ହେଉଛି 'କାମପାଳ' ଅର୍ଥାତ୍ କାମନାପୂର୍ଣ୍ଣକାରୀ । ଏଥିରୁ ଜଣାଯାଏ କାମ ବର୍ଜନୀୟ ନୁହେଁ, ଉପାସନୀୟ ।

ଆମ ସଂସ୍କୃତି ସର୍ବଗ୍ରହଣକ୍ଷମ । ବହିରାଗତ ସଂସ୍କୃତିକି ମଧ୍ୟ ଚାରିଦ୍ୱାର ଖୋଲି ସ୍ୱାଗତ କରେ ମାତ୍ର ତାଙ୍କୁ ସମ୍ପୂର୍ଣ୍ଣ ବର୍ଜନ ନ କରି କିମ୍ବା ସମ୍ପୂର୍ଣ୍ଣ ଗ୍ରହଣ ନକରି କେବଳ ହିତକରକୁ ଗ୍ରହଣ କରେ, ଅହିତକର ଅପସଂସ୍କୃତିକୁ ବର୍ଜନ କରେ । ଆହ୍ୱାନ ଦିଏ – ''ଆ ନୋ ଭଦ୍ରାଃ କ୍ରତବୋ ଯନ୍ତୁ ବିଶ୍ୱତଃ'' ଅର୍ଥାତ୍ କଲ୍ୟାଣକାରୀ ଦୁର୍ଲଭ ଫଳଦାୟୀ ସଂକଳ୍ପ ବିଶ୍ୱର ସବୁ ଦିଗରୁ ଆମେ ପ୍ରାପ୍ତ ହେଉ (ଯଜୁର୍ବେଦ ୨୫/୧୪) ପୁନଶ୍ଚ, ସାମବେଦ କହନ୍ତି- ''ହେ ଦେବଗଣ, ଆମେ କାନଦ୍ୱାରା କେବଳ ମଙ୍ଗଳମୟୀ ବାଣୀ ଶୁଣୁଁ, ନେତ୍ର ଦ୍ୱାରା କେବଳ କଲ୍ୟାଣକାରକ ଦୃଶ୍ୟ ଦେଖୁଁ – ''ଭଦ୍ରଂ କର୍ଣ୍ଣେଭିଃ ଶୃଣୁୟାମ ଦେବାଃ, ଭଦ୍ରଂ ପଶ୍ୟେମାକ୍ଷଭିଃ ଯଜତ୍ରାଃ (୧୮୭୪) ।

ସଂସ୍କୃତି, କାଠ, କି ପଥର ପରି ନିଷ୍ପ୍ରାଣ ନୁହେଁ ଯେ ତାହା ବଦଳିବ ନାହିଁ । ସଂସ୍କୃତି ଏକ ଚିରନ୍ତନ ପ୍ରବାହ । ଏହା ସଂପ୍ରସାରଣଶୀଳ ଓ ପରିବର୍ତ୍ତନଶୀଳ । ସଂପ୍ରସାରଣଶୀଳତା ଜୀବନର ଲକ୍ଷଣ । ସଂପ୍ରସାରିତ, ପରିବର୍ତ୍ତିତ, ବିବର୍ତ୍ତିତ ନ ହେଲେ ତାହା ପ୍ରଦୂଷିତ ହୁଏ, ପରିଶେଷରେ ମୃତ ଘୋଷିତ ହୁଏ । ସଂସ୍କୃତି ବଦଳେ ମାତ୍ର କ୍ଷିପ୍ର ଗତିରେ ନୁହେଁ, ମନ୍ଥର ଗତିରେ ବଦଳେ । ଦୀର୍ଘକାଳର ସଂସ୍କୃତିରେ କାଳିମା ହେବା ସ୍ୱାଭାବିକ । ସଂସ୍କୃତିର ପରିବର୍ତ୍ତନ ହେଲେ ବି ସେଥିରେ ଅପରିବର୍ତ୍ତନୀୟ କିଛି ରହିଥାଏ, ତା'ର ଅସ୍ତିତ୍ୱର ପ୍ରମାଣ ଦେବାକୁ । ଜଗନ୍ନାଥ ସଂସ୍କୃତିରେ ଆର୍ଯ୍ୟ, ଦ୍ରାବିଡ଼, ଶାବର, ତାନ୍ତ୍ରିକ ସଂସ୍କୃତିର ଅନେକ ବିଭବ ଏଯାଏ ସାଙ୍କେତିକ ଭାବେ ତିଷ୍ଠି ରହିଛି । ସ୍ୱୟଂ ଜଗନ୍ନାଥ ତ ବିଶ୍ୱାବସୁ ଶବର ଆରାଧିତ ନୀଳମାଧବ ।





କାଳକ୍ରମେ ସେ ବ୍ରାହ୍ମଣ୍ୟାୟିତ ହୋଇ ଜଗନ୍ନାଥ ବା ପୁରୁଷୋତ୍ତମ ହୋଇଛନ୍ତି । ତାଙ୍କର ଅଣସରନୀତି ପୂର୍ଣ୍ଣତଃ ଶାବର ସଂସ୍କୃତି, ଦେବୀ ସୁଭଦ୍ରା ତ ଶାବର ସଂସ୍କୃତିର ସ୍ତମ୍ଭେଶ୍ୱରୀ । ଆର୍ଯ୍ୟ ଆର୍ଯ୍ୟେତର ସଂସ୍କୃତିର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଘଟିଛି ଶ୍ରୀକ୍ଷେତ୍ରରେ । କେବଳ ସହାବସ୍ଥାନ କି ସହଯୋଗ ନୁହେଁ ସମନ୍ୱୟର ପ୍ରୟୋଗଶାଳା ପାଲଟିଛି ଶ୍ରୀକ୍ଷେତ୍ର, ଏ ପ୍ରୟୋଗଶାଳାରେ ଏକଦା ସମଗ୍ର ଭାରତ ବର୍ଷରେ ସାଂସ୍କୃତିକ ଜୁଆର ସୃଷ୍ଟି କରୁଥିବା ଅଦ୍ୱୈତ ଭାବନା, ଅଦ୍ୱେଷ, ଅହିଂସା, ଅହଂକାର ଶୂନ୍ୟତା ପ୍ରଭୃତିରେ ଏବେ ଭଟ୍ଟା ପଡ଼ିବ । ଏହି ପ୍ରୟୋଗଶାଳା ଏବେ ଆଖଡ଼ାଶାଳା । ଏହା ଏକଦା କ୍ଷେତ୍ର, ତୀର୍ଥ ଓ ଧାମର ମର୍ଯ୍ୟାଦା ପାଉଥିଲା, ମାତ୍ର ତାହା ଏବେ ଉଜୁଡ଼ିବାକୁ ଆରମ୍ଭ କଲାଣି । କର୍ପୂର ଉଡ଼ା କନାଖଣ୍ଡେ ପରି ମହକ ହରେଇଲାଣି । ମାନଚିତ୍ରରେ ଏକ ଅବସର ବିନୋଦନ ତଥା ପର୍ଯ୍ୟଟନ ସ୍ଥଳୀ ହେବାକୁ ବସିଲାଣି । ଠାକୁର ଦେଖା ହେବ କଦଳୀ ବିକା ବି ହେବ ନ୍ୟାୟରେ କେତେକ ମନୁଷ୍ୟକୃତ କାର୍ଯ୍ୟ (ଅକାର୍ଯ୍ୟ, କୁକାର୍ଯ୍ୟ ?) ଯୋଗୁ ଦିଅଁ ଦେଖା ଗୌଣ ପର୍ଯ୍ୟଟନ ମୁଖ୍ୟ ଉଦ୍ଦେଶ୍ୟ ହେଲାଣି ।

କାଳାନ୍ତରରେ କର୍ମ, ଜ୍ଞାନ, ଭକ୍ତି ବିକୃତ ହୋଇ ତାହାର ଦୁରୁପଯୋଗ ହେଉଛି । କର୍ମ କୁକର୍ମରେ ପରିଣତ । ଅଜ୍ଞାନ ଜ୍ଞାନ ରୂପଧାରଣ କରୁଛି । ଭକ୍ତି ଭଜନୀୟତା ହରେଇଛି । ଭୌତିକତା ଆମର ବର୍ଜ୍ୟ ନୁହଁ । ଆଧାତ୍ମିକତା ଓ ଭୌତିକତା ଯଦି ସହାବସ୍ଥାନ କରନ୍ତେ ତାହାହେଲେ ତ ମଣିକାଞ୍ଚନ ସଂଯୋଗ ହୁଅନ୍ତା । ସେଥିରେ କାହାର ଆପତ୍ତି ନଥାନ୍ତା । ମାତ୍ର ତାହା ହେଉ ନାହିଁ । ଯଦି ନ ହୁଏ, ତେବେ ଆମ ସନାତନୀ ସଂସ୍କୃତି ସୈତାନୀ ସଂସ୍କୃତିରେ ପରିଣତ ହେବା ବିଚିତ୍ର ନୁହେଁ । ସନାତନୀ ସଂସ୍କୃତି ଆଜି ପ୍ରବଳ ପ୍ରଭାବିତ, ଏହା ସ୍ୱୀକୃତ । ଆଚାର ବିଚାର ଧାରା ବହୁଳ କଳୁଷିତ । ପ୍ରାଚୀନ, ଉଚ୍ଚାଙ୍ଗ ସଂସ୍କୃତି ଆଡୁ ମୁହଁ ଫେରେଇ ନୂତନ ଅମୂଳ ସଂସ୍କୃତି ଆଡ଼କୁ ପ୍ରଧାବିତ ହେଉଥିବା ନବୀନ ପିଢ଼ିକୁ କେହି ଉଚିତ ମାର୍ଗଦର୍ଶନ କରାଉ ନାହାନ୍ତି । ମାତ୍ର ବିରାଡ଼ି ବେକରେ ଘଣ୍ଟି ବାନ୍ଧିବ କିଏ ? ନୂଆ ସଂସ୍କାର ନୂଆ ବିଚାର, କିଏ ସୁନା କିଏ ଭେଣ୍ଡି (ତେଲୁଗୁ 'ଭେଣ୍ଡି' ଅର୍ଥାତ୍ ନିକୃଷ୍ଟ ଧାତୁ) ନବୀନମାନଙ୍କୁ ସକାରଣ, ସପ୍ରମାଣ ଚିହ୍ନେଇ ଦେବା କାମ ପ୍ରବୀଣମାନେ କରନ୍ତୁ ।

ଆଉ ଏକ ବିଡ଼ମ୍ବନାମୟ ବିଷୟ ହେଉଛି ଆମ ସଂଗୀତ, ନୃତ୍ୟ ଓ ଲୋକକଳା । ଓଡ଼ିଶୀ ସଂଗୀତ କଳ୍ପଦ୍ରୁମ ଶାଖାରେ ବସି ପଲ୍ଲୀରୁ ଦିଲ୍ଲୀ ପର୍ଯ୍ୟନ୍ତ ଅଗଣିତ ସଂଗୀତପ୍ରେମୀଙ୍କୁ କଳକଣ୍ଠ କୋକିଳମାନେ ଲଳିତ ମୂର୍ଚ୍ଛନାରେ ମନ୍ତ୍ରମୁଗ୍ଧ କରନ୍ତି । ଏହି ଶାସ୍ତ୍ରୀୟ ନୃତ୍ୟ ସଙ୍ଗୀତ ପ୍ରତି ନାସିକା କୁଞ୍ଚନ କରୁଥିବା ଆମ ନବୀନ ରସ ବିନୋଦିଆମାନେ ଯୁଗ ରୁଚି ଅନୁସାରେ ମାତିଛନ୍ତି । ସେମାନଙ୍କୁ ବିକଳ୍ପ ଦେଇଦେଲେ ମଙ୍ଗଳ ହୁଅନ୍ତା । ସମ୍ବଲପୁରୀ ଡାଲଖାଇ, କଳାହାଣ୍ଡିର ଘୁମୁରାନାଚ, ଖୋରଧାର ପାଇକନୃତ୍ୟ, ପୁରୀ ଜିଲ୍ଲାର ଗୋଟିପୁଅ ନାଚ, ଝଙ୍କଡ଼ ସାରଳା ଅଞ୍ଚଳର ଘଣ୍ଟ ପାଟୁଆ ନାଚ ପ୍ରଭୃତି ଆଉ ସେମାନଙ୍କୁ ଘେନଉ ନାହିଁ । ଆମେ ପୁଣି ଦାବିକରୁ ଯେ, ଆଧାତ୍ମିକତା ହେଉଛି ଆମ ସଂସ୍କୃତିର ଆଧାରଶିଳା । ଏହା କେବଳ ବୌଦ୍ଧିକ ବିଚାର ନୁହେଁ, ଜୀବନ ନିଷ୍ପାର କଥା ଯାହା ଆମ ଜୀବନଚର୍ଯ୍ୟାରେ ପ୍ରତିଫଳିତ ହୁଏ । ଆଧାତ୍ମିକ ସହିତ ଆତ୍ମାର ସଦାଚାର ଜଡ଼ିତ । ଏହା କୌଣସି ନିର୍ଦ୍ଦିଷ୍ଟ ଧର୍ମର ବିଷୟ ନୁହେଁ । ଦେବ ଭୂମି ଓଡ଼ିଶାରେ ଆଧାତ୍ମିକ ଜୀବନର ଠିକଣା ମିଳୁନାହିଁ, ହଜିଗଲାଣି । 'ଇନ୍‌ଟାକ୍' ପକ୍ଷରୁ ଗତ ଦଶବର୍ଷ ମଧ୍ୟରେ ସର୍ଭେ କରାଯାଇଥିବା ମନ୍ଦିରମାନଙ୍କ ମଧ୍ୟରେ ୩୦୦ ବର୍ଷରୁ ଊର୍ଦ୍ଧ୍ୱ ସାତ ହଜାର ମନ୍ଦିର ଓଡ଼ିଶାରେ ଅଛି । ଆହୁରି ଛଅଟି ଜିଲ୍ଲା ବାକି ଅଛି ସର୍ଭେ ହେବାକୁ । ତେଷଠିଟି ମନ୍ଦିର ପାଣିରେ ବୁଡ଼ିକି ଅଛି । ଓଡ଼ିଶାରେ ଯେତେ ମନ୍ଦିର ଅଛି, ଭାରତର ୧୦ଟି ରାଜ୍ୟର ମୋଟ ମନ୍ଦିର ସଂଖ୍ୟାଠାରୁ ଅଧିକ । ସେହି ଦେବ ଭୂଇଁରେ ଆଧାତ୍ମିକତା ଆଜି ଅବକ୍ଷୟ ପଥରେ । ଏହାକୁ ରୋକି ପାରିଲେ ସାଂସ୍କୃତିକ ଅବକ୍ଷୟ ହ୍ରାସପାଆନ୍ତା । ଶିକ୍ଷାକ୍ଷେତ୍ରରେ ସାଂସ୍କୃତିକ ବିଷୟ ଚର୍ଚ୍ଚା କରାଗଲେ ଭବିଷ୍ୟ ପିଢ଼ି ଅବଗତ ହୋଇ ସୁରକ୍ଷା ଦାୟିତ୍ୱ ନିଅନ୍ତେ । ବର୍ତ୍ତମାନ ଯୁଗ ବିନଷ୍ଟ । ଧର୍ମ ସଂସ୍କୃତି ଅବକ୍ଷୟର ଯୁଗ । ଆମ ଉଚ୍ଚାଙ୍ଗ ସଂସ୍କୃତିର ଉତ୍ତାଳ ତରଙ୍ଗ ଜୁଆର ରୂପଧାରଣ କରି ଏକଦା ପ୍ଲାବିତ କରିଥିଲା ଦକ୍ଷିଣ ପୂର୍ବରେ ଇଣ୍ଡୋନେସିଆର ଜାଭା, ସୁମାତ୍ରା, ବାଲି, ବୋର୍ଣ୍ଣିଓ ଦ୍ୱୀପପୁଞ୍ଜ, ଶ୍ରୀଲଙ୍କା, ଥାଇଲାଣ୍ଡ, ପଶ୍ଚିମରେ ବେଲୁଚି, କାନ୍ଦାହାର (ଗାନ୍ଧାର) ପ୍ରଭୃତି । ପ୍ରାଗ୍ ଐତିହାସିକ ଯୁଗରୁ ଏ ସଂସ୍କୃତିର ମୂକସାକ୍ଷୀ ସ୍ୱରୂପ କଳାହାଣ୍ଡିର ଗୁଡ଼ହାଣ୍ଡି, ଯୋଗୀମଠର ଚିତ୍ରଭାଷା ଅଦ୍ୟାପି ଅପଠିତ ରହିଗଲା, କାଳ ଆକଳନ ହେଲା ନାହିଁ, ପାଠାନ୍ତର ହେଲା ନାହିଁ ।

କାଳ ବଦଳିବା ସହ ତାଳଦେଇ ଜୀବନଶୈଳୀ ବଦଳିଯିବା ସ୍ୱାଭାବିକ । ସଂସ୍କୃତି ବି ବଦଳିବ । କାରଣ ମଣିଷ କାଳାଶ୍ରୟୀ । ଏଣୁ ତାର ଯାବତୀୟ କର୍ମ, ଚିନ୍ତା, ସୃଜନ, ସାମର୍ଥ୍ୟ ପରିବର୍ତ୍ତନଶୀଳ । ବିଶେଷତଃ ଆଜିର ଯୁଗ ବିଶ୍ୱମୁଖୀ । ଯେଉଁଠି ଯାହା ଭଲ, ସୁନ୍ଦର ମୂଲ୍ୟବୋଧ ଜଡ଼ିତ, ନୂଆ ଜ୍ଞାନ ବିଜ୍ଞାନର ସିଦ୍ଧାନରେ ଉଜ୍ଜ୍ୱଳ ତାହା ଗୋଟିଏ ଦେଶ ଜାତିର ସଂପଦ ହୋଇ ପାରୁନାହିଁ । ହେଉଛି ସମଗ୍ର ମଣିଷର । ହେଉଛି ସମଗ୍ର ମଣିଷର । ଏହିହେତୁ ଅନେକ ସମୟରେ ସଂସ୍କୃତି, ସାହିତ୍ୟ, ପ୍ରଦର୍ଶନ ଯୋଗ୍ୟ କଳାଦି ମାନବୀୟ ସର୍ଜନର ଉତ୍କର୍ଷ ଦେଶର ସୀମାରେ ଆବଦ୍ଧ ହୋଇପାରୁନାହିଁ । ବିଶ୍ୱ ଆଜି ଭାବ ଦୃଷ୍ଟିରେ ଏକ । ବିଜ୍ଞାନର ସାମର୍ଥ୍ୟ ପାର୍ଥକ୍ୟ ଭାଙ୍ଗିଛି । ଏହିପରି ଏକ ସମୟରେ ଆମେ ଆମ ଗହଣକୁ ଆକର୍ଷଣ କରିବା ବିଶ୍ୱସଂସ୍କୃତିକୁ, କିନ୍ତୁ ଆମର ମୌଳିକତାକୁ ମ୍ଳାନ ହେବାକୁ ଦେବା ନାହିଁ ।

*ମଧୁକ୍ଷରା, ଏମ୍-୯*

*ଫକୀରମୋହନ ନଗର, ବରମୁଣ୍ଡା, ଭୁବନେଶ୍ୱର*

*ଦୂରଭାଷ : ୯୪୩୭୫୧୧୩୩୩*

○○

# 'ହୀରକ ତ୍ରିଭୁଜ'ର ବିଜନ ବୌଦ୍ଧପଲ୍ଲୀ...

❖ ଶୁଭେନ୍ଦୁ କୁମାର ଭୂୟାଁ

ଦୂର ଅତୀତରେ ଦିନେ ଏଠି ଗୁଞ୍ଜରିତ ହେଉଥିଲା ମଧୁର ସୁରର ମନ୍ତ୍ରଧ୍ୱନି, ବୁଦ୍ଧବାଣୀ ।
ବୌଦ୍ଧଶ୍ରମଣମାନଙ୍କ ସିଦ୍ଧି ଓ ସାଧନାର ଏହି ତପୋଭୂମି...
ଦେଶବିଦେଶର ବହୁ ପ୍ରାଜ୍ଞ ବୌଦ୍ଧ ପଣ୍ଡିତମାନଙ୍କୁ ଆକର୍ଷିତ କରୁଥିଲା ଏଇ ପବିତ୍ର ମାଟିକୁ ।
ପୁରାତନ ଉତ୍କଳର ବୌଦ୍ଧ ଜନପଦଗୁଡ଼ିକରେ ଗଢ଼ିଉଠିଥିବା ବୌଦ୍ଧ ମହାବିହାରଗୁଡ଼ିକର ଅଲୌକିକ ପ୍ରଭାର ବଳୟ ଶହଶହ ମାଇଲ ଦୂରକୁ ବି ଆଲୋକିତ କରୁଥିଲା ।
ବୌଦ୍ଧ ପର୍ଯ୍ୟଟନ ମାନଚିତ୍ରରେ 'ହୀରକ ତ୍ରିଭୁଜ' ବଳୟିତ ଓଡ଼ିଶାର ପ୍ରଖ୍ୟାତ ବୌଦ୍ଧପୀଠ ଲଳିତଗିରି-ଉଦୟଗିରି-ରତ୍ନଗିରି....
ବିଶ୍ୱବନ୍ଦ୍ୟ ବୌଦ୍ଧସ୍ମୃତିପୂତ କାଳଜୟୀ କୀର୍ତ୍ତିକଳା । ଏହି ବିଶାଳ ବୌଦ୍ଧଜନପଦଗୁଡ଼ିକର ପ୍ରଯତ୍ନ ଖନନରୁ ଆବିଷ୍କୃତ ହୋଇଛି ଐତିହ୍ୟପୂର୍ଣ୍ଣ ବୌଦ୍ଧ ମହାବିହାର, ମହାସ୍ତୂପ, ମହାକାଳ ମନ୍ଦିର ଓ ସହସ୍ରସହସ୍ର କମନୀୟ ବୌଦ୍ଧ ସ୍ମାରକୀ ।



ଅଢ଼େଇ ହଜାରରୁ ଅଧିକ ବର୍ଷ ତଳେ ଦିନେ ପ୍ରାଚୀନ ଓଡ଼ିଶାର ସୁବିସ୍ତୀର୍ଣ୍ଣ ଜନବସତିଗୁଡ଼ିକରେ ଗଢ଼ିଉଠିଥିଲା ବୌଦ୍ଧକୀର୍ତ୍ତିରାଜିର ଅମ୍ଳାନ କୀର୍ତ୍ତି ମନ୍ଦିର । ବୌଦ୍ଧଧର୍ମ, ସଂସ୍କୃତି ଓ ଐତିହ୍ୟର କଳାକୀର୍ତ୍ତିରେ ଖୋଦିତ ବୌଦ୍ଧ ମହାବିହାର ଗୁଡ଼ିକରେ ବୌଦ୍ଧଶ୍ରମଣମାନଙ୍କ ସହିତ ସାଧାରଣ ଜନତା ଓ ବୌଦ୍ଧଧର୍ମାଶ୍ରିତ ପ୍ରଜାମାନଙ୍କର ଗଢ଼ିଉଠିଥିଲା ଉତ୍ତମ ସାମାଜିକ ସଂପର୍କ । କୋଳାହଳ ମୁଖରିତ ବିହାର, ବୌଦ୍ଧଗୁମ୍ଫା, ବୌଦ୍ଧପୀଠ ଓ ବୌଦ୍ଧ ବିଶ୍ୱବିଦ୍ୟାଳୟଗୁଡ଼ିକରେ ଧର୍ମ-ସଂସ୍କୃତି-ଜ୍ଞାନ-ସଂଘର ବାଣୀ ଓ ଦର୍ଶନଗୁଡ଼ିକର ବ୍ୟାଖ୍ୟାନ ହେଉଥିଲା । ଭାରତବର୍ଷର ପୂର୍ବଉପକୂଳରେ ଥିବା ଆମ ରାଜ୍ୟର ଏହି ପ୍ରମୁଖ ଓ ଶ୍ରେଷ୍ଠ ବୌଦ୍ଧାୟତନଗୁଡ଼ିକ ଭାରତ ବାହାରେ ଥିବା ପ୍ରମୁଖ ରାଷ୍ଟ୍ରଗୁଡ଼ିକରେ ମଧ୍ୟ ତା'ର ଜ୍ଞାନ ଓ ପ୍ରଜ୍ଞାର ଦୀପଶିଖା ପ୍ରଜ୍ୱଳିତ କରୁଥିଲା । ଦେଶ ବିଦେଶରୁ ବୌଦ୍ଧ ପଣ୍ଡିତମାନଙ୍କର ଆଗମନ ହେଉଥିଲା ଏଠାକୁ । ଓଡ଼ିଶାର ଏହି ବିକଶିତ ବୌଦ୍ଧ ଜ୍ଞାନମନ୍ଦିର ଗୁଡ଼ିକରୁ ବୌଦ୍ଧ ଧର୍ମ-ସଂସ୍କୃତିର ମହନୀୟ ଦର୍ଶନ-ଚିନ୍ତନର ପରିପ୍ରକାଶ ଓ ପରିପ୍ରସାର ହେଉଥିଲା ସାରାବିଶ୍ୱକୁ । ଅବିଭକ୍ତ କଟକ ଜିଲ୍ଲାରେ ଗଢ଼ିଉଠିଥିଲା ତତ୍କାଳୀନ ବିଶ୍ୱପ୍ରସିଦ୍ଧ ପ୍ରମୁଖ ବୌଦ୍ଧ ମହାବିହାର 'ପୁଷ୍ପଗିରି' । ଏହାଥିଲା ଲଳିତଗିରି-ଉଦୟଗିରି-ରତ୍ନଗିରି ତିନି ବୌଦ୍ଧପୀଠ ସମ୍ମିଶ୍ରଣର ଏକ ସଂଯୁକ୍ତ ବୌଦ୍ଧସ୍ଥଳୀ । କିନ୍ତୁ କାଳର କୁଠାରଘାତ ଏବଂ ମନୁଷ୍ୟକୃତ ତଥା ବିଭିନ୍ନ ସାମାଜିକ ସଂଘାତରୁ କ୍ରମେ ଏହି ପ୍ରଖ୍ୟାତ ବୌଦ୍ଧବିହାରଗୁଡ଼ିକ ମାଟିର ସ୍ତୂପତଳେ ପୋତି ହୋଇଗଲା । ଯଦିଓ ପ୍ରତ୍ନତତ୍ତ୍ୱ ଓ ସଂସ୍କୃତି ବିଭାଗ ମାଟିତଳୁ ଉତ୍ଖନନ କରି ଏହି ବିରଳ ଓ ଦୁର୍ମୂଲ୍ୟ ବୌଦ୍ଧକୀର୍ତ୍ତିରାଜି ଗୁଡ଼ିକୁ ଲୋକଲୋଚନକୁ ଆଣିପାରିଛନ୍ତି କିନ୍ତୁ ଉତ୍ଖନନ ପରବର୍ତ୍ତୀ କାଳରେ ଉପଯୁକ୍ତ ସଂରକ୍ଷଣ ଅଭାବରୁ ଦେଶର ଏହି ଜାତୀୟ ସଂରକ୍ଷିତ କୀର୍ତ୍ତିରାଜି ଓ ବିଶ୍ୱବିଖ୍ୟାତ ବୌଦ୍ଧ ପର୍ଯ୍ୟଟନ





କେନ୍ଦ୍ରଗୁଡ଼ିକ ଆଜି ମଧ୍ୟ କେତେକାଂଶରେ ଅବହେଳିତ ଅବସ୍ଥାରେ ରହିଛି । ଅତୀତର କୋଳାହଳ ମୁଖରିତ ତଥା ବୌଦ୍ଧ ସଂସ୍କୃତିର ବିଶ୍ୱବନ୍ଦ୍ୟ ଏହି ପ୍ରମୁଖ କୀର୍ତ୍ତିସ୍ଥଳ ଆଜି ବିଜନ ବୌଦ୍ଧସ୍ଥଳୀରେ ପରିଣତ ହୋଇଛି ।

ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀ ଅର୍ଥାତ୍ ଓଡିଶାରେ ଭୌମକର ବଂଶୀୟ ରାଜାମାନଙ୍କର ରାଜତ୍ୱ ପୂର୍ବରୁ ବୌଦ୍ଧଧର୍ମର ପ୍ରାଧାନ୍ୟ କେତେକ ସୀମାନ୍ତ ଅଂଚଳରେ ହିଁ ରହିଥିଲା । ଖ୍ରୀଷ୍ଟୀୟ ପଂଚମ ଓ ଷଷ୍ଠ ଶତାବ୍ଦୀରେ ବ୍ରାହ୍ମଣ୍ୟ ଧର୍ମାବଲମ୍ବୀଙ୍କ ସହିତ ବୌଦ୍ଧ ଭିକ୍ଷୁମାନଙ୍କର ସୌହାର୍ଦ୍ଦ୍ୟ ପ୍ରତିଷ୍ଠିତ ହୋଇଥିବା ଜଣାଯାଏ । ତାହା ହୋଇନଥିଲେ ଏ ରାଜ୍ୟର ସୀମାନ୍ତ ଅଂଚଳରେ ବୌଦ୍ଧବିହାରଗୁଡ଼ିକ ପ୍ରତିଷ୍ଠା ଲାଭ କରିବା ଆଦୌ ସମ୍ଭବ ହୋଇନଥାନ୍ତା । ଉତ୍କଳରେ ଭୌମକର ବଂଶୀୟ ରାଜାମାନେ ହିଁ ବୌଦ୍ଧଧର୍ମକୁ ପୁନରୁଜ୍ଜୀବିତ କରି ବୌଦ୍ଧ ଚୈତ୍ୟ, ବିହାର ସମେତ ଶିକ୍ଷାନୁଷ୍ଠାନ ତଥା ଆଶ୍ରମମାନ ନିର୍ମାଣ କରିଥିଲେ। ସେମାନଙ୍କ ପୁନର୍ଗଠନର ଫଳସ୍ୱରୂପ ରତ୍ନଗିରି, ଲଳିତଗିରି ଓ ଉଦୟଗିରି ଭଳି ବୌଦ୍ଧ ଧର୍ମପୀଠଗୁଡ଼ିକର ଅଭ୍ୟୁଦୟ ଘଟିଥିଲା । ଭୌମକର ବଂଶୀୟ ପ୍ରଥମ ରାଜା ଉନ୍ମତ୍ତ କେଶରୀ 'ପରମ ଉପାସକ' ଓ 'ପରମ ସୌଗତ' ଉପାଧିରେ ଭୂଷିତ ହୋଇ ଉତ୍କଳରେ ବୌଦ୍ଧଧର୍ମକୁ ରାଜଧର୍ମ ରୂପେ ମଧ୍ୟ ଘୋଷଣା କରିଥିଲେ । ଗୌରବର ବିଷୟ, ବୌଦ୍ଧଧର୍ମର ଇତିହାସରେ ପ୍ରଥମ ବୌଦ୍ଧ ରୂପେ ଖ୍ୟାତିଲାଭ କରିଥିବା ତପସୁ ଓ ବହ୍ଲିକ ନାମକ ଦୁଇଜଣ ବଣିକହିଁ ଥିଲେ ଉତ୍କଳୀୟ । ସେ ଯାହାହେଉ, ବୌଦ୍ଧଧର୍ମର ପ୍ରଚାର କରିବାରେ କଳିଙ୍ଗ ଉତ୍କଳର ଗୌରବମୟ ଅବଦାନ ସ୍ମରଣୀୟ ।

ଅତୀତରେ ବୌଦ୍ଧ ସଂସ୍କୃତି ଓ ଐତିହ୍ୟର ଅମ୍ଳାନ ସ୍ମାରକୀ ଉତ୍କୀର୍ଣ୍ଣ ହୋଇଥିଲା ଓଡ଼ିଶାର ବହୁ ପ୍ରାଚୀନ ବୌଦ୍ଧପୀଠଗୁଡ଼ିକରେ । ଅବିଭକ୍ତ କଟକ ଜିଲ୍ଲାର ଲଳିତଗିରି, ରତ୍ନଗିରି, ଉଦୟଗିରି, ଲାଙ୍ଗୁଡ଼ି, କାଏମା, ବଜ୍ରଗିରି, କୋଲଣଗିରି, ବ୍ରହ୍ମାବଣ ଛଡ଼ା ରାଜ୍ୟର ଅନ୍ୟ ସ୍ଥାନ ଯଥା ଗରିଆପାଲୀ, ପରଗଳପୁର, ଶ୍ୟାମସୁନ୍ଦରପୁର, ବଉଦ, ବାଣେଶ୍ୱର ନାସୀ, ଖିଚିଂ, ଅଯୋଧ୍ୟା (ବାଲେଶ୍ୱର), ଖଡ଼ିପଡ଼ା, ସୋଲମପୁର, ଭୁବନେଶ୍ୱର, ଧଉଳି, ଅରାଗଡ଼, କୁରୁମ, ରାମଚଣ୍ଡୀ, ବାଣପୁର ଓ ଜଉଗଡ଼ ଭଳି ବହୁ ସ୍ଥାନରେ ବିକ୍ଷିପ୍ତ ଭାବରେ ରହିଛି ବୌଦ୍ଧସ୍ମାରକୀର କଳାକୀର୍ତ୍ତି । ବିଶେଷକରି ରାଜ୍ୟ ପର୍ଯ୍ୟଟନ ମାନଚିତ୍ରରେ 'ହୀରକ ତ୍ରିଭୁଜ' ନାମରେ ନାମିତ ତଥା ବିଶ୍ୱବିଖ୍ୟାତ ବୌଦ୍ଧପୀଠ ଯାଜପୁର ଜିଲ୍ଲାର ଉଦୟଗିରି ଓ ରତ୍ନଗିରି ଏବଂ କଟକ ଜିଲ୍ଲାର ଲଳିତଗିରିଠାରେ ବିଧିବଦ୍ଧ ପ୍ରତ୍ନତାତ୍ତ୍ୱିକ ଉତ୍ଖନନ କରାଯାଇ ବହୁ ବିରଳ ଓ ଦୁର୍ମୂଲ୍ୟ ବୌଦ୍ଧମୂର୍ତ୍ତି, ବୌଦ୍ଧମହାସ୍ତୂପ, ବୁଦ୍ଧମହାବିହାର, ଦ୍ୱାରବନ୍ଧ, ସମେତ ସହସ୍ରାଧିକ ସ୍ମାରକୀ ଆବିଷ୍କୃତ ହୋଇଛି ।

ଏଥିମଧ୍ୟରୁ ଲଳିତଗିରି ଖନନରୁ ଆବିଷ୍କୃତ ଲାଲ ରଙ୍ଗର ଚିତ୍ରିତ ମାଟିପାତ୍ର ବ୍ୟତୀତ ପ୍ରାଚୀନ ସାମଗ୍ରୀ ମଧ୍ୟରେ ପୁରୀକୁଷ୍ଣ ମୁଦ୍ରା ଏବଂ ଗୁପ୍ତଯୁଗୀୟ ଏକ ସ୍ୱର୍ଣ୍ଣମୁଦ୍ରା ଅନ୍ୟତମ । ପ୍ରଥମେ ଉତ୍କଳ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ୧୯୭୭ ମସିହାରେ ହୋଇଥିବା ଖନନରୁ ଧ୍ୱଂସସ୍ତୂପ ଏବଂ ବିଧିବଦ୍ଧ ଇଟା କାରୁକାର୍ଯ୍ୟ ସମ୍ବନ୍ଧରେ ସମ୍ୟକ ଧାରଣା ମିଳିଥିଲା । ଧ୍ୱଂସାବଶେଷ ସୌଧର ପୂର୍ଣ୍ଣାଙ୍ଗ ପରିପ୍ରକାଶ ପାଇଁ ଭୁବନେଶ୍ୱରସ୍ଥିତ ଭାରତ ସରକାରଙ୍କ ପ୍ରତ୍ନତତ୍ତ୍ୱ ବିଭାଗ ୧୯୮୫ ମସିହାଠାରୁ ଖନନ କାର୍ଯ୍ୟ ଆରମ୍ଭ କରି ୧୯୮୭ ମସିହାରେ ୧୨ ମିଟର ବ୍ୟାସଯୁକ୍ତ ଏକ ମହାସ୍ତୂପ ଆବିଷ୍କାର କରିଥିଲେ । ସେହିପରି ସ୍ତୂପର ପୂର୍ବ ପଟରୁ ୨ଟି ଗୁପ୍ତଯୁଗୀୟ ପେଟିକା ଓ ତନ୍ମଧ୍ୟରୁ ସ୍ୱର୍ଣ୍ଣ ଓ ରୌପ୍ୟପାତ୍ରରେ ଗଚ୍ଛିତ ବୁଦ୍ଧଙ୍କ ପବିତ୍ର ଦେହାବଶେଷ (ଅସ୍ଥି) ଆବିଷ୍କୃତ ହୋଇଛି । ନିର୍ମାଣ ସମୟରେ ଏହି ସ୍ତୂପର ଉଚ୍ଚତା ଥିଲା ୨୫ ଫୁଟ । ଲଳିତଗିରି ଖନନବେଳେ ମାଟି ହାଣ୍ଡିର କିଛି ଅଂଶବିଶେଷ ମିଳିଛି । ଏହା ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀ ବେଳର ଓ ତାହା ଭାରତର ପଶ୍ଚିମାଞ୍ଚଳରେ ନିର୍ମିତ ହୋଇଥିବାର ସୂଚନା ମିଳେ । ୧୯୮୮ ମସିହାରେ ଖନନ ଫଳରେ ସେଠାରୁ ଚୈତ୍ୟଗୃହ ସ୍ତୂପ ଆବିଷ୍କୃତ ହୋଇଥିଲା । ଏହା ପୂର୍ବରୁ ନାଗାର୍ଜ୍ଜୁନକୋଣ୍ଡା ଖନନରୁ ଅନୁରୂପ ଏହି ସ୍ତୂପ ଆବିଷ୍କୃତ ହୋଇଥିଲା । ଲଳିତଗିରିରେ ଗୋଟିଏ ମୂର୍ତ୍ତିର ପାଦଦେଶରେ ପାଲି ଭାଷାରେ 'ରଣଧୀରସ୍ୟ' ବୋଲି ଉଲ୍ଲେଖ ରହିଛି । ଏହା ତତକାଳୀନ କୌଣସି ରାଜାଙ୍କର ନାମ ହୋଇପାରେ ବୋଲି ପ୍ରତ୍ନତତ୍ତ୍ୱବିଦମାନେ କୁହନ୍ତି । ଲଳିତଗିରି ଖନନରୁ ମିଳିଥିଲା ଏକ ଗୁରୁତ୍ୱପୂର୍ଣ୍ଣ ଐତିହ୍ୟ- ବୁଦ୍ଧଙ୍କ ଦେହାସ୍ଥି ଥିବା ବିରଳ ରେଲିକ୍ କାସକେଟ୍ । ପାହାଡ଼ର ଶିଖରଦେଶରେ ଥିବା ବିଶାଳ ବୌଦ୍ଧ ସ୍ତୂପରୁ ଖନନ ବେଳେ ଆବିଷ୍କୃତ ହୋଇଥିଲା ପୂର୍ବଭାରତର ଏହି ଗୌରବମୟ କୀର୍ତ୍ତି । ଲଳିତଗିରିରେ ୧୭ ହଜାର ପାଂଚଶହ ବର୍ଗଫୁଟ ପରିସୀମା ମଧ୍ୟରୁ ୪୭୦୦ ବର୍ଗଫୁଟ ମଧ୍ୟରେ ନିର୍ମିତ ହୋଇଛି ଏକ ମନୋରମ ବୌଦ୍ଧ ସଂଗ୍ରହାଳୟ । ଏଥିରେ ୬ଟି ଗ୍ୟାଲେରି, ସମ୍ମିଳନୀ କକ୍ଷ ସହିତ ବିଶେଷ ଭାବରେ ନିର୍ମିତ ହୋଇଛି ବୁଲେଟ ପ୍ରୁଫ୍ ସଂଯୁକ୍ତ ଏକ ନିରାପଦ କକ୍ଷ - ଯେଉଁଥିରେ ସ୍ଥାନ ପାଇଛି ସେଠାରୁ ଆବିଷ୍କୃତ ବୁଦ୍ଧଙ୍କ ରେଲିକ୍ କ୍ୟାସକେଟ୍ । ଏହି ସଂଗ୍ରହାଳୟରେ ରହିଛି ଲଳିତଗିରିରୁ ବିଭିନ୍ନ ସମୟରେ ଆବିଷ୍କୃତ ଧ୍ୟାନୀ ବୌଦ୍ଧବିଗ୍ରହ, ବୋଧିସତ୍ତ୍ୱ, ଧର୍ମଚକ୍ର ପ୍ରବର୍ତ୍ତନ ମୁଦ୍ରା, ବରଦ ଓ ଅଭୟ ମୁଦ୍ରାରେ ଆସୀନ ବୁଦ୍ଧ ବିଗ୍ରହ, ଅନେକ ଶିଳାଲେଖ, ବିଭିନ୍ନ ଟେରାକୋଟା ସିଲ୍, ପୁରାତନ ମୁଦ୍ରା ସହିତ ୫୫ଟି ପ୍ରାଚୀନ କୀର୍ତ୍ତିରାଜି ।

ତେବେ ଅବିଭକ୍ତ କଟକ ଜିଲ୍ଲାର ଉପରୋକ୍ତ ସ୍ଥାନଗୁଡ଼ିକ ବ୍ୟତୀତ ଏହାର ଚତୁଃପାର୍ଶ୍ୱରେ ଥିବା ବହୁ ପୁରାତନ ଗ୍ରାମଗୁଡ଼ିକରେ ମଧ୍ୟ ବୌଦ୍ଧସ୍ତୂପ, ବୌଦ୍ଧମୂର୍ତ୍ତି ଓ ଅନ୍ୟାନ୍ୟ କୀର୍ତ୍ତିରାଜି ବିକ୍ଷିପ୍ତ ଭାବରେ



ପଡ଼ିରହିଛି । ଲଳିତଗିରି ବୌଦ୍ଧବିହାରରୁ ପୂର୍ବରୁ ଅନେକ ବୌଦ୍ଧମୂର୍ତ୍ତି, ବିଗ୍ରହ ଓ ଦ୍ୱାରବନ୍ଧ ଅନ୍ୟତ୍ର ସ୍ଥାନାନ୍ତର କରାଯାଇଛି । ବିଭିନ୍ନ ସମୟରେ ମଧ୍ୟ ସେଗୁଡ଼ିକ ବଡ଼ଚଣା, ମାହାଙ୍ଗା ଓ କେନ୍ଦ୍ରାପଡ଼ା ଅଂଚଳର ଅନେକ ଜମିଦାର ଓ ପ୍ରଭାବଶାଳୀ ବ୍ୟକ୍ତିଙ୍କ ଗୃହ ଶୋଭାବର୍ଦ୍ଧନ କରୁଥିଲାବେଳେ ଏହି ବୌଦ୍ଧବିହାରଗୁଡ଼ିକରୁ ବାହାରୁଥିବା ବିପୁଳ ପରିମାଣର ସୁନ୍ଦର ପଥରଖଣ୍ଡରେ ସ୍ଥାନୀୟ ଜନବସତିରେ ଲୋକମାନେ ବୋହିନେଇ ନିଜ ଗୃହ ନିର୍ମାଣରେ ବ୍ୟବହାର କରିଥିବା ଦେଖାଯାଉଛି । ସେହିଭଳି ଉଦୟଗିରି ଓ ରତ୍ନଗିରି ବୌଦ୍ଧବିହାରରୁ ଅତୀତରେ ଅନେକ ବୌଦ୍ଧ ସ୍ମାରକୀ ସ୍ଥାନାନ୍ତରିତ ହୋଇଛି । ଏପରିକି ଅବିଭକ୍ତ କଟକ ଜିଲ୍ଲାର କଲେକ୍ଟର ଥିବା ତତ୍କାଳୀନ ଇଂରେଜ ପ୍ରଶାସକ ଜନବୀମ୍‌ସ ମଧ୍ୟ ୧୮୭୫ ମସିହାରେ ଉଦୟଗିରିରୁ ବହୁ ବିରଳ ବୌଦ୍ଧମୂର୍ତ୍ତି ଓ ପ୍ରସ୍ତର ଦ୍ୱାରବନ୍ଧକୁ ମଧ୍ୟ କଟକ ନେଇ ଆସିଥିଲେ । ରତ୍ନଗିରିର ଅନେକ ବୌଦ୍ଧସ୍ତୂପ ଓ ଭୋଟିପ୍ (ଅର୍ଘ୍ୟ) ସ୍ତୂପ ଏବେବି ରତ୍ନଗିରି ଗ୍ରାମରେ ଗ୍ରାମଦେବତୀ ଭାବରେ ପୂଜା ପାଉଥିଲାବେଳେ ଅନେକ ମୂର୍ତ୍ତି ଓ ବିପୁଳ ପରିମାଣର ପ୍ରସ୍ତରଖଣ୍ଡ କେନ୍ଦ୍ରାପଡ଼ାର ତତ୍କାଳୀନ ଜମିଦାରଙ୍କ ନୌକାଦ୍ୱାରା ଜଳପଥରେ ସ୍ଥାନାନ୍ତରିତ ହୋଇଥିଲା । ଲଳିତଗିରି-ରତ୍ନଗିରି-ଉଦୟଗିରିର ବିକଶିତ ବୌଦ୍ଧସଭ୍ୟତା ଓ ସଂସ୍କୃତି ବହୁ ପୁରାତନ କାଳର । ୧୯୮୫ ମସିହାରେ ଭୁବନେଶ୍ୱରଠାରେ ଏ.ଏସ୍.ଆଇ.ର ବିଧିବଦ୍ଧ କାର୍ଯ୍ୟାଳୟ ପ୍ରତିଷ୍ଠିତ ହେବାପରେ ଉଦୟଗିରି ଓ ଲଳିତଗିରିଠାରେ ବିଭାଗ ପକ୍ଷରୁ ପ୍ରତ୍ନତାତ୍ତ୍ୱିକ ଖନନ କାର୍ଯ୍ୟ ଆରମ୍ଭ କରାଯାଇ ସହସ୍ରାଧିକ ସଂଖ୍ୟାର ବୌଦ୍ଧମୂର୍ତ୍ତିକୁ ଲୋକଲୋଚନକୁ ଅଣାଯାଇ ପାରିଥିଲା । ରାଜାନୁଗତ ଧର୍ମଭାବରେ ଏହା ପରିଚିତ ହୋଇଥିବାରୁ ଯାଜପୁର, କଟକ ଓ କେନ୍ଦ୍ରାପଡ଼ା ଜିଲ୍ଲାର ବିଭିନ୍ନ ଧର୍ମପୀଠ, ଜନବସତି ଓ ଅନ୍ୟାନ୍ୟ ସ୍ଥାନରେ ଏବେବି ଅନେକ ବୌଦ୍ଧକୀର୍ତ୍ତିର ସ୍ମାରକୀ ଦେଖିବାକୁ ମିଳୁଛି । ବୌଦ୍ଧଧର୍ମର ସରଳତା ଓ ସର୍ବଗ୍ରହଣୀୟତା ପାଇଁ ସାଧାରଣ ଲୋକେ ଏହି ଧର୍ମ ଗ୍ରହଣ କରିଥିଲେ । ହିନ୍ଦୁଧର୍ମ କୁସଂସ୍କାର, ଜାତିପ୍ରଥା ଓ ବିଦ୍ୱେଷ ଦୂରେଇବା ପାଇଁ ସରଳ ଓ ମଧ୍ୟମମାର୍ଗର ବୌଦ୍ଧଧର୍ମ ବେଶ୍ ସହାୟକ ହୋଇଥିଲା । ପରବର୍ତ୍ତୀ ସମୟରେ ବୌଦ୍ଧପୀଠଗୁଡ଼ିକୁ ଘେରି ରହିଥିବା ଜନପଦଗୁଡ଼ିକରେ ବୌଦ୍ଧଧର୍ମ, ଦର୍ଶନ ଓ ସଂସ୍କୃତିର ପ୍ରସାର ହୋଇଥିଲା । ଏବେ ଓଡ଼ିଶାର ପୂର୍ବ ଉପକୂଳରେ କଥିତ ଜିଲ୍ଲା ଗୁଡ଼ିକରେ ଅଧିକାଂଶ ଗ୍ରାମଦେବତୀ ଓ ଠାକୁରାଣୀଙ୍କ ମନ୍ଦିରରେ ପୂଜା ପାଉଥିବା ମଙ୍ଗଳା ଠାକୁରାଣୀହିଁ ଅତୀତର ବୌଦ୍ଧଦେବୀ ତାରା, ଅପରାଜିତା କିମ୍ବା ଅନ୍ୟାନ୍ୟ ବୌଦ୍ଧ ବିଗ୍ରହ । ସେହିଭଳି ବୌଦ୍ଧଶ୍ରମଣମାନଙ୍କ ଦ୍ୱାରା ଏହି ଧର୍ମରେ ଦୀକ୍ଷିତ ହେଉଥିବା ବୌଦ୍ଧପଲ୍ଲୀର ଗ୍ରାମୀଣ ଅଧିବାସୀମାନେ ନିଜନିଜ ଗ୍ରାମରେ ବୌଦ୍ଧସ୍ତୂପ ଓ ବୌଦ୍ଧମୂର୍ତ୍ତି ରଖି ପୂଜା କରୁଥିଲେ । ସେହିଭଳି ବୌଦ୍ଧଧର୍ମାଶ୍ରିତ ବ୍ୟକ୍ତିମାନେ ଦାନସୂତ୍ରରେ ଭୋଟିପ୍ (ଅର୍ଘ୍ୟ) ସ୍ତୂପଗୁଡ଼ିକୁ ମଧ୍ୟ ବ୍ୟବହାର କରିଥିବାର ପ୍ରମାଣ ମିଳିଛି । ପୂର୍ବଉପକୂଳ ଓଡ଼ିଶାର ଶହଶହ ସ୍ଥାନରେ ଥିବା ଶୈବ, ବୈଷ୍ଣବ ଓ ଶାକ୍ତପୀଠରେ ବୌଦ୍ଧମୂର୍ତ୍ତିର ସ୍ମାରକୀ ସ୍ଥାନ ପାଇଥିବା ଦେଖାଯାଉଛି ।

ଅବିଭକ୍ତ କଟକ ଜିଲ୍ଲାର ସହସ୍ରାଧିକ ସ୍ଥାନରେ ହଜାର ହଜାର ବର୍ଷ ତଳେ ବିକଶିତ ଓ ସମୃଦ୍ଧ ବୌଦ୍ଧପଲ୍ଲୀ ଗଢ଼ିଉଠିଥିଲା । ବୌଦ୍ଧ ସଂସ୍କୃତିର ଅପୂର୍ବ ମାନମନ୍ଦିର ଯେଉଁଠାରେ ବୁଦ୍ଧ, ଧର୍ମ ଓ ସଂଘର ପବିତ୍ର ବାଣୀ ନିନାଦିତ ହେଉଥିଲା- ସେଠାରେ ଆଜି ସମୟର କୁଠାରଘାତରେ ମାଟିତଳେ ଘୋଡ଼ାଇ ହୋଇଯାଇଛି । ବୌଦ୍ଧକୀର୍ତ୍ତିରାଜିର ସ୍ମାରକୀ ଗୁଡ଼ିକ ଅବ୍ୟବସ୍ଥିତ ଓ ଅସୁରକ୍ଷିତ ଅବସ୍ଥାରେ ପଡ଼ିରହିଥିଲାବେଳେ ଭାରତସରକାରଙ୍କ ଏ.ଏସ.ଆଇ. (ଭାରତୀୟ ପ୍ରତ୍ନତତ୍ତ୍ୱ ସର୍ବେକ୍ଷଣ ସଂସ୍ଥା) ପକ୍ଷରୁ ସବୁଗୁଡ଼ିକର ବିଧିବଦ୍ଧ ଚିହ୍ନଟ ପ୍ରକ୍ରିୟା ମଧ୍ୟ ଏଯାବତ କରାଯାଇନାହିଁ । ଅର୍ଥାଭାବରୁ ରାଜ୍ୟର ବହୁ ବିରଳ ବୌଦ୍ଧପୀଠକୁ ପ୍ରତ୍ନତାତ୍ତ୍ୱିକ ଖନନ ଓ ସଂରକ୍ଷଣ କରାଯାଇପାରୁ ନଥିଲା ବେଳେ ନୂତନ ଇଲାକାରୁ ମିଳୁଥିବା ପ୍ରାଚୀନ ତଥା ବିରଳ କୀର୍ତ୍ତିରାଜି ଅବହେଳା ଓ ଅଣଦେଖାର ଶିକାର ହେବା କିଛି ବିଚିତ୍ର ନୁହେଁ ।

**ଶେଷକଥା :**

ବୌଦ୍ଧ ପର୍ଯ୍ୟଟନ କେନ୍ଦ୍ରଗୁଡ଼ିକର ଉପଯୁକ୍ତ ବିକାଶ ଓ ଦେଶ ବିଦେଶରେ ଏହାର ପ୍ରଚାର-ପ୍ରସାର ପାଇଁ ଯେଭଳି ଉଦ୍ୟମ କରିବା କଥା ତାହା ଓଡ଼ିଶାରେ ହୋଇପାରି ନାହିଁ । ଲଳିତଗିରି-ରତ୍ନଗିରି-ଉଦୟଗିରି ଠାରେ ଅନେକ ମହାର୍ଘ ଓ ମନୋରମ ବୌଦ୍ଧବିହାର, ମହାସ୍ତୂପ, ଚୈତଗୃହସ୍ତୂପ, ମହାକାଳ ମନ୍ଦିର,ବିଶାଳ ସ୍ତୂପରାଜି, ଶହଶହ ମନୋଜ୍ଞ ବୌଦ୍ଧବିଗ୍ରହ ଏବଂ ଗୌତମ ବୁଦ୍ଧଙ୍କ ପବିତ୍ର ଅସ୍ଥି ଦେହାବଶେଷ ସମେତ ହଜାର ହଜାର ସଂଖ୍ୟାରେ ପ୍ରତ୍ନସଂପଦ ଆବିଷ୍କୃତ ହୋଇଛି । ଏହି ବୌଦ୍ଧପୀଠଗୁଡ଼ିକୁ ଆକର୍ଷଣୀୟ ଭାବେ ବିକଶିତ କରାଗଲେ, ଦେଶ ବିଦେଶରୁ ହଜାର ହଜାର ସଂଖ୍ୟକ ପର୍ଯ୍ୟଟକ ଏହି ପୀଠ ପରିଦର୍ଶନ କରନ୍ତେ । ବୋଧଗୟା, ସାରନାଥ, ନାଳନ୍ଦା ଓ ତକ୍ଷଶିଳା ଠାରେ ଯେଭଳି ବୌଦ୍ଧ ପର୍ଯ୍ୟଟକମାନଙ୍କୁ ଆକର୍ଷିତ କରିବା ପାଇଁ ସୁନ୍ଦର ପାରିପାର୍ଶ୍ୱିକ କ୍ଷେତ୍ରଗୁଡ଼ିକର ବିକାଶ କରାଯାଇଛି- ଓଡ଼ିଶାର ଏହି ପ୍ରମୁଖ ବୌଦ୍ଧପୀଠଗୁଡ଼ିକରେ ତାହା ଏଯାବତ କରାଯାଇନାହିଁ ।

'ସାଇବୀଥି', ୭ଡି-୧୩୫୪,
ସେକ୍ଟର-୯, ସିଡ଼ିଏ, କଟକ-୭୫୩୦୧୪
*ଦୂରଭାଷ : ୯୪୩୭୨୨୬୭୯୭*

ଠଠ

# ବୋଇତ ଲାଗିଲା ଯାଇ ସିଂହଳ ଦ୍ୱୀପରେ

❖ ଡକ୍ଟର ନିରଞ୍ଜନ ସାହୁ

ଅତୀତ ଓଡ଼ିଶାର ନୌବାଣିଜ୍ୟ ପ୍ରତ୍ୟେକ ଓଡ଼ିଆଙ୍କ ପାଇଁ ଗର୍ବ ଓ ଗୌରବର ବିଷୟ । ଗୋଟିଏ ଦୁଃସାହସୀ ଜାତିର ଉତ୍ତର ପୁରୁଷ ହିସାବରେ ନିଜକୁ ଗର୍ବ କରେକି ? ଦିନେ ଯେଉଁ ଅଗ୍ରଗାମୀ ଜାତି ଭାବେ ସମୁଦ୍ରବକ୍ଷ ପାରହୋଇ ସୁଦୂର ଦକ୍ଷିଣପୂର୍ବ ଦ୍ୱୀପପୁଞ୍ଜ ଓ ସିଂହଳଦ୍ୱୀପରେ ସର୍ବପ୍ରଥମେ ଭାରତୀୟ ସଂସ୍କୃତିର ବୀଜ ରୋପଣ କରିଥିଲା, ସେହି ଐତିହାସିକ ଘଟଣା ସ୍ମରଣରେ ସରକାରୀ ସ୍ତରରେ ପ୍ରତିବର୍ଷ 'ବାଲିଯାତ୍ରା' ମହୋତ୍ସବ ପାଳିତ ହେଉଛି । ଓଡ଼ିଆଙ୍କ ପାଇଁ ଏହା ଏକ ଭାବପ୍ରବଣତାର ବିଷୟ ।

ଭାରତୀୟ ନୌବାଣିଜ୍ୟ ଏହି ସମୟରେ ଭାରତ ମହାସାଗରରେ ସକ୍ରିୟ ରହିଥିବା ଏସୀୟ ଓ ପର୍ତ୍ତୁଗୀଜ ବଣିକମାନଙ୍କ ସହିତ ଇଂରେଜ, ଓଲନ୍ଦାଜ, ଫରାସୀ ଓ ଡେନ୍‌ମାର୍କ ବଣିକମାନେ ସଂଯୁକ୍ତ ହୋଇଥିଲେ । ଯାହାଫଳରେ କି ଭାରତର ବାଣିଜ୍ୟିକ ରପ୍ତାନି ଓ ଆମଦାନି ଅଧିକ ତ୍ୱରାନ୍ୱିତ ହୋଇଥିଲା । ଇଣ୍ଡୋନେସିଆ ଓ ମାଲେସିଆ ଦ୍ୱୀପପୁଞ୍ଜମାନଙ୍କରେ ରାଜନୀତିକ ସ୍ଥିରତା ଆସିବା ସହିତ ସିଂହଳର ଉପକୂଳବର୍ତ୍ତୀ ଅଞ୍ଚଳ ଓଲନ୍ଦାଜମାନଙ୍କ ଅନୁପ୍ରବେଶ ଫଳରେ ବୋଇତ ବାଣିଜ୍ୟ ଅଧିକ ପ୍ରତିଯୋଗିତାମୂଳକ ହୋଇଥିଲା । ଏହାଦ୍ୱାରା ପୂର୍ବରେ ଇଣ୍ଡୋନେସିଆଠାରୁ ପଶ୍ଚିମରେ ଲୋହିତସାଗର ପର୍ଯ୍ୟନ୍ତ ନୌବାଣିଜ୍ୟ ପାରସ୍ପରିକ ସହବନ୍ଧିତ ହୋଇଥିଲା । ପୁଣି ଓଲନ୍ଦାଜ୍ କମ୍ପାନିର ପ୍ରଚେଷ୍ଟା ଫଳରେ ଜାପାନ ସହିତ ଓଡ଼ିଶା ଓ ବଙ୍ଗଳାର ନୌବାଣିଜ୍ୟ ସଂପର୍କ ସ୍ଥାପିତ ହୋଇଥିଲା । କହିବାକୁ ଗଲେ ସେ ସମୟରେ ଏସିଆ ମହାଦେଶର ବାଣିଜ୍ୟିକ ଭିତ୍ତିର କେନ୍ଦ୍ର ଥିଲା ଭାରତୀୟ ଉପମହାଦେଶ । ଯେଉଁସବୁ ଅଞ୍ଚଳ ନୌବାଣିଜ୍ୟର ପେଣ୍ଠସ୍ଥଳ ଥିଲା ସେଗୁଡ଼ିକ ଭିତରେ ଓଡ଼ିଶାର ଉପକୂଳ ଥିଲା ପ୍ରଧାନ ।

**ନୌବାଣିଜ୍ୟିକ ପେଣ୍ଠସ୍ଥଳ :**

୧. ଗୁଜରାଟର କାମ୍ବେ ଓ ସୁରତ ବନ୍ଦର ।
୨. କୋଙ୍କଣର ଗୋଆ ବନ୍ଦର
୩. ମାଲବାର ଉପକୂଳର କାଲିକଟ, କୋଚିନ୍ ବନ୍ଦର
୪. କରମଣ୍ଡଳର ନାଗପତ୍ତନମ୍ ଓ ମସୁଲିପତ୍ତନମ୍ ବନ୍ଦର
୫. ଓଡ଼ିଶା ଉପକୂଳର ବାଲେଶ୍ୱର, ପିପିଲି, ହରିଶପୁର ଓ ବିମିଲିପତ୍ତନମ୍ ବନ୍ଦର
୬. ବଙ୍ଗଳା ଉପକୂଳର ହୁଗୁଳି ଓ ଚଟ୍ଟୋଗ୍ରାମ ବନ୍ଦର

ଓଡ଼ିଶା ଉପକୂଳର ବାଲେଶ୍ୱର, ପିପିଲି, ହରିଶପୁର ଓ ବିମିଲିପତ୍ତନମ୍‌ରୁ ସିଂହଳ, ଇଣ୍ଡୋନେସିଆ, ମାଲୟେସିଆ, ଥାଇଲାଣ୍ଡ ଓ ମାଳଦ୍ୱୀପ ଆଦି ସହିତ ନୌବାଣିଜ୍ୟ ଥିଲା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ସେଥିପାଇଁ କୁହାଯାଏ ଦୁଇହଜାର ବର୍ଷ ପୂର୍ବରୁ ଅର୍ଥାତ ସପ୍ତଦଶ ଶତାବ୍ଦୀରେ ନୌବାଣିଜ୍ୟ ତୁଙ୍ଗିମାସ୍ପର୍ଶ କରିଥିଲା । ମାତ୍ର ଅଷ୍ଟାଦଶ ଶତାବ୍ଦୀରେ ଓ ତତ୍‌ପରବର୍ତ୍ତୀ କାଳରେ ଏହି ନୌବାଣିଜ୍ୟ ଧୀରେଧୀରେ ହ୍ରାସ ହେବା ସହିତ ପତନ ଘଟିଥିଲା । ଏହାଦ୍ୱାରା ସବୁଠାରୁ ବେଶି କ୍ଷତିଗ୍ରସ୍ତ ହୋଇପଡ଼ିଥିଲା ଓଡ଼ିଶା ।

ପ୍ରାଚୀନ ଓଡ଼ିଶାର ନୌବାଣିଜ୍ୟର ଇତିହାସ ଅଢ଼େଇ ହଜାର ବର୍ଷର ପ୍ରାଚୀନ ପରଂପରା ବୋଲି ଐତିହାସିକମାନଙ୍କର ମତ । ସିଂହଳର ଏକ ପ୍ରାଚୀନ ବୌଦ୍ଧଗ୍ରନ୍ଥ- 'ମହାବଂଶ'ରେ ଉଲ୍ଲେଖ ଅଛି ଯେ, ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀରେ ସିଂହଳର ସିଂହଳୀ ରାଜବଂଶକୁ କଳିଙ୍ଗର ଜଣେ ରାଜକୁମାର ପ୍ରତିଷ୍ଠା କରିଥିଲେ । ଉକ୍ତ ରାଜକୁମାର କଳିଙ୍ଗର ସିଂହବଂଶଜ, ଯିଏ କି ପିତାଙ୍କଦ୍ୱାରା ରାଜ୍ୟରୁ ବିତାଡ଼ିତ ହୋଇ ସିଂହଳ ପଳାଇ ଆସିଥିଲେ । ସେଠାରେ ସେ ଭେଧାବଂଶର ଜଣେ ରାଜକୁମାରୀଙ୍କୁ ବିବାହ କରିଥିଲେ । ଉକ୍ତ ଦମ୍ପତିଙ୍କ ଔରଷରୁ ଜାତ ସନ୍ତାନ ଓ



ସେମାନଙ୍କ ବଂଶଧରଙ୍କୁ ସିଂହଳୀ/ ସିଂହ ବଂଶଧର କୁହାଗଲା । ଯଦି ବୌଦ୍ଧଗ୍ରନ୍ଥ 'ମହାବଂଶ'କୁ ବିଶ୍ୱାସ କରାଯାଏ, ତେବେ କଳିଙ୍ଗର ଅଧିବାସୀ ହିଁ ସିଂହଳର ପ୍ରଥମ ବାସିନ୍ଦା । ସିଂହଳ ଦ୍ୱୀପ ସହିତ ଓଡ଼ିଶାର ସାମୁଦ୍ରିକ ନୌବାଣିଜ୍ୟ ସଂପର୍କ ସଘନ । କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ 'ଲାବଣ୍ୟବତୀ' କାବ୍ୟରେ ଏହାର ବର୍ଣ୍ଣନା ରହିଛି-

"ବୋଇତ ଲାଗିଲା ଯାଇ ସିଂହଳ ଦ୍ୱୀପରେ ।"

କର୍ଣ୍ଣାଟକ ଦେଶରେ କାଞ୍ଚି ନାମକ ନଗର ରତ୍ନଶେଖର ଓ ରାଣୀ ଶଶୀରେଖା ଅପୁତ୍ରିକ ଥିବାରୁ ଏକ ପୁତ୍ର ସନ୍ତାନ ପାଇଁ ଶିବପୂଜା କରୁଥିଲେ । ଶିବଙ୍କ କୃପାରୁ ସେ ଦୁହେଁ ପ୍ରଭାକରଙ୍କୁ ନବଜାତ ସନ୍ତାନ ରୂପେ ପ୍ରାପ୍ତ ହେଲେ, ଜନ୍ମରୁ ସନ୍ତାନଟି ଚନ୍ଦ୍ରଭଳି ସୁନ୍ଦର ଓ ସୂର୍ଯ୍ୟଭଳି ତେଜସ୍ୱୀ ଥିବାରୁ ତାହାର ନାମ ରଖିଲେ ଚନ୍ଦ୍ରଭାନୁ ।

ପ୍ରଭାକର ଯେପରି ଚନ୍ଦ୍ରଭାନୁ ରୂପରେ ଜନ୍ମ ପାଇଛନ୍ତି; ସେହିପରି ବାଞ୍ଛାବତୀର ମଧ୍ୟ ପରଜନ୍ମ ପ୍ରସଙ୍ଗ ରହିଛି ।

ସିଂହଳ ଦେଶର ରାଜା ଥିଲେ ରତ୍ନେଶ୍ୱର ଏବଂ ରାଣୀ ଥିଲେ ବିଦ୍ୟୁଲ୍ଲତା । ରାଜା / ରାଣୀଙ୍କର ପାଞ୍ଚପୁତ୍ର ଥିଲେ ମଧ୍ୟ କନ୍ୟାଟିଏ ନଥିବା ହେତୁ କନ୍ୟାଟିଏ ପାଇବାପାଇଁ ଦେବୀଙ୍କୁ ପ୍ରାର୍ଥନା କରିଥିଲେ । ଦେବୀଙ୍କ କୃପାରୁ ବାଞ୍ଛାବତୀଙ୍କର ଜନ୍ମ । ବାଲ୍ୟକାଳରୁ କନ୍ୟାଟିର ଅପୂର୍ବ ଲାବଣ୍ୟ ଦେଖି ଏହାର ନାମ ରଖାଯାଇଥିଲା 'ଲାବଣ୍ୟବତୀ' । ଚନ୍ଦ୍ରଭାନୁ ଲାବଣ୍ୟବତୀଙ୍କୁ ବୈବାହିକ ସୂତ୍ରରେ ଆବଦ୍ଧିତ ହୋଇଛନ୍ତି । ଏହା କର୍ଣ୍ଣାଟକ ସହିତ ସିଂହଳର ସଂପର୍କ । ସିଂହଳ ସହିତ ନୌବାଣିଜ୍ୟର ସୂତ୍ର ଏହା ଏକ କାବ୍ୟିକ ଯୋଗସୂତ୍ର ।

ସିଂହଳ ଦ୍ୱୀପ ଛଡ଼ା କଳିଙ୍ଗ ସହିତ ସମୁଦ୍ରପଥରେ ଆହୁରି ଅନେକ ଦ୍ୱୀପ ସହିତ ନୌବାଣିଜ୍ୟିକ ସଂପର୍କ ରହିଥିଲା । ଯଥା- ବ୍ରହ୍ମଦେଶ, ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ମାଳୟ ଓ ସିଙ୍ଗାପୁର । ଇଣ୍ଡୋନେସିଆର ଜାଭାଦ୍ୱୀପ ସହିତ କଳିଙ୍ଗର ସାମୁଦ୍ରିକ ସଂପର୍କ ପ୍ରାୟ ଦୁଇହଜାର ବର୍ଷ ପୂର୍ବରୁ ଆରମ୍ଭ ହୋଇଥିଲା । ଜାଭା ଦ୍ୱୀପରେ ପ୍ରଚଳିତ ଏକ କିମ୍ବଦନ୍ତୀ ଅନୁସାରେ- "କଳିଙ୍ଗର ରାଜା ପ୍ରାୟ କୋଡ଼ିଏ ହଜାର ଲୋକଙ୍କୁ ପଠାଇଥିଲେ, ଯେଉଁମାନେ କି ସେଠାରେ ବସତି ସ୍ଥାପନ କରି ବଂଶ ବିସ୍ତାର କରିଥିଲେ । ଏହି ସୂତ୍ରରେ ଜାଭା ସହିତ କଳିଙ୍ଗର ସଂପର୍କ ଅତୁଟ ।

ଅନ୍ୟପକ୍ଷରେ ଜାଭା, ମାଳୟ ଓ ସିଙ୍ଗାପୁର ଦ୍ୱୀପମାନଙ୍କରେ ଭାରତୀୟଙ୍କୁ 'କ୍ଲିଂ' କୁହାଯାଏ । ଏହି 'କ୍ଲିଂ' ଶବ୍ଦ 'କଳିଙ୍ଗ' ଶବ୍ଦରୁ ନିଷ୍ପନ୍ନ ହୋଇଛି । ପ୍ରଥମେ ନୌବାଣିଜ୍ୟ ସୂତ୍ରରେ କଳିଙ୍ଗର ଅଧିକାରୀ ଗମନାଗମନ କରି ବସତି ସ୍ଥାପନ କରିବାପରେ ଭାରତର ଅନ୍ୟ ଉପକୂଳବର୍ତ୍ତୀ ଅର୍ଥକୁ ବିଶେଷକରି ତାମିଲ ଓ ତେଲୁଗୁ ବଣିକମାନେ ପ୍ରାଧାନ୍ୟ ବିସ୍ତାର କରିଛନ୍ତି । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ଏହା ବୀଜମନ୍ତ୍ର । 'କ୍ଲୀଂ' ବୀଜମନ୍ତ୍ର ବ୍ୟବହାର ନ ହେଲେ ମନ୍ତ୍ରପୂତ ଦେବତାଙ୍କୁ ଆରାଧନା କରାଯାଏ ନାହିଁ । ତେଣୁ କ୍ଲିଂ କହିଲେ କଳିଙ୍ଗର ଅଧିବାସୀଙ୍କୁ ବିଶେଷକରି ବୁଝାଯାଏ ।

ଦକ୍ଷିଣପୂର୍ବ ଏସୀୟ ରାଷ୍ଟ୍ର ଓ ସିଂହଳ ଛଡ଼ା ପ୍ରାଚୀନ ଓଡ଼ିଶା ସହିତ ରୋମାନ ସାମ୍ରାଜ୍ୟ ସହିତ ବାଣିଜ୍ୟିକ ସଂପର୍କ ଥିବା ଅନୁମାନ କରାଯାଏ । ପ୍ରମାଣ ସ୍ୱରୂପ, ଶିଶୁପାଳଗଡ଼ ଉତ୍‌ଖନନରୁ ବାହାରିଥିବା ସ୍ୱର୍ଣ୍ଣମୁଦ୍ରା । ପ୍ରାଚୀନ ରୋମ ବଣିକମାନେ ମସଲାଦି ଦ୍ରବ୍ୟ କିଣିବାପାଇଁ ଭାରତୀୟ ବନ୍ଦରମାନଙ୍କୁ ଆସୁଥିଲେ । ବାଣିଜ୍ୟିକ ସୂତ୍ରରେ ଇଣ୍ଡୋନେସିଆରୁ ମସଲାଦି ଦ୍ରବ୍ୟ କଳିଙ୍ଗ/ଉତ୍କଳୀୟମାନେ ବଣିଜକରି ରୋମାନମାନଙ୍କୁ ତଥା ଭୂମଧ୍ୟସାଗରୀୟ ଦେଶମାନଙ୍କ ସହିତ ବାଣିଜ୍ୟ କରୁଥିଲେ । ଜାଭା ଓ ମାଳୟ ଦ୍ୱୀପ ସହିତ ଏଥିପାଇଁ ଘନିଷ୍ଠ ସଂପର୍କ ଥିଲା । ତାମ୍ରଲିପ୍ତ ବନ୍ଦର ମାଧ୍ୟମରେ ପଣ୍ୟଦ୍ରବ୍ୟ ରପ୍ତାନି କରାଯାଉଥିଲା ।

ଓଡ଼ିଶାରେ ପ୍ରଚଳିତ କିମ୍ବଦନ୍ତୀ, ପର୍ବପର୍ବାଣି ଓ ପ୍ରାଚୀନ କୀର୍ତ୍ତିମାନଙ୍କରୁ ଓଡ଼ିଶା ନୌବାଣିଜ୍ୟର ସୂଚନା ମିଳେ । ଆଜି ପର୍ଯ୍ୟନ୍ତ କାର୍ତ୍ତିକ ମାସର ପୂର୍ଣ୍ଣମୀ ଦିନ ଉପକୂଳବର୍ତ୍ତୀ ଅଞ୍ଚଳମାନଙ୍କରେ 'ବୋଇତ-ବନ୍ଦାଣ' ଉତ୍ସବ ପାଳନ କରାଯାଏ । ନଦୀରେ ସ୍ନାନ କରି, 'ଆକାମାବଇ, ପାନଗୁଆ ଖାଇ' ପଦ୍ୟ ଆବୃତ୍ତି କରି ଛୋଟ ଛୋଟ କଦଳୀ ପଟୁକାରେ ଡଙ୍ଗା ତିଆରି କରି ଭସାଇଥାନ୍ତି । ଏହି ପରଂପରା ଅତି ପ୍ରାଚୀନ । ଆଦିକବି ସାରଳା ଦାସ ମହାଭାରତ ଗ୍ରନ୍ଥରେ କାର୍ତ୍ତିକ ପୂର୍ଣ୍ଣମୀକୁ 'ଆକାମାବଇ' ପବିତ୍ର ସ୍ନାନ ଦିବସ ବୋଲି କହିଛନ୍ତି ।





"କାର୍ତ୍ତିକ ମାସ ଶୁକ୍ଳପକ୍ଷ ବୁଧବାର ଯେ ପୂର୍ଣ୍ଣମୀ ଆକାମାବଇ ସ୍ନାହାନ ଦିନ ଗଙ୍ଗାକୁ ଗଲେ କୁନ୍ତଭୋଜ ସ୍ୱାମୀ ।"

(ମହାଭାରତ, ଆଦିପର୍ବ, ପୃ. ୧୩୧

ଯଥାର୍ଥରେ କାର୍ତ୍ତିକ ମାସ ହେଉଛି ପବିତ୍ର ଧର୍ମମାସ । ଏହି ମାସର ପୂର୍ଣ୍ଣିମା ଦିନ ହେଉଛି ଅତି ପବିତ୍ର । ଏହି ମାସରେ ଦକ୍ଷିଣ-ପଶ୍ଚିମ ମୌସୁମୀ ବାୟୁ ଦୁର୍ବଳ ହୋଇଯାଏ ଓ ଉତ୍ତରପୂର୍ବ ମୌସୁମୀ ବାୟୁ ପ୍ରବାହ ହେବାକୁ ଲାଗେ । ଉତ୍ତର ପୂର୍ବ ମୌସୁମୀ ବାୟୁ ସକ୍ରିୟ ହେଲେ ଓଡ଼ିଶାରୁ ବୋଇତ ଜାହାଜ ଦକ୍ଷିଣ ଦିଗରେ କରମଣ୍ଡଳ, ସିଂହଳ ଓ ମାଳଦ୍ୱୀପ ଆଦି ଦେଶକୁ ସାମୁଦ୍ରିକ ଯାତ୍ରା କରେ । ଶୀତଦିନ ଆସିଲେ ସାଧବ ପୁଅ ବୋଇତ/ବଣିକପୁଅ ଜାହାଜ ସବୁ ଦକ୍ଷିଣ ଦିଗକୁ ମେଲାଣି ନିଏ ବୋଲି ସାରଳା ଦାସ ତାଙ୍କ ମହାଭାରତର 'ଶାନ୍ତିପର୍ବ'ରେ ଉଲ୍ଲେଖ କରିଛନ୍ତି ।

କାର୍ତ୍ତିକ ମାସରେ ଦକ୍ଷିଣଗାମୀ ବୋଇତ ସିଂହଳ ମାଳଦ୍ୱୀପ ଓ କରମଣ୍ଡଳରୁ ଫେରିଆସେ । ତା' ଛଡ଼ା ଓଡ଼ିଶାରୁ ଜାହାଜ ବ୍ରହ୍ମଦେଶ ଓ ଥାଇଲାଣ୍ଡକୁ ସୁରୁଖୁରୁରେ ଯାଇଥାନ୍ତି । ଏହି କାର୍ତ୍ତିକ ମାସର ପୂର୍ଣ୍ଣିମା ଦିନରେ ବୋଇତ ବନ୍ଦାଣ ହୁଏ । ବୋଇତ/ଜାହାଜ ପୂଜାକରି ବନ୍ଦରମାନଙ୍କରୁ ମେଲାଣି ଦିଆଯାଏ । ଏହାର ଏକ ସୁନ୍ଦର ଉଦାହରଣ ହେଉଛି ବିଂଶ ଶତାବ୍ଦୀରେ ପ୍ରଜ୍ୱଳିତ ଥିବା ବ୍ୟାସକବି ଫକୀରମୋହନଙ୍କ ଗଳ୍ପ "କମଳା ପ୍ରସାଦ ଗୋରାପ" ।

କିମ୍ବଦନ୍ତୀ ଅନୁସାରେ 'ତଅପୋଇ' ଗଳ୍ପ ବା ଖୁଦୁରୁକୁଣୀ ପଦ୍ୟ ଅତି ଜଣାଶୁଣା । ଓଡ଼ିଶାର ଘରେ ଘରେ ଓଷା ପାଳିତ ହୁଏ ଓ ପାଠ ହୁଏ । ଭାଦ୍ରବ ଓ ଆଶ୍ୱିନ ମାସ ବେଳକୁ ଓଡ଼ିଶା ଓ ଆନ୍ଧ୍ର ଉପକୂଳ ଖୁବ୍ ବିପଜ୍ଜନକ ସାମୁଦ୍ରିକ ଝଡ଼ ଉଠିଥାଏ । ଯାହାକି ବୋଇତ / ଜାହାଜ ପାଇଁ ବିପଜ୍ଜନକ । ଅନ୍ୟପକ୍ଷରେ ପର୍ତ୍ତୁଗୀଜମାନଙ୍କର ଲୁଣ୍ଠନ ସମୟ । ତେଣୁ ଆଷାଢ଼ରୁ ଆଶ୍ୱିନ ମାସ ମଧ୍ୟରେ ସାମାନ୍ୟ ଡେରି ହେଲେ ଓଡ଼ିଶାରେ ସାଧବଘରମାନଙ୍କରେ ଭାଳେଣି ପଡ଼ିଯାଏ । ସର୍ବମଙ୍ଗଳାଙ୍କୁ ଶୁଭମନାସି ପୂଜାର୍ଚ୍ଚନା ହୁଏ । ଭଉଣୀମାନେ ଭାଇର ଶୁଭକାମନା କରି ଭାଇର ନିରାପଦ ବାହୁଡ଼ା ବିଜେ ପାଇଁ ପ୍ରାର୍ଥନା କରାଯାଏ । ସେଥିପାଇଁ 'ତଅପୋଇ ଓଷା' ଭାଦ୍ରବ ମାସରେ ପଡ଼େ ।

ଲୋକ କାହାଣୀ ଭାବରେ 'କୁହୁକ ମଣ୍ଡଳ' ଚଢ଼େଇ ସାଧବପୁଅର ଜଳଯାତ୍ରା କାହାଣୀର ଅନ୍ୟ ଏକ ସ୍ମାରକୀ । ବଡ଼ଭାଇମାନେ ଯାଇଥିଲେ ନୌବାଣିଜ୍ୟରେ । ସାନଭାଇର ଅନୁରୋଧ ଥିଲା- କୁହୁକ ମଣ୍ଡଳ ଚଢ଼େଇପାଇଁ । ଭାଇମାନେ ବୋଇତରେ ବାଣିଜ୍ୟ ସାରି ସେ ଦେଶର ରାଜାଙ୍କୁ ଅନେକ ଭେଟିଦେଇ ଫେରିବାବେଳେ 'କୁହୁକ ମଣ୍ଡଳ' ଚଢ଼େଇ କଥା ମନେପଡ଼ିଲା । ରାଜାଙ୍କୁ ଏକଥା ଜଣାଇଲେ । ସଙ୍ଗେ ସଙ୍ଗେ ରାଜା କେଳାମାନଙ୍କୁ କୁହକୁ ମଣ୍ଡଳ ଚଢ଼େଇ ଧରି ଆଣିବାକୁ କହିଲେ । କେଳାମାନେ ଅନେକ ଖୋଜାଖୋଜି କରି ଏକ ଅଦ୍ଭୁତ ପକ୍ଷୀ ପାଇଲେ । ସାଧବପୁଅଙ୍କୁ ରାଜା ତାହା ପ୍ରଦାନ କରିଥିଲେ । ଏ କଥାର ତାତ୍ପର୍ଯ୍ୟ ହେଲା- ସାଧବପୁଅମାନେ ବାଣିଜ୍ୟ କରିବା ସହିତ ଭେଟି ଦେଉଥିଲେ ଓ ଭେଟି ଆଣୁଥିଲେ । 'କୁହୁକ ମଣ୍ଡଳ' ପକ୍ଷୀପରି କୋଣାର୍କରେ ଅଙ୍କିତ ଜିରାଫ୍ ଚିତ୍ର ମଧ୍ୟ ନୌବାଣିଜ୍ୟର ଅନ୍ୟ ଏକ ନମୁନା ।

ନୌବାଣିଜ୍ୟ ପ୍ରସଙ୍ଗରେ ଓଡ଼ିଶା ଦୁଇ ସହସ୍ର ବର୍ଷର ପ୍ରାଚୀନ ପ୍ରସଙ୍ଗ । ଓଡ଼ିଶା ନୌବାଣିଜ୍ୟ କ୍ଷେତ୍ରରେ ଚିରକାଳ ସିଂହଳ, ବ୍ରହ୍ମଦେଶ, ଶ୍ୟାମ, ଜାଭା, ସୁମାତ୍ରା, ମାଳୟ ଓ ମାଳଦ୍ୱୀପ ଆଦି ଦେଶ ସହିତ ସଂପୃକ୍ତ । ବିଶେଷକରି ବାଲିଦ୍ୱୀପ ସହିତ ସଂପୃକ୍ତି ଅନେକ । ତା'ର ସ୍ମାରକୀ ସଦୃଶ ଏବେ ବି 'ବାଲିଯାତ୍ରା' ସେହି ସ୍ମୃତି ବହନ କରିଆସୁଛି । ମହାନଦୀ ବାଲିରେ ଏହି ଯାତ୍ରା ବସୁଥିବାରୁ ଏହାର ନାମ 'ବାଲିଯାତ୍ରା' ବା ବୋଇତ ବନ୍ଦାଣ ଯାତ୍ରା ।

'ବାଲି' ହେଉ କି 'ସିଂହଳ'- ଏହା ଓଡ଼ିଶାର ଅଢ଼େଇ ହଜାର ବର୍ଷର ନୌବାଣିଜ୍ୟିକ ସ୍ମୃତି ଓ ସ୍ମାରକୀ । ଆଜି ନୌବାଣିଜ୍ୟ ନାହିଁ, ଓଡ଼ିଶାର ଜୀବନରେଖା ମହାନଦୀ ଆଉ ସୁନାବ୍ୟା ଅବସ୍ଥାରେ ନ ଥିଲେ ମଧ୍ୟ ଓଡ଼ିଶା ସରକାରଙ୍କ ଦ୍ୱାରା ଆୟୋଜିତ ବୋଇତ ବନ୍ଦାଣ କାର୍ଯ୍ୟକ୍ରମ ବା 'ବାଲିଯାତ୍ରା ମହୋତ୍ସବ' ସେହି ପ୍ରାଚୀନ ଇତିହାସର ସ୍ମରଣ ଓ ଉତ୍କଳୀୟ ପରଂପରା ଓ ସାଂସ୍କୃତିକ ଐତିହ୍ୟକୁ ଯଥାର୍ଥ ସମ୍ମାନ, ଏଥିରେ ସନ୍ଦେହ ନାହିଁ ।

ପ୍ରାକ୍ତନ ପ୍ରାଧ୍ୟାପକ, ଓଡ଼ିଆ ବିଭାଗ
ଚୌଦ୍ୱାର କଲେଜ, କଟକ
ଦୂରଭାଷ- ୯୬୯୨୦୭୫୦୬୫

୦୦



# ଐତିହ୍ୟ ସ୍ମାରକୀ: 'ଆନନ୍ଦ ଭବନ'

❖ ବିଶ୍ୱେଶ୍ୱର ମହାନ୍ତି

ଅଦମ୍ୟ ସାହସୀ ବୈମାନିକ, ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ, ପୂର୍ବତନ କେନ୍ଦ୍ରମନ୍ତ୍ରୀ, ଜାତୀୟ ରାଜନୀତିର ଜଣାଶୁଣା ବ୍ୟକ୍ତିତ୍ୱ ତଥା ଆଧୁନିକ ଓଡ଼ିଶାର ପ୍ରମୁଖ ବିନ୍ଧାଣି ବିଜୁ ପଟ୍ଟନାୟକ, ତାଙ୍କର ସ୍ମୃତିର ଜୀବନ୍ତ ସ୍ମାରକୀ ପାଲଟିଛି ହଜାର ବର୍ଷର ସହର କଟକରେ ଥିବା ତାଙ୍କ ପୈତୃକ ଘର 'ଆନନ୍ଦ ଭବନ' । ଏଠାରେ ପ୍ରତିଷ୍ଠା ହୋଇଛି 'ଆନନ୍ଦ ଭବନ' ସଂଗ୍ରହାଳୟ ଓ ଅଧ୍ୟୟନ କେନ୍ଦ୍ର । ବର୍ତ୍ତମାନ ତଥା ଆଗାମୀ ପିଢ଼ି ପାଇଁ ଏହା ହେବାକୁ ଯାଉଛି ବିଜୁ ପଟ୍ଟନାୟକଙ୍କ ସ୍ୱପ୍ନ ଓ ସଂକଳ୍ପର ଏକ ସ୍ମୃତିଚିହ୍ନ ।

ବିଜୁ ପଟ୍ଟନାୟକ ୧୯୧୬ ମସିହାରେ କଟକରଏହି ସ୍ଥାନରେ ଜନ୍ମଗ୍ରହଣ କରିଥିଲେ । ବାପା ଲକ୍ଷ୍ମୀନାରାୟଣ ଓ ମାଆ ଆଶାଲତା ଦେବୀ ତାଙ୍କର ଅନ୍ୟ ପିଲାମାନଙ୍କ ପରି ବିଜୟାନନ୍ଦଙ୍କୁ ପିଲାବେଳୁ ସ୍ୱାଧୀନ ଚେତା ଭାବେ ଗଢ଼ି ତୋଳିଥିଲେ । ତେବେ ବିଜୁ ପରିବାରର ଆଦର୍ଶ ସହ ନିଜର ସ୍ୱକୀୟ ଗୁଣକୁ ଆଧାର କରି ନିଜ ପାଇଁ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଥିଲେ । ବିଜୟାନନ୍ଦରୁ ସେ ପାଲଟିଥିଲେ ବିଜୁ ପଟ୍ଟନାୟକ । ବିଜୁ ପଟ୍ଟନାୟକ ତାଙ୍କ କୈଶୋର ଓ ଛାତ୍ର ଜୀବନ କଟକରେ କାଟିବା ବେଳେ ଏହି 'ଆନନ୍ଦ ଭବନ' ଥିଲା ତାଙ୍କ ଜୀବନର ବଡ଼ ସାଥୀ । ସେହି ଆନନ୍ଦ ଭବନରେ ଆଜି ସ୍ଥାନ ପାଇଛି ବିଜୁବାବୁ ଓ ତାଙ୍କ ପରିବାର ବ୍ୟବହାର କରୁଥିବା ବିଭିନ୍ନ ସାମଗ୍ରୀ ବିଶେଷକରି ବିଜୁଙ୍କ ବ୍ୟକ୍ତିଗତ ଜିନିଷ । ଏଠାରେ ପ୍ରଦର୍ଶିତ ବିଭିନ୍ନ ଜିନିଷ ଏବଂ ସୂଚନା ମାଧ୍ୟମରେ ଜଣେ ଦର୍ଶକ ବା ପର୍ଯ୍ୟଟକ ବିଜୁବାବୁଙ୍କ ସମ୍ପର୍କରେ ଜାଣିବାପାଇଁ ସୁଯୋଗ ପାଇବ । ତା ସାଙ୍ଗକୁ 'ଆନନ୍ଦ ଭବନ' ସଂଗ୍ରହାଳୟ ଓ ଅଧ୍ୟୟନ କେନ୍ଦ୍ରରେ ଥିବା ନିୟମିତ ପାଠାଗାର ଅନ୍ୟାନ୍ୟ ବିଷୟ ସହିତ ବିଜୁବାବୁଙ୍କ ଜୀବନୀ । ଅଧ୍ୟୟନ ପାଇଁ ଅଧିକ ଖୋରାକ ଯୋଗାଇବା । ଏହି ଆନନ୍ଦ ଭବନରେ ବିଜୁବାବୁଙ୍କ ତିନି ସନ୍ତାନ ପ୍ରେମ, ଗୀତା ଏବଂ ନବୀନ ଜନ୍ମଗ୍ରହଣ କରିଥିଲେ । ବିଜୁବାବୁଙ୍କ ଏହି ସ୍ମୃତିସ୍ଥଳକୁ ଏକ ଜାତୀୟ ସ୍ମାରକୀରେ ପରିଣତ କରିବାପାଇଁ ଚିନ୍ତା କରି ୨୦୦୬ ମସିହାରେ ସଂସ୍କୃତି ବିଭାଗ ପକ୍ଷରୁ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କୁ ଅନୁରୋଧ କରାଯାଇଥିଲା । ତାଙ୍କର ଏହି ପୈତୃକ ସମ୍ପତ୍ତିକୁ ସରକାରଙ୍କୁହସ୍ତାନ୍ତର କଲେ ସେହି ସ୍ଥାନରେ ବିଜୁବାବୁଙ୍କ ନାଁରେ ସଂଗ୍ରହାଳୟ ପ୍ରତିଷ୍ଠାପାଇଁ କଳ୍ପନା କରାଯାଇଥିଲା । ସେହି କଳ୍ପନା ଏବେ ବାସ୍ତବ ରୂପ ନେଇଛି । ସଂସ୍କୃତି ବିଭାଗର ଅନୁରୋଧ ରକ୍ଷା କରି ନବୀନ ବାବୁ ଓ ତାଙ୍କ ପରିବାର ୨୦୧୫ ମସିହାରେ 'ଆନନ୍ଦ ଭବନ'କୁ ରାଜ୍ୟ ସରକାରଙ୍କୁ ଟେକି ଦେଇଥିଲେ । ପୂର୍ତ୍ତ ବିଭାଗ ପକ୍ଷରୁ ଏହାର ଆବଶ୍ୟକ ମରାମତି ଓ ନବୀକରଣ ପରେ ପରେ ଓଡ଼ିଆ ଭାଷା ସାହିତ୍ୟ ଓ ସଂସ୍କୃତି ବିଭାଗ ପକ୍ଷରୁ ଏହି ଦର୍ଶନୀୟ ସ୍ମାରକୀକୁ ପ୍ରସ୍ତୁତ କରାଯାଇଥିଲା ।

କଟକର ତୁଳସୀପୁର ଅଞ୍ଚଳରେ ରହିଛି 'ଆନନ୍ଦ ଭବନ' । ଏହାକୁ ନିର୍ମାଣ କରିଥିଲେ ବିଜୁ ପଟ୍ଟନାୟକଙ୍କ ବାପା ଲକ୍ଷ୍ମୀନାରାୟଣ ପଟ୍ଟନାୟକ । ତେବେ ଆଜି ଆମେ ଯେଉଁ 'ଆନନ୍ଦ ଭବନ' କୋଠା ଦେଖିବାକୁ ପାଉ । ତାହା ୧୯୩୧ ମସିହାରେ ନିର୍ମାଣ ହୋଇଥିଲା । ଏହି ଆନନ୍ଦ ଭବନ ଆଗାମୀ ପିଢ଼ି ପାଇଁ ଏବେ ଏକ ଦର୍ଶନୀୟ ଏବଂ ସ୍ମୃତିପୀଠ ହୋଇଯାଇଛି । ଓଡ଼ିଶା ସଂସ୍କୃତି ବିଭାଗ ପକ୍ଷରୁ ଏହାକୁ ଏକ ଜାତୀୟ ସ୍ତରର ସଂଗ୍ରହାଳୟ ଭାବେ ପ୍ରସ୍ତୁତ କରାଯାଇଛି । ରାଷ୍ଟ୍ରପତି ରାମନାଥ କୋବିନ୍ଦ ଏହାର ଶୁଭ ଉଦ୍‌ଘାଟନ କଲାପରେ 'ଆନନ୍ଦ ଭବନ' ସର୍ବସାଧାରଣଙ୍କ ପାଇଁ ନିୟମିତ ଖୋଲା ରହିଛି । ବର୍ତ୍ତମାନ ଆନନ୍ଦ ଭବନରେ ଚାରୋଟି ବଖରାକୁ ସର୍ବସାଧାରଣଙ୍କ ପରିଦର୍ଶନ ଲାଗି ପ୍ରସ୍ତୁତ କରାଯାଇଛି । ପ୍ରବେଶ ପ୍ରକୋଷ୍ଠରେ ରହିଛି ବିଜୁବାବୁଙ୍କ ବ୍ୟକ୍ତିଗତ ବ୍ୟବହାର୍ଯ୍ୟ ସାମଗ୍ରୀ । ତା' ମଧ୍ୟରେ ରହିଛି ଏୟାରଗନ୍, ଷ୍ଟାମ୍ପ ଷ୍ଟାଣ୍ଡ ଏବଂ

୧୯୯୨ କଳିଙ୍ଗ ବାଲିଯାତ୍ରା ସମୟରେ ସେ ବ୍ୟବହାର କରିଥିବା ବଡ଼ ଟୋପି ବା ହ୍ୟାଟ୍ ଇତ୍ୟାଦି । ଏହି ପ୍ରଥମ ବଖରା ପ୍ରବେଶ କଲା ମାତ୍ରେ ଦର୍ଶକମାନଙ୍କ ଆଖିରେ ପଡ଼ିବ ବିଜୁବାବୁଙ୍କ ଓଡ଼ିଆ ଏବଂ ଇଂଲିସ୍ ଦସ୍ତଖତ । ଏହାକୁ ଏକ ଇଥେଲ ଉପରେ ସଜାଇ ରଖାଯାଇଛି । ସେହିପରି ବିଜୁବାବୁ ବ୍ୟବହାର କରୁଥିବା ଆଲମାରୀ, ହ୍ୟାଟ୍ ଷ୍ଟାଣ୍ଡ ଏବଂ ଲମ୍ବା ଆର୍ମ ଚେୟାର ଏହି ରୁମ୍‌ରେ ସଜା ହୋଇରହିଛି । ତା' ପାଖ ରୁମ୍‌ରେ ସୁନ୍ଦର ଭାବେ ରଖାଯାଇଛି ବିଜୁବାବୁ ବ୍ୟବହାର କରୁଥିବା ଡାଇନିଂ ସେଟ୍ ଏବଂ କଟଲେଟୀ ଷ୍ଟାଣ୍ଡ । ପୁଣି ଗୋଟିଏ କଡ଼ରେ ରହିଛି ଏକ ପୁରୁଣା ଆଲମାରୀ । ଆନନ୍ଦ ଭବନରେ ତୃତୀୟ ବଖରାକୁ ବିଜୁବାବୁ ଶୟନ କକ୍ଷ । ଏଇଠି ରହିଛି ସେ ବ୍ୟବହାର କରୁଥିବା ଖଟ ଓ ଆଲମାରୀ । ବିଜୁ ପଟ୍ଟନାୟକ ଥିଲେ ଜଣେ ମନଯୋଗୀ ପାଠକ । ସେ ତାଙ୍କ ରୁଚିର ଅନେକ ବହି ପଢୁଥିଲେ । ଶୋଇବା ଆଗରୁ ପଢ଼ିବା ତାଙ୍କର ଥିଲା ଏକ ନିଶା । ଏଥିପାଇଁ ତାଙ୍କ ଖଟର ଦିପାଖରେ ରହିଥିଲେ ବୁକ୍ ଟ୍ରେ । ବିଜୁବାବୁ ମନ ହେଲେ ବୁକ୍ ଟ୍ରେରୁ ବହିଟିଏ ଉଠାଇ ଆଣି ପଢ଼ିବାକୁ ବସୁଥିଲେ ।

ଏହି ରୁମ୍‌ରେ ମଧ୍ୟ ରଖାଯାଇଛି ବିଜୁବାବୁ ବ୍ୟବହାର କରୁଥିବା ଇନହେଲର । ସେହିପରି ତାଙ୍କ ପାଇଁ ଶେଷ ସମୟରେ ବ୍ୟବହାର ହେଉଥିବା ଅକସିଜେନ୍ ସିଲିଣ୍ଡର ମଧ୍ୟ ସଂରକ୍ଷିତ କରି ରଖାଯାଇଛି । ବିଜୁପଟ୍ଟନାୟକ ବ୍ୟବହାର କରୁଥିବା ପୋଷାକ ମଧ୍ୟରେ ଫତେଇ ଏବଂ ବ୍ଲେଜର ଏଠାରେ ଟଙ୍ଗା ହୋଇଛି । ସେହିପରି ତାଙ୍କ ପୋଷାକର ଦରଜି ରଖୁଥିବା ମାପ ମଧ୍ୟ ସ୍ଥାନ ପାଇଛି । ଏବେ ଆସିବା ବିଜୁବାବୁଙ୍କ ଡ୍ରଇଁ ରୁମ୍‌କୁ । 'ଆନନ୍ଦ ଭବନ'ରେ ବିଜୁ ସ୍ମାରକୀର ଏହା ଏକ ଅଂଶ । ଏଠାରେ ସଜା ହୋଇରହିଛି ସେ ବ୍ୟବହାର କରୁଥିବା ପେନ୍ ଷ୍ଟାଣ୍ଡ, ଚମଡ଼ା ବ୍ରିଫ୍‌କେସ୍ ଏବଂ ତାଙ୍କ ପରିବାରର ପୁରୁଣା ସୋଫା ସେଟ୍ । ବିଜୁ ପଟ୍ଟନାୟକ ପ୍ରତିଷ୍ଠା କରିଥିଲେ 'କଳିଙ୍ଗ' ଖବର କାଗଜ । ୧୯୬୦ ମସିହା ଅକ୍ଟୋବର ୨ ତାରିଖରେ ଜନ୍ମ ନେଇଥିବା ଏହି ସମ୍ବାଦପତ୍ର ୧୯୭୧ ମସିହା ପର୍ଯ୍ୟନ୍ତ ପ୍ରକାଶ ପାଇଥିଲା । 'ଆନନ୍ଦ ଭବନ' ଥିଲା 'କଳିଙ୍ଗ' ଖବର କାଗଜର ସମ୍ପାଦକୀୟ କାର୍ଯ୍ୟାଳୟ । ବିଶିଷ୍ଟ କବି ଓ ସ୍ୱାଧୀନତା ସଂଗ୍ରାମୀ ମନମୋହନ ମିଶ୍ର ଥିଲେ ଏହାର ପ୍ରଥମ ସମ୍ପାଦକ । ପରେ ବିଶିଷ୍ଟ ଲେଖକ ସୁରେନ୍ଦ୍ର ମହାନ୍ତି ଦୀର୍ଘଦିନ ଧରି ଏହି ଦାୟିତ୍ୱ ତୁଲାଇଥିଲେ । ତେଣୁ ବିଜୁଙ୍କ ଏହି ମାନସସନ୍ତାନ କଳିଙ୍ଗ ସମ୍ବାଦ ପତ୍ରକୁ ତାଙ୍କ ଶୟନ କକ୍ଷରେ ରଖାଯାଇଛି । ସେହି ଅପାସୋରା ସ୍ମୃତିକୁ ତାଜା କରିବା ପାଇଁ ଉଦ୍‌ଘାଟନ ଦିନ ଆନନ୍ଦଭବନ ପ୍ରବେଶ ଦ୍ୱାରର ଡାହାଣ ପାଖ ବାରଣ୍ଡାରେ ସ୍ଥାନ ପାଇଛି 'ପେଜେସ୍ ଫ୍ରମ୍ ଦ ଟଲ ମ୍ୟାନ୍' । ବିଜୁବାବୁଙ୍କ ଜୀବନ ଉପରେ ଆଧାରିତ ସଚିତ୍ର ଇଂଲିସ୍ ପୁସ୍ତକ 'ଦ ଟଲ ମ୍ୟାନ୍ ବିଜୁ ପଟ୍ଟନାୟକ'ର ବିଭିନ୍ନ ପୃଷ୍ଠାରୁ ଏଠାରେ ପ୍ରଦର୍ଶନ କରାଯାଇଛି । ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକଙ୍କ ଜୀବନର ବହୁ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟକୁ ଏହି ପୁସ୍ତକ ମାଧ୍ୟମରେ ଉପସ୍ଥାପନ କରାଯାଇଛି । କିଛିଦିନ ତଳେ ଭୁବନେଶ୍ୱରଠାରେ ଏହାର ଉନ୍ମୋଚନ ଉତ୍ସବ ହୋଇଥିଲା । ସେହିପରି ଆନନ୍ଦଭବନ ପ୍ରବେଶ ଦ୍ୱାରର ବାମ ପାଖ ବାରଣ୍ଡା କଳିଙ୍ଗ ଫାଉଣ୍ଡେସନ୍ ଟ୍ରଷ୍ଟ ପାଇଁ ସଂରକ୍ଷିତ ରଖାଯାଉଛି । ଏଠାରେ ବିଜୁବାବୁ କରିଥିବା ୟୁନେସ୍କୋ କଳିଙ୍ଗ ପୁରସ୍କାର ସମ୍ପର୍କିତ ବିଭିନ୍ନ ବିଷୟ ଓ ଫଟୋ ଚିତ୍ର ସ୍ଥାନ ପାଉଛି । ତା' ମଧ୍ୟରେ ରହିଛି ବିଜ୍ଞାନ ପାଇଁ ବିଶ୍ୱରେ ପରିଚିତ, କଳିଙ୍ଗ ପୁରସ୍କାର ପାଇଥିବା ବିଜେତାମାନଙ୍କ ଫଟୋ ଓ ପ୍ରୋଫାଇଲ ଏବଂ ଟ୍ରଷ୍ଟ ପକ୍ଷରୁ ପ୍ରକାଶିତ ବିଭିନ୍ନ ପୁସ୍ତକ । ସେହିପରି କଳିଙ୍ଗ ଫାଉଣ୍ଡେସନ ଟ୍ରଷ୍ଟର ରେଜିଷ୍ଟ୍ରେସନ ସାର୍ଟିଫିକେଟ ମଧ୍ୟ ଏଠାରେ ସର୍ବସାଧାରଣଙ୍କ ପାଇଁ ପ୍ରଦର୍ଶିତ ହୋଇଛି ।

'ଆନନ୍ଦ ଭବନ'ର ଆଉ ଏକ ଆକର୍ଷଣ ହେଉଛି ଏହାରି ଅଧ୍ୟୟନ କେନ୍ଦ୍ର ବା ପାଠାଗାର । ଆନନ୍ଦ ଭବନର ଉପର ମହଲାରେ ଏଥିପାଇଁ ଦୁଇଟି ପ୍ରକୋଷ୍ଠ ପ୍ରସ୍ତୁତ କରାଯାଇଛି । ଏଠାରେ ବିଜୁବାବୁଙ୍କ ଜୀବନୀ ସମ୍ପର୍କିତ ବିଭିନ୍ନ ପୁସ୍ତକ ସର୍ବସାଧାରଣଙ୍କ ପାଇଁ ଉପଲବ୍ଧ ରହିଛି । ସେହିପରି ଅନ୍ୟ ବିଷୟ ଉପରେ ମଧ୍ୟ ପୁସ୍ତକ ଏହି ପାଠାଗାରର ଆକର୍ଷଣ ହୋଇଛି । ବିଜୁବାବୁ ନିୟମିତ ପଢୁଥିଲେ । ତାଙ୍କ ପଢ଼ିବା କୌଣସି ନିର୍ଦ୍ଦିଷ୍ଟ ବିଷୟ ଉପରେ ସୀମିତ ହୋଇରହିନଥିଲା । ସାହିତ୍ୟଠାରୁ ଆରମ୍ଭକରି ବୈଜ୍ଞାନିକ ଗବେଷଣାର ଉପଲବ୍ଧି । ହାତ ପାଆନ୍ତାରେ ତାଙ୍କୁ ଯେତେବେଳେ ଲୋଭନୀୟ ବହିଟିଏ ମିଳିଯାଉଥିଲା ସେ ତାକୁ ପଢ଼ି ଶେଷ କରିଦେଉଥିଲେ । ବିଜୁବାବୁଙ୍କ ଏହି ପଠନ ଅଭ୍ୟାସକୁ ଆଧାର କରି 'ଆନନ୍ଦ ଭବନ' ପାଠାଗାରର ପରିକଳ୍ପନା କରାଯାଇଛି । ତେଣୁ ଆଗାମୀ ଦିନରେ ଏହା ସାଧାରଣ ପାଠକମାନଙ୍କ ପାଇଁ ଏକ ଆକର୍ଷଣ ହେବ । ଏଠାରେ ଥିବା ଇ-

ଲାଇବ୍ରେରୀ ମଧ୍ୟ ପାଠକମାନଙ୍କ ପାଇଁ ବିଶେଷ ଉପଯୋଗୀ ହୋଇପାରିଛି । କଟକ 'ଆନନ୍ଦ ଭବନ'ର ଆଉ ଏକ ଆକର୍ଷଣ ହେଉଛି ବିଜୁବାବୁଙ୍କ ବିରଳ ଫଟୋଚିତ୍ର । ସଂସ୍କୃତି ବିଭାଗ ଏହି ମର୍ମରେ ଫଟୋଗୁଡ଼ିକୁ ସଜାଇଲା ବେଳେ ଚାରି ଭାଗରେ ବିଭକ୍ତ କରିଛନ୍ତି । ତାହା ହେଉଛି ବ୍ୟକ୍ତିଗତ, ଶିକ୍ଷଭିତ୍ତିକ, ରାଜନୈତିକ ଏବଂ ସାମାଜିକ-ସାଂସ୍କୃତିକ ।

ଏହି ଫଟୋଗୁଡ଼ିକ 'ଆନନ୍ଦ ଭବନ'ର ବିଭିନ୍ନ କୋଠରୀରେ ସ୍ଥାନ ପାଉଛି । ଆରମ୍ଭରୁ କିଛି ଫଟୋକୁ ଇଜେଲ ଉପରେ ସଜାଇ ରଖାଯାଇଛି । ଏହି ଫଟୋଗୁଡ଼ିକ ମଧ୍ୟରେ ରହିଛି ବିଜୁବାବୁଙ୍କ, କର୍ମମୟ ଜୀବନ ସମ୍ପର୍କିତ ଫଟୋ, ତାଙ୍କର ପାରିବାରିକ ଫଟୋ ଏବଂ 'ଆନନ୍ଦ ଭବନ'ରେ ମୂଳରୁ ରହିଥିବା ଅନ୍ୟ ଫଟୋ । 'ଆନନ୍ଦ ଭବନ' ବୁଲି ଆସୁଥିବା ଦର୍ଶକମାନେ ଏହି ଫଟୋଗୁଡ଼ିକ ଭିତରେ ଦେଖିବାକୁ ପାଇବେ ବିଜୁଙ୍କ ପିଲାଦିନ, କଲେଜ ଜୀବନ, ପେସ୍‌ୱାରକୁ ସାଇକେଲ ଯାତ୍ରା, ଦୁଃସାହସିକ ପାଇଲଟ୍ ଜୀବନ, ସ୍ୱାଧୀନତା ସଂଗ୍ରାମ, ଜାତୀୟ ରାଜନୀତିକ ନେତୃତ୍ୱ, ଅନ୍ତର୍ଜାତୀୟ କାର୍ଯ୍ୟକ୍ରମ, ଓଡ଼ିଶାର ଶିଳ୍ପ ଓ ବିକାଶର ନବପର୍ବ ଏବଂ ସାଧାରଣ ଜୀବନ ସହିତ ବିଜୁଙ୍କ ଅସାଧାରଣ ସଂଯୋଗ । ସାଧାରଣତଃ କୌଣସି ସଂଗ୍ରହାଳୟ ପ୍ରସ୍ତୁତି ବେଳେ ଆବଶ୍ୟକତା ଅନୁଯାୟୀ ନିର୍ମାଣ କାର୍ଯ୍ୟ କରାଯାଇଥାଏ । କୌଣସି ପୁରୁଣା କୋଠା ହୋଇଥିଲେ ତାହାର ନବୀକରଣ ବେଳେ ମଧ୍ୟ ଆବଶ୍ୟକ ଅଦଳବଦଳ କରାଯାଇଥାଏ । ତେବେ 'ଆନନ୍ଦ ଭବନ' ଏହି ହେରିଟେଜ୍ ବିଲଡିଂ ହୋଇଥିବାରୁ ଏହାର ମୂଳ ଢ଼ାଞ୍ଚାରେ କୌଣସି ପରିବର୍ତ୍ତନ ନ କରି ଏହାକୁ ଏକ ସଂଗ୍ରହାଳୟରେ ରୂପରେଖ ଦେବାପାଇଁ ବେଶ୍ ସଫଳ ଉଦ୍ୟମ କରିପାରିଛନ୍ତି ଓଡ଼ିଆ ଭାଷା ସାହିତ୍ୟ ଓ ସଂସ୍କୃତି ବିଭାଗ ।

'ଆନନ୍ଦ ଭବନ' ସଂଗ୍ରହାଳୟରେ ରଖାଯାଇଥିବା ବିଜୁବାବୁ ଓ ତାଙ୍କ ପରିବାରର ବ୍ୟବହୃତ ବିଭିନ୍ନ ଜିନିଷ ବିଭିନ୍ନ ସ୍ଥାନ ଓ ସୂତ୍ରରୁ ଅଣାଯାଉଛି । ଆଗାମୀ ଦିନରେ ବିଜୁ ସ୍ମୃତିକୁ ନେଇ ଆଉ ଯାହା ଜିନିଷ ମିଳିବ ତାକୁ ବାଛି ଏଠାରେ ସ୍ଥାନ ଦେବାକୁ ସଂସ୍କୃତି ବିଭାଗ ଚିନ୍ତା କରୁଛି ।

ସାହାପୁର, ମାହାଙ୍ଗା, କଟକ
ଦୂରଭାଷ: ୯୭୭୭୨୩୪୫୩୬

୦୦



# କଟକ ରଙ୍ଗମଞ୍ଚ

❖ ଅଭୟ କୁମାର ଦାସ

ଆଜିର ସିଡ଼ି, ଚଳଚ୍ଚିତ୍ର ଓ ମୋବାଇଲ ଫୋନରେ ସିନେମା ତଥା ମନୋରଞ୍ଜନର ସବୁକିଛି ହାତପାହାନ୍ତାରେ ମିଳିଯାଉଥିବାରୁ ଦିନକୁ ଦିନ ରଙ୍ଗମଞ୍ଚର ରଙ୍ଗ ହଜିବାକୁ ବସିଲାଣି । ଯଦିଓ ଅନେକ କଳାପୃଷ୍ଠପୋଷକ ଓ କଳାପ୍ରେମୀ ଦର୍ଶକ ରହିଛନ୍ତି ଯେଉଁମାନେ କି ଆଜିର ସମୟରେ ବି ରଙ୍ଗମଞ୍ଚର ମହତ୍ତ୍ୱ ବୁଝୁଛନ୍ତି ଓ ଆଦର ମଧ୍ୟ କରୁଛନ୍ତି । ଅନେକ ହୁଏତ ଜାଣିନଥିବେ କଲିକତା ଲାଲବଜାର ମିଶନ ରୋଡରେ ୧୭୫୬ ମସିହାରେ ଭାରତ, ପ୍ରଥମ ରଙ୍ଗମଞ୍ଚ ହୋଇଥିଲା ଯାହାର ନାମ 'ପ୍ଲେ ହାଉସ୍' ରଖାଯାଇଥିଲା । ଯାହାକୁ ସେ ସମୟର ବ୍ରିଟିଶରମାନେ ନିର୍ମାଣ କରିଥିଲେ ଏବଂ କେବଳ ବ୍ରିଟିଶରଙ୍କ ପାଇଁ ଖୋଲା ଯାଇଥିଲା । ୧୭୭୭ ମସିହାରେ ଭାରତୀୟମାନଙ୍କ ଦ୍ୱାରା ପ୍ରଥମ ରଙ୍ଗମଞ୍ଚ କରାଯାଇଥିଲା ଏହାର ନାମ ଥିଲା 'କଲିକତା ଥିଏଟର' । ଏଠାରେ ପରିବେଷଣ କରାଯାଉଥିଲା ବଙ୍ଗଳା, ହିନ୍ଦୀ, ସଂସ୍କୃତ ଓ ଇଂରାଜୀ ଭାଷାରେ ନାଟକ । ତେବେ ଓଡ଼ିଶାରେ ପ୍ରଥମ କରି ଅଭିନୀତ ହୋଇଥିଲା ଜଗମୋହନ ଲାଲାଙ୍କ 'ବାବାଜୀ' ନାଟକ ୧୮୯୪ ମସିହାରେ ତାଙ୍କ ଗ୍ରାମରେ ପ୍ରତିଷ୍ଠିତ 'ରାଧାକାନ୍ତ ରଙ୍ଗମଞ୍ଚ'ରେ । ତେବେ ୧୮୭୮ ଫେବୃୟାରୀ ୨ ତାରିଖ ବସନ୍ତ ପଞ୍ଚମୀରେ ମନମୋହନ ବସୁଙ୍କ ବଙ୍ଗଳା ନାଟକ 'ରାମାଭିଷେକ' ପଥମ ପ୍ରଦର୍ଶନ ହୋଇଥିଲା କଟକରେ । ଏହାପରେ କିଛି ଭ୍ରାମ୍ୟମାଣ ନାଟକ ସଂଗଠନ ଚନ୍ଦନ ପଡ଼ିଆରେ ନାଟକ ପରିବେଷଣ କରିଥିଲେ । ପରେପରେ ଅନ୍ୟାନ୍ୟ ଭ୍ରାମ୍ୟମାଣ ନାଟ୍ୟ ସଂଗଠନ ନିଜର ରଙ୍ଗମଞ୍ଚର ବିଧିବଦ୍ଧ ଭାବେ ବିଭିନ୍ନ ଅଞ୍ଚଳରେ ପ୍ରଦର୍ଶନ କରାଇଥିଲେ । ୧୮୮୧ ଫେବୃୟାରୀ ୭ ତାରିଖରେ ଏକ ଅସ୍ଥାୟୀ ରଙ୍ଗମଞ୍ଚରେ ପ୍ରଦର୍ଶିତ ହୋଇଥିଲା ରାମଶଙ୍କର ରାୟଙ୍କ ପ୍ରଥମ ଓଡ଼ିଆ ନାଟକ 'କାଞ୍ଚି କାବେରୀ' କଟକରେ । ଏହାପରେ ଉତ୍କଳ ଗୌରବ ମଧୁସୂଦନ ଦାସ ତାଙ୍କ ଘର ଆଜିର ଶୈଳବାଳା ମହିଳା ମହାବିଦ୍ୟାଳୟରେ । ୧୮୮୭ରୁ ବଙ୍ଗଳା ଓ ଓଡ଼ିଆ ନାଟକ ମଞ୍ଚସ୍ଥ କରୁଥିଲେ । ୧୮୯୮ ମସିହାରେ ବିନୋଦବିହାରୀଠାରେ 'ବୀଣାପାଣି ଥିଏଟର' ନାମରେ ଏକ ସ୍ଥାୟୀ ରଙ୍ଗମଞ୍ଚ କରାଯାଇ ନାଟକ ହେଉଥିଲା । ୧୯୦୬ ମସିହା ପର୍ଯ୍ୟନ୍ତ । ସେହିପରି ମେହେନ୍ଦିପୁର ଠାରେ ପ୍ରତିଷ୍ଠିତ 'ବାସନ୍ତୀ ରଙ୍ଗମଞ୍ଚ' ଅଭିନୟ କରିଥିଲା ୧୯୧୬ ପର୍ଯ୍ୟନ୍ତ । ୧୯୧୩ ରେ ବାଙ୍କାବଜାର ଠାରେ 'ଉଷା ପେଣ୍ଡାଲ' କରାଯାଇଥିଲା । ସେ ସମୟରେ ବିଶେଷକରି କଟକିଆମାନେ ରଙ୍ଗମଞ୍ଚକୁ ଭାରି ଆଦର କରିବା ସହ ପୃଷ୍ଠପୋଷକତା କରିବା ପାଇଁ ଅନେକ ବଦାନ୍ୟ ବ୍ୟକ୍ତିବିଶେଷ ଆଗେଇ ଆସିଥିଲେ ।

ଏଠାରେ ପାଠକମାନଙ୍କୁ ସ୍ମରଣ କରାଇ ଦେଉଛି ଯେ, ବକ୍ସିବଜାରର ବଢ଼େଇ ସାହିରେ ୧୯୧୯ ମସିହାରେ, 'ବୀଣାପାଣି କ୍ଲବ'ରେ ଓ ୧୯୨୨ ରେ କାଠଗଡ଼ା ସାହିରେ 'ଉମାକାନ୍ତ ସମିତି'ରେ ମଧ୍ୟ ନାଟକ କରାଯାଉଥିଲା । ଏହାପରେ ଓଡ଼ିଆ ନାଟକରେ ପ୍ରବେଶ ହୁଏ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କର । ୧୯୩୯ ମସିହାରେ ସେ 'ଓଡ଼ିଶା ଥିଏଟର' ନିର୍ମାଣ କରି ଓଡ଼ିଆ ନାଟକକୁ ଏକ ନୂତନ ପରିଚୟ ଦେଇଥିଲେ । କବିଚନ୍ଦ୍ର କାଳି ଚରଣ ପଟ୍ଟନାୟକ ହେଉଛନ୍ତି ଓଡ଼ିଆ ରଙ୍ଗମଞ୍ଚର ଅନନ୍ୟ ନାୟକ । ୧୯୪୨ରେ ମାଣିକ ବଜାରରେ ପ୍ରତିଷ୍ଠିତ ହୋଇଥିଲା 'ଭାରତୀ ଥିଏଟର' । ଏହାପରେ ଅନ୍ନପୂର୍ଣ୍ଣା ଥିଏଟର ୧୯୪୩ରେ ପ୍ରତିଷ୍ଠିତ ହୋଇ କିଛିକାଳ ଭଲ ନାଟକ ଅଭିନୟ ପରେ ଦଳ ଦୁଇଭାଗ 'ଏ' ଓ 'ବି'ରେ ବିଭକ୍ତ ହୁଏ । ଏ ଗ୍ରୁପ କଟକରୁ ଉଠିଗଲା କିନ୍ତୁ 'ବି' ଗ୍ରୁପ୍ ଅନେକଦିନ ନାଟକ ମଂଚସ୍ଥ କଲେ । ମାତ୍ର ବହୁ ଅସୁବିଧାରେ ପଡ଼ି ମଂଚଟି ଅଚଳ ହୋଇଗଲା । ବହୁଦିନପରେ କେତେ ଜଣ ସହୃଦୟ କଳାକାର ଓ କଳାପ୍ରେମୀଙ୍କ ସହଯୋଗରେ ମୁଣ୍ଡଟେକି ଛିଡା ହୋଇ ପ୍ରତି ମାସ ୨୯ ତାରିଖରେ ଗୋଟିଏ ଲେଖାଁଏ ନାଟକ ପରିବେଷଣ ହେଉଛି । ୧୯୪୮ ରେ



କଲେଜଛକ ଅଞ୍ଚଳରେ 'ରୂପଶ୍ରୀ ଥିଏଟର' ହୋଇଥିଲା । ୧୯୫୩ ଅକ୍ଟୋବର ୧୬ରେ 'ଜନତା ରଙ୍ଗମଞ୍ଚ' ପୂର୍ବତନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ନେତୃତ୍ୱରେ ପ୍ରତିଷ୍ଠା ହୋଇଥିଲା । ୧୯୬୬ ରେ ଦୋଳମୁଣ୍ଡାଇ ଠାରେ 'କଳାଶ୍ରୀ ଥିଏଟର' ପ୍ରତିଷ୍ଠା କରାଯାଇଥିଲା । ଅନ୍ନପୂର୍ଣ୍ଣା, କଳାଶ୍ରୀ ଥିଏଟର ଓ ଜନତା ରଙ୍ଗମଞ୍ଚ ବହୁବର୍ଷ ଧରି ଚାଲିବା ସହ ବ୍ୟବସାୟିକ ସଫଳତା ପାଇନଥିବାରୁ ଅଚଳ ହୋଇଗଲା । ବସ୍ତୁବାଦୀ ସଂସ୍କୃତି ପ୍ରଭାବରେ କେବଳ ରଙ୍ଗମଞ୍ଚ ନୁହେଁ ପୁରୁଣା ସମୟର କଳାନିପୁଣତାର ଆଦର ପୂର୍ବପରି ଲୋଡା ପଡୁନି । ତଥାପି ଅନେକ କଳାପ୍ରେମୀ ଅଛନ୍ତି ଯେଉଁମାନେ ଏହି ରଙ୍ଗମଞ୍ଚକୁ କେବଳ ଭଲ ପାଆନ୍ତିନି ବରଂ ଅନେକ କଷ୍ଟ ସ୍ୱୀକାର କରି ଏହାକୁ ଦେଖିବା ପାଇଁ ରାତି ରାତି ଉଜାଗର ହୋଇଥାନ୍ତି । ପ୍ରତିବର୍ଷ ଐତିହାସିକ କଟକ ବାଲିଯାତ୍ରା ସଂଧାରେ ଗଣକବି ବୈଷ୍ଣବପାଣି ରଙ୍ଗମଞ୍ଚରେ ମଞ୍ଚସ୍ଥ ହେଉଥିବା ନୃତ୍ୟ ସଂଗୀତ ଓ ଗୀତିନାଟ୍ୟ ଦେଖି ଦର୍ଶକ ମନ୍ତ୍ରମୁଗ୍ଧ ହୁଅନ୍ତି । ଜଣେ କଳାକାର "ଗଣକବି ବୈଷ୍ଣବ ପାଣି"ଙ୍କ ନାମରେ ନାମିତ ମଞ୍ଚରେ ତାର କଳା ପ୍ରଦର୍ଶନ କରିବାକୁ ଧନ୍ୟ ମନେ କରେ । ସବୁଠାରୁ ବଡ଼ ଖୁସିର କଥା ସରକାରଙ୍କ ସଂସ୍କୃତିବିଭାଗ ରଙ୍ଗମଞ୍ଚର ପୁନଃନିର୍ମାଣ ଓ ପୃଷ୍ଠପୋଷକତା ପାଇଁ ଆଗେଇ ଆସିବା ସହ କଳାକାର ଭତ୍ତା ପ୍ରଦାନ କରାଯାଉଛି । ନୂତନ ଭାବେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ବିଭାଗ ତରଫରୁ ''ସାଂସ୍କୃତିକ ଦଳ ପରିଚାଳନା ପଦ୍ଧତି'' (କଲଚରାଲ ଟିମ୍ ମ୍ୟାନେଜ୍‌ମେଣ୍ଟ ସିଷ୍ଟମ) ଯୋଜନା ଜରିଆରେ ଲୋକ ଓ ଆମ ପୁରୁଣା କଳା ସଂସ୍କୃତିକୁ ଉଜ୍ଜୀବିତ କରିବା ପାଇଁ ଜିଲ୍ଲା ସଂସ୍କୃତି ବିଭାଗ ବିଭିନ୍ନ ସାଂସ୍କୃତିକ ଦଳକୁ ସାମର୍ଥ୍ୟ ପରୀକ୍ଷା କରାଇ ପଞ୍ଜିକରଣ କରିଛନ୍ତି ଏହା ମଞ୍ଚ ସୁରକ୍ଷା ପାଇଁ ବିଶେଷ ସହାୟକ ହେବ । ଅନେକ ବର୍ଷିୟାନ କଳାକାର ଅସହାୟ ଅବସ୍ଥାରେ ବା ଉଚ୍ଚ ଚିକିତ୍ସା ନିମିତ୍ତ ସରକାରୀ ସହାୟତା ପାଇବାକୁ ସମର୍ଥ ହେଉଛନ୍ତି । ଉତ୍କୃଷ୍ଟ କଳାର ରାଜ୍ୟ ଉତ୍କଳ ରଙ୍ଗମଞ୍ଚ ଓ କଳା ନିପୁଣତାର ଆଦର ପାଇଁ କେବଳ ସରକାରୀ ବା ସଂଗଠନ ଉପରେ ଦାୟିତ୍ୱ ବା ସମର୍ଥନ ଆଶା କରିବା ପୂର୍ବରୁ ଆମମାନଙ୍କ ଭିତରେ ଏନେଇ ସଚେତନତା ସୃଷ୍ଟି ହୋଇପାରିଲେ, କଳା ବଞ୍ଚେଇବା ପାଇଁ ନିଜେ କିଛି ସହଯୋଗ ରଖିପାରିଲେ, ରଙ୍ଗମଞ୍ଚର ରଙ୍ଗ ନିଶ୍ଚିନ୍ତ ପୁଣି ଚମକିବ ।

ଗୋତରା, ମାହାଙ୍ଗା, କଟକ
ଫୋନ : ୯୪୩୭୧୪୨୭୧୨







# ଗଣ ହୃଦୟର ସମ୍ରାଟ : ଗଣକବି

❖ ରାଜୀବ କୁମାର ଷଡ଼ଙ୍ଗୀ

ଓଡିଆ ଗୀତିନାଟ୍ୟର ଜନକ ଥିଲେ ଗଣକବି ବୈଷ୍ଣବ ପାଣି । କଟକ ଜିଲ୍ଲାର ମାହାଙ୍ଗାର ପୁଣ୍ୟତୋୟା ବିରୂପାନଦୀ କୂଳସ୍ଥ କୋଠପଦା ଗ୍ରାମର ସାଧାରଣ ବ୍ରାହ୍ମଣ ପରିବାରରେ ୧୮୮୨ ମସିହା ଆଶ୍ୱିନ କୁମାରପୂର୍ଣ୍ଣିମା ଦିନ ତାଙ୍କର ଜନ୍ମ । ପିଲାଟି ଦିନରୁ ଦାରିଦ୍ର୍ୟର କଷାଘାତ ଭିତରେ ତାଙ୍କ ଜୀବନର ଗତିପଥ ବଦଳିଯାଇଥିଲା । ତାଙ୍କୁ ପ୍ରଥମେ କୋଠପଦା ମାଇନର ସ୍କୁଲର ଛାତ୍ରାବାସରେ ପୂଝାରୀ ଚାକିରୀ ସହ କୋଠପଦା ରଘୁନାଥଜୀଉ ମଠରେ ଗୋଚାରଣ ନୁର୍ଗ୍ଗାଙ୍ଗ ସେକସନ୍ ଅଫିସରେ ପେଟ୍ରୋଲିଂ ଚାକିରୀ କରିବାକୁ ପଡିଥିଲା । ସେହି ସମୟରେ ସେ କୋଠପଦା ମହନ୍ତଙ୍କ ନାଟ୍ୟଦଳରେ ଯୋଗ ଦେବାଠାରୁ ହିଁ ତାଙ୍କ ପ୍ରତିଭାର ଉନ୍ମେଷ ଘଟିଥିଲା । ୧୯୦୩ ମସିହାରେ ମାତ୍ର ୨୧ ବର୍ଷ ବୟସରେ ମାହାଙ୍ଗା ଥାନା ନିକଟସ୍ଥ କଅଁରପୁରର ଶ୍ରୀ ଶ୍ରୀ ବିନୋଦ ବିହାରୀ ଠାକୁରଙ୍କ ପାଖରେ ଅଧିଆ ପଡି ବର ଲାଭ କଲାପରେ - ମାଳିହତା ଗ୍ରାମର ଶେଷଭାଗରେ ଥିବା ଏକ ଶ୍ମଶାନର କଦମ୍ବଗଛ ମୂଳରେ ବସି ଲେଖନୀ ଚାଳନା କରିଥିଲେ ଗଣକବି ବୈଷ୍ଣବ ପାଣି -

"ବିଂଶବାହୁ ଦେଖି ବଂଶ ନିଧନ କାରଣ,
ମନ୍ତ୍ରୀଙ୍କୁ ଚାହିଁ ରାଜା କରଇ କାରୁଣ୍ୟ,
ମନ୍ତ୍ରୀ ମୋର ସ୍ୱର୍ଣ୍ଣଲଙ୍କା ହେଲା ଛାରଖାର,
କାହୁଁ ଆସି ରଘୁପତି ବିହିଲା ବିପତ୍ତି
କିପରି ମରିବେ ବନରେ ବେନି ଯତି
ନରହୋଇ ନାଶିଲା ମୋ କୁମ୍ଭକର୍ଣ୍ଣଭାଇ ।"

ଏହା ଥିଲା ତାଙ୍କର ପ୍ରଥମ ଲେଖା 'ମେଘନାଦ ବଧ' । ଏହା ମଞ୍ଚସ୍ଥ ହେବା ପରେ ଗୀତିନାଟ୍ୟକାରଙ୍କ ପ୍ରଶଂସା ଶତମୁଖରେ ପ୍ରଶଂସିତ ହେଲା । ତାଙ୍କର ଅମ୍ଳାନ ସୃଜନଶୀଳ ପ୍ରତିଭାର ପରିଚୟ ଧୀରେ ଧୀରେ ଚାରିଆଡେ ବ୍ୟାପିବାକୁ ଲାଗିଲା । ଏଥିରେ ପ୍ରଭାବିତ ହୋଇ ସେ ଲେଖିଲେ ରଙ୍ଗସଭା, ଦାନବୀର, ରାବଣବଧ, ବ୍ରଜଲୀଳା, ପ୍ରହ୍ଲାଦ ଚରିତ୍ର, ଦକ୍ଷଯଜ୍ଞ, ଅମ୍ବୁଜମଣି, ଶ୍ରୀୟାଚଣ୍ଡାଳୁଣୀ, ଯଯାତି କେଶରୀ, ଦାନବୀର ହରିଶ୍ଚନ୍ଦ୍ର, ପର୍ଶୁରାମ ମାତୃହତ୍ୟା ଓ ଗୋବିନ୍ଦ ବିଦ୍ୟାଧର ପରି ଅନେକ ଗୀତିନାଟ୍ୟ ଲେଖା ସହ ଯାତ୍ରାଦଳର ଓସ୍ତାଦି ଏବଂ ଅଭିନୟ ମଧ୍ୟ ଆରମ୍ଭ ହେଲା । ଆନନ୍ଦପୁର ଯାତ୍ରାଦଳ, ଉମରଯାତ୍ରାଦଳ,ଅଡମ ମହିଷପୁର ଯାତ୍ରାଦଳ, ନୂରତାଙ୍ଗ, ଭେଡା ଏବଂ କଲ୍ୟାଣପୁର ଠାରେ ଯାତ୍ରାଦଳମାନ ଗଠନ ସହ ନିର୍ଦ୍ଦେଶକ ଦାୟିତ୍ୱ ଗ୍ରହଣ କରି ବହୁ ଖ୍ୟାତି ଅର୍ଜନ କରିଥିଲେ । ମଫସଲରୁ ସହର-ଜମିଦାରମାନଙ୍କ ମନ୍ଦିର ବେଢାରୁ-ଗଡଜାତ ରାଜାମାନଙ୍କ ରାଜବାଟୀ ଏବଂ କଟକରୁ କଲିକତା ପର୍ଯ୍ୟନ୍ତ ଗଣକବି ବୈଷ୍ଣବ ପାଣିଙ୍କର ଯାତ୍ରାଦଳ ଅଭିନୟ କରିଚାଲିଲା, ସବୁଠାରେ ପ୍ରଶଂସା - ସବୁଥିରେ ଯଶଲାଭ ।

ଓଡିଆ ଗୀତିନାଟ୍ୟକୁ ଏବଂ ରଙ୍ଗମଞ୍ଚକୁ ସମୃଦ୍ଧ ଓ ଲୋକପ୍ରିୟ କରିବାରେ ଗଣକବି ବୈଷ୍ଣବ ପାଣିଙ୍କ ଭୂମିକା ଅତ୍ୟନ୍ତ ଉଲ୍ଲେଖନୀୟ । ପ୍ରଥମକରି ଓଡିଆ ଗୀତିନାଟ୍ୟରେ ଭିନ୍ନ ଭିନ୍ନ ଭୂମିକା ପାଇଁ ସ୍ୱତନ୍ତ୍ର ଭାବରେ ପାତ୍ରପାତ୍ରୀ ବ୍ୟବସ୍ଥା କଲେ । ପାତ୍ରପାତ୍ରୀ ମାନଙ୍କ ପାଇଁ ବିଭିନ୍ନ ଛନ୍ଦରେ ସ୍ୱତନ୍ତ୍ର ସଙ୍ଗୀତ ରଚନା କରିବା ସହ ଚରିତ୍ରମାନଙ୍କ ମୁହଁରେ ପ୍ରଥମ କରି ସଂଳାପ ଦେଲେ । ତାଙ୍କ ସଙ୍ଗୀତ ଗୁଡିକରେ ଭାବକୁ ନେଇ ସ୍ୱର ଏବଂ ଲାଳିତ୍ୟପୂର୍ଣ୍ଣ ଭାଷାର ସଂଯୋଜନା ହୋଇଥିବାରୁ ତାହା ଅତ୍ୟନ୍ତ ହୃଦୟସ୍ପର୍ଶୀ ହୋଇଥାଏ । ସେତେବେଳେ ମୁକ୍ତ ରଙ୍ଗମଞ୍ଚରେ ଆଲୋକର ବ୍ୟବସ୍ଥା ନଥିଲା - ସାମାନ୍ୟ ବାଦ୍ୟଯନ୍ତ୍ରକୁ ସମ୍ବଳ କରି ବିଶାଳ ଦର୍ଶକଙ୍କୁ ଆକୃଷ୍ଟ କରିବାକୁ ହେଲେ ଦର୍ଶକଙ୍କ ରସପିପାସୁ ମନକୁ ବୁଝିବାକୁ ହେବ । ସାଧାରଣ ମଣିଷ ମନ ରସ କଦମ୍ବରେ ସଙ୍ଗୀତ ଓ ସଂଳାପ ମାଧ୍ୟମରେ ଶିହରଣ ସୃଷ୍ଟି କରିବାକୁ ହେବ । ଏବେ ଅତ୍ୟାଧୁନିକ ନାଟକରେ ମଞ୍ଚକୌଶଳ ବହୁଳ ପରିମାଣରେ ବଢିଚାଲିଛି । ଦର୍ଶକର ଚାହିଦାକୁ କେହି ବିଚାରକୁ ନେଉ ନାହାନ୍ତି । କିନ୍ତୁ ବୈଷ୍ଣବ ପାଣି ତାଙ୍କ ଗୀତିନାଟ୍ୟରେ ଦର୍ଶକର ଚାହିଦାକୁ



ବେଶୀ ଗୁରୁତ୍ୱ ଦେଉଥିଲେ । ଗତାନୁଗତିକ ଓଡିଆ ଯାତ୍ରା ସାହତ୍ୟର ମୋଡ ସେ ବଦଳାଇ ଦେଇଥିଲେ । ସେଇଥି ପାଇଁ ସେ ଓଡିଶାର କେବଳ ଗଣକବି ନୁହନ୍ତି ମଞ୍ଚନାଟକ ଓ ଗୀତିନାଟ୍ୟର ପ୍ରବୃଦ୍ଧ ପୁରୁଷ ।

ଯାତ୍ରା ଏବଂ ଗଣନାଟ୍ୟରେ ହାସ୍ୟରସ ପରିବେଷଣ କରିବା ଏକ ଉଲ୍ଲେଖନୀୟ କଳା । ଏଥିପାଇଁ ସେ ବହୁତ ସୁଆଙ୍ଗ ଓ ଫାର୍ଶ ରଚନା କରିଥିଲେ । ଦର୍ଶକମାନଙ୍କୁ ସାରା ରାତି କେବଳ ଅଭିନୟ ମାଧମରେ ବାନ୍ଧିରଖିବା କଷ୍ଟକର ତେଣୁ ନାଟକରେ ସୁଯୋଗ ଦେଖି ହାସ୍ୟରସର ପରିବେଷଣ କରାଯାଉଥିଲା । ବୈଷ୍ଣବ ପାଣି କେବଳ ନିରୁତା ହାସ୍ୟରସ ପରିବେଷଣ କରୁନଥିଲେ ସେଥିରେ ସାମାଜିକ ପରିସ୍ଥିତକୁ ଲକ୍ଷ୍ୟକରି ଅନ୍ତର୍ନିହିତ ବାର୍ତ୍ତା ମଧ ଦେଉଥିଲେ । ଏହା ବ୍ୟତୀତ ସେ ଥିଲେ ନିର୍ଭୀକ ଓ ସ୍ୱାଧୀନଚେତା । ସମାଜରେ ଘଟୁଥିବା ଘଟଣାବଳୀକୁ ମଞ୍ଚରେ ପରିବେଷଣ କରିବାରେ ସେ ଥିଲେ ଓସ୍ତାଦ । ଆଶୁକବି ବୈଷ୍ଣବ ପାଣି ସଙ୍ଗୀତ ମାଧ୍ୟମରେ ହାସ୍ୟରସ ପରିବେଷଣ କରିବାରେ ଶୀର୍ଷସ୍ଥାନ ଅଧିକାର କରିଥିଲେ । ହାସ୍ୟରସ ସହିତ ଶାଣିତ କଟୁକ୍ତି ଓ ସଂସ୍କାରମୁଖୀ ବାର୍ତ୍ତାର ସେ ଥିଲେ ପ୍ରମୁଖ ପ୍ରବର୍ତ୍ତକ :-

"ଛି ଛି ମଦ ପିଇବି ନାହିଁ, କଳାପାଣି ପରି ଦିଶେ
ସେହି କଳାପାଣି ପେଟରେ ପଡିଲେ,ଚଉଦ ଭୁବନ ଦିଶେ ।"

ସେ ସ୍ୱପ୍ନ ବିଳାସୀ କବି କେବଳ ନଥିଲେ, ଥିଲେ ମାଟି ମନସ୍କ । ଚାରିପଟେ ଘଟୁଥିବା ଘଟଣାମାନ ତାଙ୍କୁ ପ୍ରଭାବିତ କରୁଥିଲା । ସେଥିପାଇଁ ତାଙ୍କର ରଚନାରେ ମାଟିର ବାସ୍ନା ମହକିତ ହେଉଥିଲା । ସେ ବାସ୍ତବତାକୁ ଲେଖନୀ ମୁନରେ ରୂପାୟିତ କରିଛନ୍ତି :-

"ଓଡିଶାକୁ ସାରିଦେଲା ବନ୍ଦୋବସ୍ତ
ଗୋଚର,ଅନାବାଦି ହୋଇଲା ଜମାବନ୍ଦି
ପଡିଆଦଣ୍ଡା ତାଡି କଲେ କ୍ଷେତ
ମରିଲେ ଗୋରୁପଲ ହୋଇଣ କଲବଲ
କାହୁଁ ପାଇବେ ଘାସ, ସବୁ ହେଲା ଫସଲ ।"

ଗଣକବି ପାଣି ଥିଲେ ଆଶୁକବି । ଅଧିକାଂଶ ସଙ୍ଗୀତ ବରାଦ ହେବାମାତ୍ରେ ସେ ତତ୍‌କ୍ଷଣାତ୍ ରଚନା କରୁଥିଲେ ଏବଂ ରଙ୍ଗମଞ୍ଚରେ ପରିବେଷଣ କରୁଥିଲେ । ସାଧାରଣଲୋକଙ୍କର ସ୍ୱାସ୍ଥ୍ୟ,ଶିକ୍ଷା,ସଂସ୍କାର,ବାଲ୍ୟବିବାହ,ନାରୀଶିକ୍ଷା ଇତ୍ୟାଦି ସଂପର୍କରେ ବହୁ ଉପାଦେୟ କବିତା ସେ ରଚନା କରିଛନ୍ତି ।

ଯଥାର୍ଥରେ ସେ ଗଣକବି ଥିଲେ । ଗଣ ହୃଦୟର ରସ ପିପାସା ସହିତ ସେ ଆତ୍ମିକ ଭାବରେ ଯୋଡି ହୋଇଯାଇଥିଲେ । ଯେଉଁ ଜୀବନର ରୂପ ଗଣଜୀବନରେ ପ୍ରତିଫଳିତ ହୋଇପାରେ – ତାହା ହିଁ ଗଣ ସାହିତ୍ୟ । ସରଳ ଲଳିତ ବୋଧଗମ୍ୟ ଭାଷାରେ ସମୟପୋଯାଗୀ ଶିକ୍ଷାପ୍ରଦ ଘଟଣାକୁ ନେଇ ସମାଜର ବିଭିନ୍ନ ରୁଚି ଅନୁସାରେ ଯେଉଁ ମର୍ମସ୍ପର୍ଶୀ ନାଟ୍ୟର ସ୍ୱର ଝଙ୍କୃତ ହୋଇ ଉଠିଲା ତାହା ହିଁ ଏହି ଅସାଧାରଣ ବ୍ୟକ୍ତିତ୍ୱର ପରିଚୟ । ତାଙ୍କ ଲେଖନୀ ସେଥିପାଇଁ ଶିକ୍ଷିତ ଆତ୍ମଭିମାନୀ ଓଡିଆ ଠାରେ ସୀମିତ ହୋଇ ରହିଯାଇନଥିଲା । ଆବାଳ ବୃଦ୍ଧବନିତା "ବିଲେ ବୋଲେ ଚଷା,ଅନ୍ତଃପୁରେ ଯୋଷା" ପରି ତାଙ୍କ ସାହିତ୍ୟ ବିଦଗ୍ଧ ପଣ୍ଡିତ ଠାରୁ ଅକ୍ଷର ବିବର୍ଜିତ ସାଧାରଣ ଜନତା ପର୍ଯ୍ୟନ୍ତ ଥିଲା ବିସ୍ତୃତ । ତାଙ୍କ ସାହିତ୍ୟ ଉପେନ୍ଦ୍ର-ଅଭିମନ୍ୟୁ – କବିସୂର୍ଯ୍ୟଙ୍କ ପରି ଦରବାରୀ ମଞ୍ଚରୁ ଓହ୍ଲାଇଯାଇ ପୁରପଲ୍ଲୀରେ ବ୍ୟାପିଯାଇଥିଲା ।

ଗଣକବି ପାଣି ସାହିତ୍ୟ ସର୍ଜନା ଭିତରେ ରହି ଦେଶ ଓ ଜାତି ପାଇଁ ମଧ ତାଙ୍କ ସଂଗ୍ରାମ ଅବ୍ୟାହତ ରଖିଥିଲେ ।୧୯୩୪ ମସିହାରେ ଜାତିର ଜନକ ମହାତ୍ମା ଗାନ୍ଧୀ ଓଡିଶା ଆସିବା ସମୟରେ ବୈରୀ ରେଲ ଷ୍ଟେସନରୁ ଓହ୍ଲାଇ ଛତିଆ, ଚମ୍ପାପୁର, ଭେଡା ଓ ଲେଖନପୁର ଠାରେ ସାଧାରଣ ସଭା କରିବା ସହ ରାତ୍ରି ଯାପନ କରିଥିଲେ । ଗଣକବି କେବଳ ଗାନ୍ଧିଜୀଙ୍କର ଦର୍ଶନ ଲାଭ କରିଥିଲେ ତାହା ନୁହେଁ ବରଂ ସେ ବହୁ ଭାବରେ ତାଙ୍କ ବାଣୀରେ ପ୍ରଭାବିତ ହୋଇଥିଲେ । ମାତୃଭୂମି ଓ ମାତୃଭାଷା ପାଇଁ ବୈଷ୍ଣବ ପାଣିଙ୍କ ହୃଦୟରେ ମମତାର ସ୍ରୋତ ପ୍ରବାହିତ ହୋଇଥିଲା । ଜନ୍ମଭୂମିର ପରାଧୀନତା ପାଇଁ ତାଙ୍କ ପ୍ରାଣରେ ଅବ୍ୟକ୍ତ ବେଦନା ସୃଷ୍ଟି ହୋଇଥିଲା । ଜାତୀୟ ଚେତନାରେ ପ୍ରଭାବିତ ହୋଇ ସେ ଗାଇଥିଲେ:-

"ଭାରତ ବୀରେ ବିରତ ନୁହଁ, ତୁରିତେ ଭିଡ ଅଣ୍ଟା
ଚିରତ ନୁହଁ କାହାର ଏ ଦେହ, ବଜାଅ ବିଜୟ ଘଣ୍ଟା ।
ବର୍ଜନ କର ପ୍ରାଣ ମମତା, ଅର୍ଜନ କର ଯଶ
ଅହିଂସାର ଏ ଗର୍ଜନ ଶୁଣ, କମ୍ପାଏ ଦଶ ଦିଶ ।"

ତାଙ୍କ ଜାତୀୟତା ବୋଧକ ଭାବନାର ପ୍ରମାଣ ପ୍ରତ୍ୟେକ ରଚନାରେ ପରିଲିକ୍ଷିତ ହୁଏ । ଯେପରି ସେ ଇଂରେଜ ସରକାରକୁ ସମାଲୋଚନା କରି ଲେଖିଥିଲେ :-

"ପୋଡି ଯାଉରେ ଇଂରେଜ ଅମଳ





ହରି ନେଇଗଲା ଦେଶୁ ଟଙ୍କା ସୁନା,

ଦେହରୁ ହରିଲା ଆମରି ବଳ ।"

ପାଣିଙ୍କ ଲେଖାରେ ଅସହଯୋଗ ଆନ୍ଦୋଳନ, ଲବଣ ସତ୍ୟାଗ୍ରହ, ଭାରତଛାଡ ଆନ୍ଦୋଳନ ତଥା ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ସ୍ପଷ୍ଟ ଭାବରେ ପ୍ରତୀୟମାନ ହୁଏ । 'ଭାରତମାତାର ଶୋକ', 'ଗାନ୍ଧୀ ଭାଗବତ', 'ମୂଲିଆ ପୁଅ' ପରି ଖଣ୍ଡ କାବ୍ୟ ଗୁଡିକରେ ତାଙ୍କର ଜାତୀୟତାର ବାଣୀ ସହଜରେ ଅନୁଭବ କରିହୁଏ ।

ନଦୀ,ନାରୀ ଓ ନିଳାଦ୍ରୀବିହାରୀ ଗଣକବି ବୈଷ୍ଣବ ପାଣିଙ୍କୁ ଆତ୍ମବିଭୋର କରିଥିଲେ । କବିଙ୍କର ସମସ୍ତ ଗୀତିନାଟ୍ୟ,ସଙ୍ଗୀତ ଓ ଭଜନରେ ଏହି ଭାବ ପ୍ରତିଫଳିତ । ଦୁଃଖ ଓ ଦାରିଦ୍ର୍ୟ ଭିତରେ ମଧ୍ୟ ସେ ବାଣୀସେବା କରିବାକୁ କେବେ ଭୁଲିନାହାନ୍ତି । ନିଷ୍ଠାପର ଓ ନିଶ୍ଚଳ ସାଧକ ଭାବରେ ତାଙ୍କର ସାଧନା ସେ ଅବ୍ୟାହତ ରଖିଛନ୍ତି । ତାଙ୍କର ଅଭିମାନକୁ ପ୍ରକଟ କରି ସେ ଲେଖିଛନ୍ତି-

"ଶତଶତ ଗ୍ରନ୍ଥ ତୋହରି ଉତ୍କଳ ଭାଷାରେ କରି ତିଆରି

ଅଭାବଅଭାବ ସଦା ଭାବି ଭାବି ଜୀବନଯାଏ ବାହାରି ।

ମହାପ୍ରଭୁ ହେ-

ବିରୂପା କୂଳରେ ବସିବସି ଆସି ବିରୂପ ହେଲିଣି ମୁହିଁ

ଦାନାକନା ଛାଡି ସକଳ ଦେଇଛ ନଦେଖନ୍ତି ଏହା କେହି । କିମ୍ବା

ପାଣିର ଗୁହାରି ପାଣିରେ ଭାସୁଛି ବାଣୀ ସେବା କରିକରି

ପାଶୋରି ନଦିଅ କିଶୋରୀ-ବଲ୍ଲଭ ଜୟ ନିଳାଦ୍ରୀ କେଶରୀ ।"

ପାଣି ଥିଲେ ପ୍ରଚଣ୍ଡ ସ୍ୱାଭିମାନୀ । ତାଙ୍କ ଦୁଃଖ ସାଧାରଣରେ ପ୍ରକାଶ କରୁନଥିଲେ । ଯାହା ତାଙ୍କ ହୃଦୟକୁ ଆନ୍ଦୋଳିତ କରୁଥିଲା, ତାହା ତାଙ୍କ ଲେଖନୀରେ ସ୍ପଷ୍ଟ ଉଚ୍ଚାରିତ ହେଉଥିଲା । ଅପ୍ରକାଶିତ ଭାବନାକୁ ପ୍ରକାଶ କରିବାକୁ ଯାଇ ସେ ଲେଖିଛନ୍ତି-

"ମହାନଦୀ କନ୍ୟା ସୁନ୍ଦରୀ ବିରୂପା

ତୋ ନୀରୁ ମୋ ନୀର ନୟନୁ ଅଧିକା ।"

ଜଗନ୍ନାଥ ଜଣାଣ,ଶ୍ରୀ ନୀଳାଚଳ ଭଜନ ଓ ଭାଗବତ ଭଜନ ମାଳା ରଚନା ପ୍ରଭୁଙ୍କ ଉଦେଶ୍ୟରେ ଉତ୍ସର୍ଗ କରିଛନ୍ତି । ରୋଗ ଶଯ୍ୟାରେ ପଡି ଯନ୍ତ୍ରଣା ଜର୍ଜରିତ କଣ୍ଠରେ କବି ଦୁଃଖକୁ ନିବେଦ୍ୟ କରିବାକୁ ଯାଇ ଗାଇଛନ୍ତି :-

"ଛାଡ ମାଡଖିଆ ବୁଦ୍ଧିହେ ବଡ ଦେଉଳେ ବଡ ଗୋସାଇଁ,

ଯେ ମାଇଲା ମାଡ ସେ ହୋଇଲା ବଡ-ବାଡ ହେଲୁ ତାକୁ ତୁହି ।

ମାଡୁଆ ମୋହନ, ମାଡ ବିନୁ ଆନ ଗତି ତୋ କପାଳେ ନାହିଁ

ବଇଷ୍ଣବ ଭକ୍ତି କଡିଆ ଧରିଛି କରେ ଲଗାଇବା ପାଇଁ ।"

ଗଣକବିଙ୍କର ଭାଷା ଏବଂ ସ୍ୱର ଓଡିଆ ସଙ୍ଗୀତରେ ଅପୂର୍ବ ମାୟା ସୃଷ୍ଟି କରିଛି । ଯମକ ଓ ଅନୁପ୍ରାସ ଏହାକୁ ଅଧିକ ବର୍ଣ୍ଣାଢ୍ୟ କରିଛି । ତାଙ୍କର ଅସଂଖ୍ୟ ସଙ୍ଗୀତ, ଭଜନ, ଜଣାଣ ଏବଂ ଗୀତିନାଟ୍ୟ କବିତ୍ୱ, ଭକ୍ତି ଓ ଜାତୀୟତାର ସମନ୍ୱୟରେ ସାରସ୍ୱତ କୁଞ୍ଜକୁ ଅପୂର୍ବ ମୂର୍ଚ୍ଛନାରେ ମୁଖରିତ କରିଛି ।

"ଯାହା କରିଗଲେ ତୋତେ ଭାବିବ ଦୁନିଁଆ ତାହା ଯାଉଥା କରି

ମରିଯିବୁ ଯେବେ କାନ୍ଦିବେ ସରବେ ନୟନୁ ବୁହାଇ ବାରି ।

**ରାମକୃଷ୍ଣପୁର, ରାମେଶ୍ୱର, କଟକ-୭୫୪୨୦୧**

**ଦୂରଭାଷ-୯୪୩୯୭୩୫୩୧୧**

୦୦



# ସଂଗୀତ ଯେଉଁଠି ଜୀବନ

❖ ଡକ୍ଟର ସୁନାମଣି ରାଉତ

ଓଡ଼ିଆ ସଂଗୀତ ଜଗତର ବାଦ୍‌ଶାହ, ଭଜନର କିମ୍ବଦନ୍ତୀ ପୁରୁଷ, ଭକ୍ତକଣ୍ଠ, ଶ୍ରୀଛାମୁସୁରସେବକ, ଭିକାରୀ ବଳ ଏକ ସମ୍ଭ୍ରାନ୍ତ ଉଚ୍ଚାରଣ । ତାଙ୍କ ଅବର୍ତ୍ତମାନରେ ତାଙ୍କର ସ୍ୱର ଓ ସାଧନା ଆମ ସମସ୍ତଙ୍କ ମନରେ ମହାର୍ଘ ମହାର୍ଦ ପରି ମହକୁ ଅଛି ଓ ମହକୁଥିବ ଚିରକାଳ ! ଭିକାରୀ ବଳ ଜଣେ ସାଧାରଣ ମଣିଷ ନଥିଲେ, ଥିଲେ ଅନନ୍ୟ ଓ ଅସାଧାରଣ । ପ୍ରତ୍ୟେକ ଲୋକଙ୍କ ହୃଦୟକୁ ସେ ଜୟ କରିଥିଲେ ଗୀତରେ । 'ପ୍ରାଣୀର ଭଲମନ୍ଦ ବାଣୀ, ମରଣ କାଳେ ତାହା ଜାଣି' ଯଦି ବ୍ୟକ୍ତି ଜୀବନର ମାପକାଠି ହୁଏ, ତେବେ ଭିକାରୀ ବଳ ଯେ ଜଣେ ବହୁତ ଭଲ ମଣିଷ ଥିଲେ ତାହା ତାଙ୍କର ମହାପ୍ରୟାଣରେ ପ୍ରମାଣିତ ହୋଇଛି ୨୦୧୦ ମସିହାରେ । ଯେଉଁମାନେ ସେଦିନର ଘଟଣାକୁ ପ୍ରତ୍ୟକ୍ଷରେ ହେଉ ବା ଗଣ ମାଧ୍ୟମ ଜରିଆରେ ହେଉ ଦେଖିଛନ୍ତି ସେମାନଙ୍କୁ ଆଉ ବୁଝାଇ କହିବା ବୋଧହୁଏ ଆବଶ୍ୟକ ନାହିଁ ।

ମହାତ୍ମାଗାନ୍ଧୀ କହିଥିଲେ- "ମୋ' ଜୀବନ ହିଁ ମୋର ବାର୍ତ୍ତା ।" ସତ୍ୟ ଅହିଂସା ପ୍ରେମ ଉପରେ ଆଧାରିତ ମହାତ୍ମାଗାନ୍ଧୀଙ୍କ ଜୀବନ ହିଁ ଥିଲା ବିଶ୍ୱବାସୀଙ୍କ ପାଇଁ ପ୍ରେରଣାର ଉତ୍ସ । ସେହିପରି ଭିକାରୀ ବଳଙ୍କ ଜୀବନ ହିଁ ଥିଲା ତାଙ୍କର ସଂଗୀତ ଅର୍ଥାତ୍ ଜୀବନକାଳ ମଧ୍ୟରେ ସେ ଯେଉଁସବୁ ପରିସ୍ଥିତି, ପରିବେଶ, ବ୍ୟକ୍ତି ଓ ସମାଜକୁ ସମ୍ମୁଖୀନ ହୋଇଥିଲେ ଓ ହେବାକୁ ଅପେକ୍ଷା ରଖିଥିଲେ, ସେସବୁ ତାଙ୍କର ସଂଗୀତରେ ହିଁ ପ୍ରତିଫଳିତ ହୋଇଛି । ଗୀତଟି ଗାଇବା ପୂର୍ବରୁ ସେ ତା'ର ଭାବ, ଭାଷା ଓ ବାକ୍ୟ ବିନ୍ୟାସ ପ୍ରତି ଅଧିକ ଗୁରୁତ୍ୱ ଦେଉଥିଲେ । ସେଥିପାଇଁ ତାହା ଶ୍ରୋତାମାନଙ୍କର ଖୁବ୍ ଆକର୍ଷଣୀୟ ଓ ହୃଦୟସ୍ପର୍ଶୀ ହୋଇପାରିଛି ।

ବନମାଳୀ, ଗୋପାଳକୃଷ୍ଣ, ସାଲବେଗ, ସାରିଆଭିକଙ୍କ ପରି ପ୍ରାଚୀନ ଗୀତିକାର ମାନଙ୍କ ଗୀତ ସହିତ ଦିବ୍ୟସିଂହଦେବ, ବୀରେନ୍ଦ୍ର ଭୂୟାଁ, କ୍ଷୀରୋଦ ଚନ୍ଦ୍ର ପୋଥାଳ, ଗୌରହରି ଦଳାଇ, ଗୌର ପଟ୍ଟନାୟକ, ପ୍ରସନ୍ନ ସାମଲ, ରଘୁନାଥ ରାଉତ, ରାଧାନାଥ ଦାସ, ନନ୍ଦକିଶୋର ସିଂ ପ୍ରମୁଖଙ୍କ ଗୀତ ସେ ତାଙ୍କର ସ୍ୱଭାବ ସୁଲଭ ସ୍ୱରରେ ଗାଇ ଲୋକପ୍ରିୟତାର ଶୀର୍ଷରେ ପହଞ୍ଚିପାରିଛନ୍ତି । ଏହିସବୁ ଗୀତିକାର ଗୀତରେ ସତେ ଯେମିତି ଭିକାରୀ ବଳଙ୍କ ଜୀବନର ନିଛକ ଛବି ଅବଧାରିତ ହୋଇରହିଥିଲା । ଆବଶ୍ୟକ ସ୍ଥଳେ ସେ ମୂଳଗୀତ ସଂଶୋଧନ କରି ମଧ୍ୟ ଗାୟନ କରିଛନ୍ତି । ସେଥିପାଇଁ ଗୀତଗୁଡ଼ିକ ଖୁବ୍ ବାସ୍ତବ ଓ ଜୀବନଧର୍ମୀ ହୋଇପାରିଛି ।

ଭିକାରୀ ବଳ ଥିଲେ ନିର୍ଲୋଭ ଓ ନିଷ୍କାମ ମଣିଷ । ଧନ ସମ୍ପତ୍ତି ପ୍ରତି ତାଙ୍କର ତଳେ ହେଲେ ଲୋଭ ନଥିଲା । ଏପରିକି ସେ ନିଜ ଗାଁ ସୋବଳାରେ ସମସ୍ତ ସମ୍ପତ୍ତି ନିଜ ବଡ଼ଭାଇଙ୍କୁ ଛାଡ଼ିଦେଇ କଟକ ଚାଲି ଆସିଥିଲେ । ଯୋଗ ଦେଖନ୍ତୁ, ତାଙ୍କ ବଡ଼ଭାଇଙ୍କ ନାଆଁ 'ଧନୀ' (ଧନେଶ୍ୱର ବଳ) ହୋଇଥିବା ବେଳେ ତାଙ୍କର ନାଆଁ ଥିଲା 'ଭିକାରୀ' । ଜୀବନସାରା ସେ କେବଳ ଜଗନ୍ନାଥଙ୍କୁ ଡାକିଛନ୍ତି ହେଲେ କିଛି ମାଗିନାହାନ୍ତି । ତାଙ୍କରି କଣ୍ଠରେ ତାହାହିଁ ପ୍ରତିଫଳିତ ହୋଇଛି-

"ଜଗନ୍ନାଥ ହୋ କିଛି ମାଗୁନାହିଁ ତତେ
ଧନ ମାଗୁନାହିଁ ଜନ ମାଗୁନାହିଁ
ମାଗୁଛି ଶରଧା ବାଲିରୁ ହାତେ ।"

କିମ୍ବା

"କହିଛି ଜଣକୁ ଦୁଃଖ ଶୁଣିଲେ ଶୁଣିବ
କରିଛି ଗୁହାରି ପାଦେ ରଖିଲେ ରଖିବ
କରୁନି ମୁଁ ଅଳି... କରୁନି ମୁଁ ଅଳି...
କୁବେର ସମ୍ପଦ ପ୍ରଭୁ ଦିଅ ମତେ ଢାଳି ।।''

ସାରା ଜୀବନ ଶ୍ରୀଜଗନ୍ନାଥଙ୍କ ଭଜନ ଗାଇ ସେ ଯାହା ପାରିଶ୍ରମିକ ଅର୍ଜନ କରିଥିଲେ ମୋ' ଜାଣିବାରେ ସେଥିରୁ ସେ ପୁରୀ ଜଗନ୍ନାଥ ମନ୍ଦିରକୁ ଏକ ଲକ୍ଷ ଟଙ୍କା, ନିଜ ଗାଁ ସୋବଳା





ମନ୍ଦିର ନିର୍ମାଣ ପାଇଁ ଦେଢ଼ଲକ୍ଷ ଟଙ୍କା, ଉତ୍କଳ ସାହିତ୍ୟ ସମାଜକୁ ପଚିଶ ହଜାର ଟଙ୍କା, ଢେଙ୍କାନାଳର ଏକ ଅନୁଷ୍ଠାନକୁ ଦଶହଜାର ଟଙ୍କା – ଏହିପରି କେତେକ ଅନୁଷ୍ଠାନ ଓ ଦୁଃଖୀରଙ୍କୁ ସେ ଆର୍ଥିକ ସହାୟତା କରି ନିଜ ମହାନୁଭବତାର ପରିଚୟ ଦେଇଯାଇଛନ୍ତି ।

ସ୍ୱର୍ଗତ ବଳ ଥିଲେ ଜଗନ୍ନାଥ ପ୍ରାଣ । ପ୍ରତ୍ୟେକ କାର୍ଯ୍ୟ ଓ କଥାରେ ସେ ଜଗନ୍ନାଥଙ୍କୁ ସ୍ମରଣ କରୁଥିଲେ । ଏପରିକି ଜୀବନର ଶେଷ ଭାଗରେ ସେ ଶଯ୍ୟାଶାୟୀ ହୋଇ ମଧ୍ୟ କେବଳ 'ଜୟ ଜଗନ୍ନାଥ, ଜୟ ଜଗନ୍ନାଥ' ଉଚ୍ଚାରଣ କରୁଥିଲେ । ତାଙ୍କ ଗୀତରେ ସେ ସେଇକଥା ଗାଇଛନ୍ତି ।

''ଦୀନବନ୍ଧୁ ଏଇ ଅଳି ଶ୍ରୀଛାମୁରେ
ଶ୍ରୀରଙ୍ଗା ଚରଣ ସେବାରେ ମୋ' ମନ
ରହିଥାଉ ନିରନ୍ତରେ ।''

- ଅଥବା -

''କଂସାଥାଳି ମୋର ବଂଧା ପଡୁ ପଛେ
ଯିବି ମୁଁ ପୁରୁଷୋତ୍ତମ
ଅସରାବାଟ ମୋ' ସରିସରି ଯିବ
ଭଜି ଭଜି ଜଗନ୍ନାଥ ନାମ ।''

ଜୀବନରେ ଅସୁମାରି ଦୁଃଖ ଯନ୍ତ୍ରଣା ଓ ସମସ୍ୟାର ସମ୍ମୁଖୀନ ହୋଇ ମଧ୍ୟ ସେ ଜଗନ୍ନାଥଙ୍କୁ ଭୁଲିଯାଇନାହାନ୍ତି । ଦାସ୍ୟ ଭାବରେ ସେ ଜଗନ୍ନାଥଙ୍କୁ ନିଜର ଗୁହାରି ଜଣାଇଛନ୍ତି । ପ୍ରଭୁ ହୋଇ ତାଙ୍କର ଭୃତ୍ୟକୁ ଏତେ ଦୁଃଖ କାହିଁକି ଦେଉଛନ୍ତି ବୋଲି ସେ ଅଭିମାନ ଭରା କଣ୍ଠରେ ଗାଇଛନ୍ତି–

''ଦୁନିଆରେ ଯେବେ ଦିନପରେ ରାତି
ରାତି ପରେ ଦିନ ସତ
ମୋ' ରାତି ଏମିତି ଅସରା କେମିତି
କୁହ ପ୍ରଭୁ ଜଗନ୍ନାଥ ?''

- ଅଥବା -

''ଶ୍ରୀମନ୍ଦିର ଯାଇ ଶ୍ରୀଜଗନ୍ନାଥଙ୍କୁ
ମାଗିବି କିଅବା ଆଉ
ମୋ' ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ ।''

ଭିକାରୀ ବଳଙ୍କ ଜୀବନରେ ଦୁଃଖରାତି ଥିଲା ଅସରା । ପିଲାଟି ଦିନରୁ ସେ ନିଜର ପିତାମାତାଙ୍କୁ ହରାଇ ଦୁଃଖ ଦାରିଦ୍ର୍ୟ ସହ ସଂଘର୍ଷ କରି ବଂଚିବାର ମାଧ୍ୟମ ଖୋଜିଥିଲେ ।

ସଂଗୀତକୁ ବୃତ୍ତିକରି ସେ ନିଜର ସଂସାର ଚଳାଉଥିଲେ ଜୀବନ ଯୁଦ୍ଧରେ ସେ ବହୁବାର କ୍ଷତାକ୍ତ ହୋଇ ମଧ୍ୟ ଆଗକୁ ମାଡ଼ିଚାଲିଥିଲେ । ମାତ୍ର ମୃତ୍ୟୁର ଚାରିବର୍ଷ ପୂର୍ବରୁ ରୋଗଶଯ୍ୟାରେ ପଡ଼ି ସେ ସଂଗୀତ ଗାନରୁ ବିରତ ହୋଇଥିଲେ । ୨୦୦୬ ମସିହା ମେ ୧୪ ତାରିଖ ଥିଲା ତାଙ୍କର ଶେଷ ସଂଗୀତ କାର୍ଯ୍ୟକ୍ରମ । ବୋଧହୁଏ ସେଇଥିପାଇଁ ସେ ପୂର୍ବରୁ ଅଭିମାନ ଭରା ସ୍ୱରରେ ଗାଇଥିଲେ–

''କାଳିଆ ସାଆନ୍ତେ ହୋ
ଏକି କଲ ପ୍ରଭୁ ଏକି କଲ
ଭିକ ଦେଲ ନାହିଁ ଥାଳ ଭାଙ୍ଗି ଦେଇ
କଲ ମତେ ସାତ ପର ।''

ଏହିପରି ଅନେକ ଭଜନରେ ତାଙ୍କ ଜୀବନର ଦୁଃଖ, ଦାରିଦ୍ର୍ୟ, ଅଭାବ ଅସୁବିଧା ଓ ଅସହାୟତା ପ୍ରକଟିତ ହୋଇଛି । କେତେବେଳେ ଜଗନ୍ନାଥଙ୍କୁ ପ୍ରଭୁ ଭାବରେ ତ ପୁଣି କେତେବେଳେ ବଂଧୁ ଭାବରେ ସେ ନିଜର ଦୁଃଖ ସବୁକୁ ସଂଗୀତ ମାଧ୍ୟମରେ ଜଣାଇ ଆଶ୍ୱସ୍ତ ହୋଇଛନ୍ତି । ସତେ ଯେମିତି ତାଙ୍କ ଜୀବନର ଚିତ୍ର ତାଙ୍କ ସଂଗୀତ ଭିତରେ ପ୍ରତିଫଳିତ ହୋଇ ଏକ ବୃହତ୍ତର ସମାଜକୁ ଉଦ୍‌ବୁଦ୍ଧ କରିଥିଲା ।

କେବଳ ଭଜନ ଓ ଜଣାଣରେ ନୁହେଁ ସେ ଗାଇଥିବା ଅନେକ ପଲ୍ଲୀ ଓ ଆଧୁନିକ ଗୀତରେ ମଧ୍ୟ ତାଙ୍କ ଜୀବନର ଚଟୁଳ ରସିକ ପଣ ଓ ବାସ୍ତବତା ପ୍ରକଟିତ ହୋଇଥିଲା । ତାଙ୍କ କଣ୍ଠ ନିଃସୃତ ଗୋଟିଏ ଲୋକପ୍ରିୟ ପଲ୍ଲୀଗୀତ ହେଉଛି–

''କଳସ ଉପରେ ଆମ୍ବ ଡାଳିଆ
ଗୋରୀ କନିଆଁକୁ ବର କାଳିଆ
ଗାଁ ଝିଅମାନେ ଆଖି ଠରାଠରି
କରାଣ୍ଡି ପକାଇ ନେଲା ବାଳିଆ ।''

ପାଠକେ ଜାଣନ୍ତି ଶ୍ରୀଯୁକ୍ତ ବଳଙ୍କ ଦେହର ରଂଗ କଳା ହୋଇଥିବା ବେଳେ ତାଙ୍କ ଧର୍ମପତ୍ନୀ ଉଷାରାଣୀଙ୍କ ବର୍ଣ୍ଣ ଗୋରା । ତେଣୁ ଏ ଗୀତରେ ତାଙ୍କ ଦାମ୍ପତ୍ୟ ଜୀବନର ଚଟୁଳତା ପ୍ରକାଶ ପାଇଚି । ସେହିପରି ତାଙ୍କର ଅନ୍ୟ ଗୋଟିଏ ଗୀତ ହେଉଛି–

''ଦାନ କିଛି ଦେଇ ପାରିଲିନି
ଯଉତୁକ ଦେଇ ପାରିଲିନି
କନ୍ୟାଦାନ ଦେଇ ଶରଣ ପଶିଲି
ସମୁଦୀ ହେ କିଛି ବାରିବନି ।୦।



ଅତି ଅଲିଅଳୀ ଝିଅ ମୋର
ସହେ ନାହିଁ କଟୁ କଥା କାର
ନିଜ ଝିଅ ପରି ଚଳାଇ ନେବହେ
ଦୋଷ ଗୁଣ ତା'ର ଧରିବନି ।୧ ।

ଏଠାରେ ସ୍ମରିତ ବଳ ନିଜର ଗୋଟିଏ ବୋଲି ଝିଅ କଳ୍ପନା (ବେବୀ)କୁ ନିଜ ଜୀବନଠାରୁ ଅଧିକ ଭଲ ପାଉଥିଲେ । ଭଲରେ ଭଲରେ, ଘରର ବିଭିନ୍ନ ସମସ୍ୟା ଓ ନିଷ୍ପତ୍ତିରେ ସେ ସବୁବେଳେ ବେବୀର ପରାମର୍ଶ ଲୋଡୁଥିଲେ । ବଡ଼ ଅଲିଅଳିରେ ସେ ବଢ଼ାଇଥିଲେ ତାକୁ । ଝିଅଟିକୁ ବାହା କରିଦେଲା ପରେ ସେ ନିଜକୁ ଖୁବ୍ ଅସହାୟ ମନେ କରୁଥିଲେ । ମାତ୍ର ତାଙ୍କର ପୁଣ୍ୟବଳ ଓ ଆଶୀର୍ବାଦରୁ ତାଙ୍କ ଝିଅଟି ବାହାଘର ପରେ ମଧ୍ୟ ତାଙ୍କ ଘର ପାଖରେ ରହି ତାଙ୍କ ସୁଖ ଦୁଃଖରେ ଭାଗୀଦାର ହୋଇଥିଲା । ପ୍ରକୃତରେ ତାଙ୍କର ସେଇ ଝିଅଟି କାହାର କଟୁକଥା ସହିପାରେ ନାହିଁ ବୋଲି ସେ ତାଙ୍କର ଗୀତରେ ଉଲ୍ଲେଖ କରିଛନ୍ତି । ତାଙ୍କ ଜୀବନର ବହୁ ଘଟଣା ସହିତ ସେ ଗାଇଥିବା ଗୀତ ଗୁଡ଼ିକର ସାମଞ୍ଜସ୍ୟ ରହିଥିବା ପରି ମନେ ହୁଏ ।

ପ୍ରାୟ ପ୍ରତ୍ୟେକ ସଂଗୀତ ଶିଳ୍ପୀ ସାଧାରଣତଃ ରସିକ ଓ ପ୍ରେମିକ ପ୍ରବର ହୋଇଥାନ୍ତି । ଭିକାରୀ ବଳ ସେଥିରୁ ବାଦ୍ ଯାଇନାହାନ୍ତି । ତାଙ୍କର କଥାବାର୍ତ୍ତା ଓ ବ୍ୟବହାରରେ ଏହି ରସିକପଣକୁ ଅନେକ ଉପଲବ୍ଧି କରିଥିବେ । ମଜାଳିଆ କଥାକହି ସେ ଗମ୍ଭୀର ପରିବେଶକୁ ଖୁବ୍ ସହଜ ଓ ସରଳ କରିପାରୁଥିଲେ । ସେ ଗାଇଥିବା କେତେକ ଆଧୁନିକ ଗୀତରେ ତାହା ଖୁବ୍ ସ୍ପଷ୍ଟ ହୋଇ ଉଠିଛି । ସେଥିମଧ୍ୟରୁ କେତୋଟି ନମୁନା ଲକ୍ଷ୍ୟ କରନ୍ତୁ-

''ଫଗୁଣ ଆସିଛି ବୟସୀ ଡେଣାରେ ତା'ର
ଭଲ ମୁଁ ପାଇଛି ଜୀବନେ ପ୍ରଥମ ଥର
ମତେ ଯିଏ ଶରଧାରେ ଦେଇଥିଲା ଫୁଲଟିଏ
ଭାବି ଆପଣାର ଭାବି ଆପଣାର ।''

-- - -

''ସବୁଦିନେ ନାହିଁ ଚାନ୍ଦିନୀ ରାତି,
ସବୁଦିନେ ନାହିଁ ଭାବ ପୀରତି ।
ସବୁପାନ ନୁହେଁ ବିଡ଼ିଆ ସାଧା,
ସବୁ ଝିଅ ନୁହେଁ ସୁନ୍ଦରୀ ରାଧା ।''

-- - -

''ଏ ଦେହ ନଦୀରେ ଆସିଛି ବନ୍ୟା, ଯାହାର ନାମ ଯଉବନ
ଏ ମନଆକାଶେ ଉଇଁଛି ଜହ୍ନ, ଯାହାର ନାମ ପ୍ରେମ ।''

-- - -

''ଗୋଟିଏ ଫଗୁଣେ ହସିଥିଲି ବୋଲି
କୋଟିଏ ଶ୍ରାବଣେ କାନ୍ଦୁଛି... ଇତ୍ୟାଦି ।''

-- - -

ଏହିପରି ଅସୁମାରୀ ଗୀତରେ ପ୍ରତିଫଳିତ ହୋଇଛି ତାଙ୍କ ଜୀବନର ବାସ୍ତବ ଚିତ୍ର । ସେହି ମହାନ୍ ସଂଗୀତ ଶିଳ୍ପୀ ଭିକାରୀ ବଳ ଆଜି ଆକାଶରେ ତାରାଟିଏ ହୋଇଥିଲେ ମଧ୍ୟ ମର୍ତ୍ତ୍ୟ ଲୋକରେ ଅନୁରଣିତ ହେଉଛି ତାଙ୍କ ଈଶ୍ୱରଦତ୍ତ ସୁଲଳିତ, ଭକ୍ତକଣ୍ଠର ମୂର୍ଚ୍ଛନା । ସେଇ ମୂର୍ଚ୍ଛନା ମହାକାଳର ଗତିକୁ ଅତିକ୍ରମ କରି ପୁରୁଷ ପୁରୁଷ ଧରି ଅନୁପ୍ରାଣିତ କରୁଛି ଓ କରୁଥିବ ମାନବ ସମାଜକୁ । ସେ ସ୍ୱରର ବିଲୟ ନାହିଁ; ଅବିସ୍ମରଣୀୟ ହୋଇ ରହିଥିବ ଚିରକାଳ ।

ଅବସରପ୍ରାପ୍ତ, ଆସୋସିଏଟ୍ ପ୍ରଫେସର,
ରାଜାବଗିଚା, କଟକ-୯
ଦୂରଭାଷ:୭୯୭୮୯୨୩୧୭୯

○○

# ପିପିଲି ବନ୍ଦରର ଅଜ୍ଞାତ ଅଧ୍ୟାୟ

❖ ସଂବିତ ପଟ୍ଟନାୟକ

ପର୍ତ୍ତୁଗୀଜମାନଙ୍କ ପରି ଡଚ୍‌ମାନେ ମଧ୍ୟ ଏହି ପିପିଲି ବନ୍ଦରରେ ନିଜ ବ୍ୟବସାୟ ଜାରି ରଖି ବର୍ଷକୁ ପ୍ରାୟ ୨୦୦୦ ମହଣ ଓଜନର ଲୁଣ ବାହାରକୁ ରପ୍ତାନି କରିବା ପାଇଁ ସକ୍ଷମ ହୋଇପାରୁଥିଲେ ।

୧୬୬୬ ମସିହାରେ ଫ୍ରାନସିସ ବାରବିହରଙ୍କ ବିବରଣୀରୁ ଜଣାଯାଏ ଯେ, ବାଲେଶ୍ୱର ଉପକୂଳର ପିପିଲି ବନ୍ଦର ପର୍ତ୍ତୁଗୀଜମାନଙ୍କ ମୁଖ୍ୟ ବ୍ୟବସାୟ ପେଣ୍ଠଭାବେ ସମଗ୍ର ଭାରତ ବର୍ଷରେ ଦୀର୍ଘକାଳ ଧରି ବେଶ ପରିଚୟ ଲାଭ କରିଥିଲା । ବଙ୍ଗଳା ଦେଶର ଚିଟାଗଙ୍ଗ ଠାରୁ ଓଡ଼ିଶାର ପିପିଲି ପର୍ଯ୍ୟନ୍ତ ଉପକୂଳରେ ପର୍ତ୍ତୁଗୀଜ ବଣିକଙ୍କ ପୋତ ଏବଂ ସେନା ସେମାନଙ୍କ ପିପିଲିଠାରେ ଚାଲିଥିବା ସାମୁଦ୍ରିକ ବାଣିଜ୍ୟକୁ ପୂରା ସହାୟତା ପ୍ରଦାନ କରୁଥିଲା ।

୧୯୩୬ ମସିହାରେ ପିପିଲି ବନ୍ଦର ସହର ପରିଦର୍ଶନରେ ଆସିଥିବା ପରିବ୍ରାଜକ ମାନଙ୍କ ବିବରଣୀରୁ ଜଣାଯାଏ ଯେ ସୁବର୍ଣ୍ଣରେଖା ମୁହାଣଠାରୁ ପ୍ରାୟ ୪/୫ କି.ମି. ଦକ୍ଷିଣକୁ ଥିବା ଏହି ବନ୍ଦର ସହର ପିପିଲି ଏକ ମଧ୍ୟମ ଧରଣର ଜନବହୁଳ ବନ୍ଦର ସହର ଥିଲା । କିନ୍ତୁ ଏହି ସହରର ସୀମାକୁ କୌଣସି ପାଚେରି ଦ୍ୱାରା ଆବଦ୍ଧ କରାଯାଇନଥିଲା ।

ସହରର ମୁଖ୍ୟ ଘର, ବ୍ୟବସାୟ ପ୍ରତିଷ୍ଠାନ, ଅଟ୍ଟାଳିକା ଏବଂ ଅନ୍ୟାନ୍ୟ ବୃହତ୍ତ ଅନୁଷ୍ଠାନ ଗୁଡ଼ିକ ଖୋଲାଜାଗା, ବଗିଚା ଏବଂ ପ୍ରଦର୍ଶନୀ କକ୍ଷ ସହିତ ପରିବେଷ୍ଟିତ ଥିଲା ।

ମାନରିକ୍ ତାଙ୍କ ବିବରଣୀରେ ସେତେବେଳେ ପିପିଲି ବନ୍ଦର ସହର ମଧ୍ୟରେ ଗଢ଼ିଉଠିଥିବା କିଛି ନିର୍ଦ୍ଦିଷ୍ଟ ମାନ୍ୟତା ପ୍ରାପ୍ତ ଅଟ୍ଟାଳିକା ବିଷୟରେ ସୂଚନା ଦେଇଛନ୍ତି ଯେଉଁଗୁଡ଼ିକ ସ୍ଥାନୀୟ ଅଧିବାସୀ ଏବଂ ବିଦେଶୀ ବଣିକ ନାବିକମାନଙ୍କ ବିଶ୍ରାମ ସ୍ଥଳୀ ରୂପେ ବ୍ୟବହୃତ ହେଉଥିବାର ସୂଚନା ପ୍ରଦାନ କରାଯାଇଛି ।

୧୭ଶ ଶତାବ୍ଦୀରେ ପ୍ରଥମ ଭାଗରେ ଅଗଷ୍ଟିଆନ୍ ମାନେ ଏହି ବନ୍ଦର ସହର ପିପିଲିରେ ଧର୍ମ ପ୍ରଚାର ପାଇଁ ଏକ ଚର୍ଚ୍ଚ ଏବଂ ବାସଗୃହ ନିର୍ମାଣ କରିଥିବାର ବିବରଣୀ ମିଳିଥାଏ । ଅଗଷ୍ଟିଆନ୍‌ମାନଙ୍କ ଦ୍ୱାରା ପିପିଲିରେ ଗଢ଼ାଯାଇଥିବା ଚର୍ଚ୍ଚଟି ମଧ୍ୟ ଲେଡି ରୋଜାରିଙ୍କ ଉଦ୍ଦେଶ୍ୟରେ ସମର୍ପିତ ଥିବାର ବିବରଣୀ ଆମେ ଏହି ଐତିହାସିକ ଦସ୍ତାବିଜରୁ ପାଇଥାଉ ।

ପିପିଲି ବନ୍ଦର ସହରରେ ସମସ୍ତ ପାଞ୍ଚଟି ଇଉରୋପିଅ ବଣିକ ଗୋଷ୍ଠୀ ସହରରେ ସମସ୍ତ ପାଞ୍ଚଟି ଇଉରୋପିଓ ବଣିକ ଗୋଷ୍ଠୀ ନିଜ ନିଜର କେନ୍ଦ୍ର ଖୋଲି ବ୍ୟବସାୟ ବାଣିଜ୍ୟ କରୁଥିଲେ ମଧ୍ୟ ପିପିଲି ଏବଂ ଏହାର ଆଖପାଖ ସୁବର୍ଣ୍ଣରେଖା ତଟବର୍ତ୍ତୀ ଅଞ୍ଚଳରେ ପର୍ତ୍ତୁଗୀଜମାନେ ଅନ୍ୟାନ୍ୟ ଇଉରୋପୀୟ ବଣିକ ଗୋଷ୍ଠୀ ତୁଳନାରେ ଯଥେଷ୍ଟ ଅଧିକ ପ୍ରଭାବଶାଳୀ ହୋଇ କର୍ତ୍ତୃତ୍ୱ ବିସ୍ତାର କରିଥିଲେ ।

ପିପିଲି ସୁବର୍ଣ୍ଣରେଖା ତୀରରେ ଇଂରେଜ ବାଣିଜ୍ୟ କୋଠି ସ୍ଥାପନା ହେବାର ଦୁଇ ବରଷ ପରେ, ଡଚମାନେ ପିପିଲିରୁ ହୁଗୁଳିକୁ ତାଙ୍କ ବ୍ୟବସାୟ ସମ୍ପ୍ରସାରିତ ଲକ୍ଷ୍ୟ ନେଇ ଆଗେଇ ଯାଇଥିଲେ ମଧ୍ୟ ପୁନର୍ବାର ୧୯୩୬ ମସିହାରେ ପିପିଲି ପ୍ରତ୍ୟାବର୍ତ୍ତନ କରିଥିଲେ ।

ଡଚ୍ କମ୍ପାନୀମାନେ ବହୁପରିମାଣର ଯବକ୍ଷାର ପାଟଣାରୁ ସଂଗ୍ରହ କରି ତାକୁ ପିପିଲିକୁ ଜାହାଜରେ ଆଣି ସଂଶୋଧିତ କରିବାପରେ ପୁନର୍ବାର ସେଠାରୁ ନେଇ ଜାହାଜରେ ବୋଟାଭିଆରେ ବିକ୍ରୟ କରୁଥିଲେ ।

ଉକ୍ତ କାର୍ଯ୍ୟକୁ ସୁପରିଚାଳନା କରିବାପାଇଁ ଡଚ୍‌ମାନେ ପିପିଲି ବନ୍ଦରର ଅନତିଦୂରରେ ହଲାଣ୍ଡରୁ ଆମଦାନି ହୋଇଥିବା କପର କେଟିଲ୍ ସାହାଯ୍ୟରେ ପିପିଲିଠାରେ ଏକ ଯବକ୍ଷାର ବିଶୋଧନାଗାର ପ୍ରତିଷ୍ଠା କରିଥିଲେ । ଯାହା ୧୬୪୦ରୁ ୧୬୪୧ ମସିହା ମଧ୍ୟରେ ସ୍ଥାପିତ ହୋଇଥିବାର ପ୍ରମାଣ ଆମେ ଐତିହାସିକ ବିବରଣୀରୁ ପାଇଥାଉ ।



୧୬୩୪ ମସିହା ପିପିଲି ବନ୍ଦର ସହର ପାଇଁ ଏକ ଐତିହାସିକ ଏବଂ ସ୍ମରଣୀୟ ଦିନ ଥିଲା । ଦିଲ୍ଲୀରେ ନୂଆକରି ଶାସନଭାର ଗ୍ରହଣ କରିଥିବା ମୋଗଲ ସମ୍ରାଟ ଶାହାଜାହାନ, ପଶ୍ଚିମବଙ୍ଗ ଉପକୂଳ ହୁଗୁଳି ବନ୍ଦରରେ ବ୍ୟବସାୟ ବାଣିଜ୍ୟ କରିବା ପାଇଁ ପର୍ତ୍ତୁଗୀଜମାନଙ୍କୁ ଦିଆଯାଇଥିବା ଅନୁମତି ପତ୍ର ପ୍ରତ୍ୟାହାର କରିନେଇଥିଲେ ଏବଂ ସେଠାରେ ପର୍ତ୍ତୁଗୀଜମାନଙ୍କ ବାଣିଜ୍ୟ କେନ୍ଦ୍ରରେ ଅନ୍ୟ ଏକ ଇଉରୋପୀୟ ବଣିକ ଗୋଷ୍ଠୀ ଇଂରେଜମାନଙ୍କୁ ଅବସ୍ଥାପିତ କରିଥିଲେ ।

ମୋଗଲ ସମ୍ରାଟଙ୍କର ଏହି ଅପତ୍ୟାଶିତ ପଦକ୍ଷେପର ଫଳ, ପିପିଲି ବନ୍ଦର ସହର ଉପରେ ପଡ଼ିଥିଲା । ଦୁଇ ଇଉରୋପୀୟ ବଣିକ ଗୋଷ୍ଠୀ ଇଂରେଜ ଏବଂ ପର୍ତ୍ତୁଗୀଜ ପିପିଲି ବନ୍ଦରରେ ନିଜର କର୍ତ୍ତୃତ୍ୱ ଜାହିର କରିବାକୁ ନେଇ ପରସ୍ପର ସାମାନା ସାମନି ହେବାକୁ ଆରମ୍ଭ କରିଥିଲେ ।

ଏତିହାସିକ ବ୍ରୁଟନ୍ ଏବଂ ହଣ୍ଟର୍ ଏହି ଦୁଇ ଇଉରୋପୀୟ ବଣିକ ଗୋଷ୍ଠୀ ଇଂରେଜ ଏବଂ ପର୍ତ୍ତୁଗୀଜମାନଙ୍କ ମଧ୍ୟରେ ପିପିଲି ବନ୍ଦର ଉପକୂଳରେ ହୋଇଥିବା ନୌଯୁଦ୍ଧର ଏକ ବୃତ୍ତଚିତ୍ର ସମ୍ବଳିତ ବିବରଣୀ ପ୍ରଦାନ କରିଛନ୍ତି ।

ପ୍ରାୟ ୧୬୩୫ ମସିହା ବେଳକୁ ଓଡ଼ିଶା ଉପକୂଳର ଅନ୍ୟ ଏକ ସ୍ଥାନ ହରିହରପୁରଠାରେ ଇଂରେଜମାନଙ୍କ ବାଣିଜ୍ୟକୋଠି ସ୍ଥାପନା ହୋଇସାରିଥାଏ । ଏହି ବାଣିଜ୍ୟ କୋଠି ସ୍ଥାପନା ହୋଇସାରିଥାଏ । ଏହି ବାଣିଜ୍ୟ କୋଠିର ଦାୟିତ୍ୱରେ ଥିବା ଥୋମାସ୍ କୁଲେ ପିପିଲିଠାରେ ପର୍ତ୍ତୁଗୀଜ ଇଂରେଜମଧ୍ୟରେ ଲାଗିଥିବା ମୁକାବିଲା ନେଇ ଅନେକ ଆଶଙ୍କା ପ୍ରକଟ କରିଥିଲେ । ଥୋମାସ୍ କୁଲେଙ୍କର ଆଶଙ୍କା ଥିଲା ଯେ ହୁଏତ ପିପିଲିଠାରେ ଏହି ଦୁଇ ବଣିକ ଗୋଷ୍ଠୀ ମଧ୍ୟରେ ଲାଗିଥିବା ମୁକାବିଲାରେ ଇଂରେଜମାନେ ବଳି ପଡ଼ିଯାଇପାରନ୍ତି । କାହିଁକି ନା ପିପିଲି ମୂଳରୁ ହିଁ ତାଙ୍କ ପ୍ରତିଦ୍ୱନ୍ଦୀ ପର୍ତ୍ତୁଗୀଜ ମାନଙ୍କର ଏକ ଗଡ଼ଭାବେ ବିବେଚିତ ହୋଇଆସିଛି ।

ଏହି ଆଶଙ୍କାରେ ସଂଘର୍ଷମୟ ପରିସ୍ଥିତିର ଭିତରେ ଗତି କରୁଥିବା ପିପିଲି ବନ୍ଦରର ଭାଗ୍ୟ ଦିନକୁ ଦିନ ଅନିଶ୍ଚିତତା ଭିତରକୁ ଠେଲି ହୋଇଯାଇଥିଲା ।

ଏଇ ଘଡ଼ିସନ୍ଧି ମୁହୂର୍ତ୍ତରେ ପିପିଲି ବନ୍ଦରର ପର୍ତ୍ତୁଗୀଜ ବଣିକ ଗୋଷ୍ଠୀ ଓଡ଼ିଶାର ନବାବଙ୍କ ନିକଟରେ ଅଭିଯୋଗ କଲେ ଯେ ଇଂରେଜମାନେ ସେମାନଙ୍କୁ ପିପିଲି ବନ୍ଦରରୁ ବିତାଡ଼ିତ କରିବାପାଇଁ ଯୋଜନା କରୁଛନ୍ତି ।

ମୋଗଲମାନଙ୍କର ପ୍ରତିନିଧିତ୍ୱ କରୁଥିବା ଓଡ଼ିଶାର ନବାବଙ୍କ ପାଖରେ ଏ ଅଭିଯୋଗ ହସ୍ତଗତ ହେବାପରେ ଇଂରେଜମାନେ କେବଳ ହରିହରପୁର ଏବଂ ବାଲେଶ୍ୱରରେ ବଣିଜ କରିବାପାଇଁ ଆଗ୍ରହୀ ବୋଲି ନବାବଙ୍କୁ ସଫେଇ ଦେଇ ପର୍ତ୍ତୁଗୀଜ ମାନଙ୍କ ସହ ସଂଘର୍ଷକୁ ଚତୁରତାର ସହ ଏଡ଼େଇ ଦେଇଥିଲେ ।

ଆରାକାନ୍ ଜଳଦସ୍ୟୁମାନଙ୍କ ଦ୍ୱାରା ଏକ ଇଂରେଜ ଜାହାଜ୍ ସ୍ୱାନର ଅପହରଣ ଏବଂ ପରେ ପରେ ପର୍ତ୍ତୁଗୀଜମାନଙ୍କଦ୍ୱାରା ତାକୁ ପିପିଲି ବନ୍ଦରରେ ସୁରକ୍ଷା ପ୍ରଦାନ ଆଦି ଘଟଣା ଆଂଗ୍ଲୋ ପର୍ତ୍ତୁଗୀଜ ବିବାଦକୁ ଏକ ନୂଆ ମୋଡ଼ ଦେଇଥିଲା ।

୧୭ଶ ଶତାବ୍ଦୀର ଶେଷବେଳକୁ ପିପିଲି ବନ୍ଦରର ହୃତଗୌରବ. ଧୀରେ ଧୀରେ ମଳିନ ପଡ଼ିବାକୁ ଆରମ୍ଭକଲା । ସୁବର୍ଣ୍ଣରେଖା ମୁହାଣରେ ପଟୁ ଜମାହୋଇ ମୁହାଣରେ ବିରାଟ ବାଲିବନ୍ଧ ସୃଷ୍ଟି ହେବା ଫଳରେ ବଡ଼ ବଡ଼ ଜାହାଜ ଆଉ ପିପିଲି ବନ୍ଦରକୁ ଆସିବା ସମ୍ଭବପର ହୋଇପାରିନଥିଲା । ଏହାଦ୍ୱାରା ବନ୍ଦରର ନୌବାଣିଜ୍ୟ ବହୁ ମାତ୍ରାରେ ପ୍ରଭାବିତ ହୋଇଥିଲା ପରେ ପରେ ସୁବର୍ଣ୍ଣରେଖା ନଦୀରେ ଏକ ବଡ଼ଧରଣର ବନ୍ୟା ଆସି ପିପିଲି ବନ୍ଦରର ଅଶେଷ କ୍ଷତି ସାଧନ କରିଦେଇଥିଲା । ଆସ୍ତେ ଆସ୍ତେ ବନ୍ଦର ପରିତ୍ୟକ୍ତ ହବାକୁ ଆରମ୍ଭ କଲା କିନ୍ତୁ ମୋଗଲ ଶାସନର ଓଡ଼ିଶା ପ୍ରତିନିଧିମାନଙ୍କ ନୌବାଣିଜ୍ୟ ବ୍ୟବସାୟ ପ୍ରତି ବିମୁଖତା, ଓଡ଼ିଶାରେ ବାରମ୍ବାର ରାଜନୈତିକ ଅସ୍ଥିରତା ତୁହାକୁ ତୁହା ରାଜ୍ୟ ନେତୃତ୍ୱର ପରିବର୍ତ୍ତନ, କୌଣସି ଏକ ବ୍ୟବସାୟିକ ନିତି ନିର୍ଦ୍ଧାରଣ କରିବାରେ ଅହେତୁକ ବିଳମ୍ବ, ମୋଗଲ ଶାସନର କର୍ମଚାରୀମାନଙ୍କ ଦ୍ୱାରା ବନ୍ଦରର ବଣିକ ଏବଂ ନାବିକ ଗୋଷ୍ଠୀକୁ ଶୋଷଣ କରିବାର ମନବୃତ୍ତି ଏବଂ ଅନ୍ୟାନ୍ୟ ଦୈବ ଦୁର୍ବିପାକ କାରଣରୁ ପିପିଲି ବନ୍ଦରର ଭବିଷ୍ୟତ ଏକ ଅନିଶ୍ଚିତତା ଭିତରକୁ ଠେଲି ହୋଇଯାଇଥିଲା । ପରିତ୍ୟକ୍ତ ହୋଇପଡ଼ିଥିବା ସୁବର୍ଣ୍ଣରେଖା ମୁହାଣ, କ୍ଷତିଗ୍ରସ୍ଥ ଏବଂ ସ୍ଥାଣୁ ହେଇପଡ଼ିଥିବା ପିପିଲି ବନ୍ଦରକୁ ସଜାଡ଼ି କାର୍ଯ୍ୟକ୍ଷମ କରିବାକୁ ପର୍ତ୍ତୁଗୀଜ ମାନେ ଆଉ ଆଗ୍ରହ ପ୍ରକାଶ କରିନଥିଲେ । ପର୍ତ୍ତୁଗୀଜମାନଙ୍କ ପ୍ରତିଦ୍ୱନ୍ଦି ଇଂରେଜମାନେ ମଧ୍ୟ ପରିତ୍ୟକ୍ତ ପିପିଲି ବନ୍ଦର ପ୍ରତି ଏତେଟା ଆଗ୍ରହ ପ୍ରକାଶ ନକରି ନିକଟବର୍ତ୍ତୀ ବାଲେଶ୍ୱର ବନ୍ଦର ଆଡ଼କୁ ମୁହଁ ଫେରେଇ ନେଇଥିଲେ ।





ସୁବର୍ଣ୍ଣରେଖା ନଦୀ ମୁହାଣ କ୍ରମଶଃ ପୋତି ହୋଇପଡ଼ିବାପରେ ପିପିଲି ବନ୍ଦର ପରିତ୍ୟକ୍ତ ହୋଇପଡ଼ିଲା ।

ଅତୀତର ସେହି ମହାନ ନୌବାଣିଜ୍ୟ ପରମ୍ପରାକୁ ବହନ କରୁଥିବା ଅବଶିଷ୍ଟାଂଶ ଏବେ ମଧ୍ୟ କିଛିଇ ମାତ୍ରାରେ ସୁବର୍ଣ୍ଣରେଖାରେ ଉଭୟ ପାର୍ଶ୍ୱରେ ଦୃଷ୍ଟିଗୋଚର ହୋଇଥାଏ । ଜଳେଶ୍ୱର ନିକଟବର୍ତ୍ତୀ ବଳରାମପୁର ଗ୍ରାମରେ ଏକ ପରିତ୍ୟକ୍ତ ଏବଂ ଜୀର୍ଣ୍ଣ ବତୀଘର ସେତେବେଳର ଏହି ପିପିଲି ବନ୍ଦରର ବାଣିଜ୍ୟିକ ବ୍ୟବସ୍ଥା ସମ୍ପର୍କରେ ସମ୍ୟକ ସୂଚନା ପ୍ରଦାନ କରିଥାଏ । ଏଠାରୁ ଅନତିଦୂରରେ ପର୍ତ୍ତୁଗୀଜମାନଙ୍କ ଏକ ମଶାଣି ମଧ୍ୟ ଦେଖିବାକୁ ମିଳିଥାଏ । ଯେଉଁଠି ପର୍ତ୍ତୁଗୀଜ ନାବିକ, ବଣିକ ଏବଂ ପ୍ରଶାସକମାନଙ୍କ ସ୍ମୃତିକୁ ଉଜ୍ଜୀବିତ କରି ରଖିବା ପାଇଁ ସମାଧି ସ୍ଥଳର ନିର୍ମାଣ କରାଯାଇଛି ।

ସୁବର୍ଣ୍ଣରେଖାର ପୂର୍ବ ପାର୍ଶ୍ୱରେ କିରାତରାଜାଗଡ଼ ଏବଂ ପଶ୍ଚିମରେ ଶାହାବନ୍ଦରଗଡ଼ ନାମରେ ଦୁଇଟି ଗଡ଼ ରହିଥିବାର ସୂଚନା ଆମେ ଇତିହାସରୁ ପାଇଥାଉ କିରାତ ରାଜା ଗଡ଼ର ଭଗ୍ନାଂଶ ଏବେ ମଧ୍ୟ ଏଠାରେ କିଛି ମାତ୍ରାରେ ଦେଖିବାକୁ ମିଳିଥାଏ ।

ଏବେ ଜଳେଶ୍ୱର ନିକଟ ଭୋଗରାଇ ଅଞ୍ଚଳରେ ଥିବା ଖୈଡ ପିପିଲି, ଝାଡପିପିଲି ପ୍ରଭୃତି ଗ୍ରାମ ପିପିଲି ବନ୍ଦର ନାମରେ ନାମିତ ହୋଇଥିବାର ଜଣାଯାଏ ।

ବର୍ତ୍ତମାନ ସୁବର୍ଣ୍ଣରେଖା ମୁହାଣଠାରୁ ପ୍ରାୟ ୧ କିଲୋମିଟର ଦୂରରେ ଥିବା ବାବା ଭୂଷଣ୍ଡେଶ୍ୱରଙ୍କ ମନ୍ଦିର ଆମକୁ ଏଠାରେ ଚାଲିଥିବା ଅତୀତ ଉତ୍କଳ ନୌବାଣିଜ୍ୟର ଅନେକ ଅଜଣା ଅକୁହା କଥାକୁ ଅନାବରଣ କରିଥାଏ ।

କଳା ମୁଗୁନି ପଥରରେ ତିଆରି ବିଖ୍ୟାତ ଭୂଷଣ୍ଡେଶ୍ୱର ଶିବ ଲିଙ୍ଗ ଏସିଆର ସର୍ବବୃହତ ଶିବଲିଙ୍ଗ ଭାବରେ ମାନ୍ୟତା ଲାଭ କରିଥିବାର ଜଣାଯାଏ ।

ଉତ୍କଳ ନୌବାଣିଜ୍ୟର ଅତୀତ ଇତିହାସକୁ ରୋମନ୍ଥନ କଲେ ଜଣାଯାଏ ଯେ କଳିଙ୍ଗର ସାଧବ ବଣିକମାନେ କଳିଙ୍ଗରେ ତିଆରି ଅନ୍ୟାନ୍ୟ ସୂକ୍ଷ୍ମ କାରୁକାର୍ଯ୍ୟ ସହିତ ବହୁପରିମାଣରେ ଶିବଲିଙ୍ଗ ତିଆରି କରି ସୁଦୂର ଜାଭା, ସୁମାତ୍ରା ଏବଂ ବାଲିଦ୍ୱୀପକୁ ବୋଇତରେ ବୋହିନେଇ ଯାଉଥିଲେ । ଇଣ୍ଡୋନେସିଆର ବାଲି, ଜାଭା ଏବଂ ସୁମାତ୍ରା ଦ୍ୱୀପରେ ବର୍ତ୍ତମାନ ମଧ୍ୟ ଅନେକ ମନ୍ଦିରରେ ସ୍ଥାପିତ ଶିବଲିଙ୍ଗ କଳିଙ୍ଗ ସାଧବମାନଙ୍କ ଦ୍ୱାରା କଳିଙ୍ଗରୁ ଆମଦାନି ହୋଇଥିବା ଶିବଲିଙ୍ଗ ବୋଲି ଐତିହାସିକ ମାନେ ମତ ଦିଅନ୍ତି । ଏଇ କ୍ରମରେ ବାଲେଶ୍ୱର ଉପକୂଳରେ ଥିବା ଏକ ଗ୍ରାମ ନରେନ୍ଦ୍ରପୁର ଯାହାକି ବର୍ତ୍ତମାନ ଭଦ୍ରକ ଜିଲ୍ଲାରେ ରହିଛି ସେତେବେଳେ, ଏହି ଶିବଲିଙ୍ଗ ତିଆରି ଏବଂ ରପ୍ତାନୀର ପ୍ରମୁଖ କେନ୍ଦ୍ରଥିଲା ବୋଲି ଅନୁଧ୍ୟାନରୁ ଜଣାପଡ଼େ । ଭଦ୍ରକର ନରେନ୍ଦ୍ରପୁର ଗ୍ରାମରେ ବର୍ତ୍ତମାନ ପରିତ୍ୟକ୍ତ ଅବସ୍ଥାରେ ମାଟିଉପରେ ଏବଂ ମାଟିତଳେ ପଡ଼ିରହିଥିବା ହଜାର ହଜାର ସଂଖ୍ୟାରେ ଶିବଲିଙ୍ଗ ଆମକୁ ବାବା ଭୂଷଣ୍ଡେଶ୍ୱର ଏବଂ ଶିବଲିଙ୍ଗ ରପ୍ତାନି ବିଷୟରେ ଅନେକ ସୂଚନା ପ୍ରଦାନ କରିଥାଏ ।

ମୁଖ୍ୟ ନିର୍ଦ୍ଦେଶକ
ସୋମରାଜ କଳିଙ୍ଗ ଚାପ୍ଟର
ଦୂରଭାଷ: ୮୮୯୫୧୨୨୬୫୦

○○



# ଇତିହାସ ପୃଷ୍ଠାରୁ : କଳିଙ୍ଗ ଯୁଦ୍ଧର ଇତିବୃତ୍ତ

❖ ସଞ୍ଜୟ କୁମାର ମହାପାତ୍ର

ଖ୍ରୀଷ୍ଟପୂର୍ବ ୨୬୧ରେ ସଂଘଟିତ ହୋଇଥିଲା ଲୋମହର୍ଷଣକାରୀ କଳିଙ୍ଗ ଯୁଦ୍ଧ । ଚଣ୍ଡାଶୋକଙ୍କର ରକ୍ତକ୍ଷୟୀ କଳିଙ୍ଗ ଯୁଦ୍ଧ ଇତିହାସରେ କଳିଙ୍ଗ ନାମକୁ ଅଭୂତପୂର୍ବ ପ୍ରସିଦ୍ଧି ପ୍ରଦାନ କରିଛି । ରାଜ୍ୟ ସଂଗ୍ରହାଳୟଦ୍ୱାରା ଭୁବନେଶ୍ୱର ସନ୍ନିକଟ ମହାଭୋଇ ପୁଷ୍କରିଣୀ ଓ ଧଉଳି ଆଦି ଅଞ୍ଚଳରେ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ କରାଯାଇ ଆବିଷ୍କୃତ ତଥ୍ୟ ଅନୁସାରେ ଦୟାନଦୀର ଦକ୍ଷିଣ ପାର୍ଶ୍ୱରେ ଥିବା 'ରଣେଇ ଗହୀର'ରେ ହିଁ କଳିଙ୍ଗ ଯୁଦ୍ଧ ସଂଘଟିତ ହୋଇଥିଲା ।

କିନ୍ତୁ କେତେକ ଐତିହାସିକ କଳିଙ୍ଗଯୁଦ୍ଧ ଦୟାନଦୀ କୂଳରେ ନୁହେଁ ବରଂ ଯାଜପୁର ସନ୍ନିକଟ ବ୍ରାହ୍ମଣୀ ନଦୀ ଅବବାହିକାରେ ଅବସ୍ଥିତ ରାଧାନଗରଠାରେ ସଂଘଟିତ ହୋଇଥିବାର ପ୍ରତ୍ନତାତ୍ତ୍ୱିକ ପ୍ରମାଣସିଦ୍ଧ ଯୁକ୍ତି ଉପସ୍ଥାପନା କରନ୍ତି । ସେତେବେଳେ କାଳେ କଳିଙ୍ଗ ରାଜ୍ୟର ରାଜଧାନୀ କଳିଙ୍ଗନଗରୀ ଆଧୁନିକ ଯାଜପୁରରେହିଁ ପ୍ରତିଷ୍ଠିତ ଥିଲା ବୋଲି ସେମାନେ ମତ ପୋଷଣ କରନ୍ତି । ତେବେ, ଏସବୁ ବିବାଦୀୟ, ଅନୁସନ୍ଧାନ ସାପେକ୍ଷ ତଥା ଏ ସମ୍ବନ୍ଧରେ ଅଧିକ ଗବେଷଣା ଲୋଡ଼ା ।

କଳିଙ୍ଗ ଯୁଦ୍ଧରେ ଏକ ଲକ୍ଷ ସୈନ୍ୟ ନିହତ, ଦେଢ଼ ଲକ୍ଷ ସୈନ୍ୟ ବନ୍ଦୀ ଏବଂ ତତୋଧିକ ଦେଶାନ୍ତର ହୋଇଥିଲେ । ଏହି କ୍ଷତି ମୋଟ ସୈନ୍ୟବଳର ପ୍ରାୟ ଅଧାଅଧି । ସାଧାରଣ ଜନତା, ଯେଉଁମାନେ କି କଳିଙ୍ଗ ଯୁଦ୍ଧର ଭୟାବହତାକୁ ଅଙ୍ଗେ ନିଭାଇ କୌଣସିମତେ ଜୀବନ ବଞ୍ଚାଇ ପାରିଥିଲେ, ସେମାନେ ସ୍ୱତଃ ପ୍ରବୃତ୍ତ ଦେଶାନ୍ତର ହୋଇଥିଲେ ଅଥବା ସ୍ଥାନାନ୍ତର ହୋଇ ଯୁଦ୍ଧ ବିମୁଖ ଏକ ଶାନ୍ତ-ନିରୁପଦ୍ରବ-କୃଷି ଜୀବନ ବିତେଇବାକୁ ପସନ୍ଦ କରିଥିଲେ । ସେଥିପାଇଁ ସେମାନେ ନଦୀ-ନାଳ ଘେରା ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳକୁ ହିଁ ଅଧିକ ପସନ୍ଦ କରିଥିଲେ ତାହା କେବଳ ଓଡ଼ିଶାର ଉପକୂଳବର୍ତ୍ତୀ ମହାନଦୀ-ବ୍ରାହ୍ମଣୀ-ବୈତରଣୀ-ଋଷିକୁଲ୍ୟା-ମହେନ୍ଦ୍ରତନୟା- ନାଗାବଳୀ-ବଂଶଧାରା- ଗୋଦାବରୀ ସାଳନ୍ଦୀ- ସୁବର୍ଣ୍ଣରେଖା-ବୁଢାବଳଙ୍ଗ ଆଦି ନଦୀ ମାତୃକା ଅଞ୍ଚଳହିଁ ହୋଇପାରେ । ଏସବୁ ଅଞ୍ଚଳ ଅବିଭକ୍ତ କଟକ, ପୁରୀ, ବାଲେଶ୍ୱର, ଗଞ୍ଜାମ ଜିଲ୍ଲା ମଧ୍ୟରେ ହିଁ ଆସୁଛି ।

ହେଲେ, ନିଜର ମୂଳ ଗୁଣସୂତ୍ର (ଯୁଦ୍ଧ କରିବା) ଭୁଲି ସବୁ କଳିଙ୍ଗ ଅଧିବାସୀ କିନ୍ତୁ ଆଦୌ ପଳାୟନପନ୍ଥୀ - ରଣଛାଡ ନୀତି ଗ୍ରହଣ ଆପଣେଇ ନ ଥିବେ । ତା ହୋଇଥିଲେ, ପରବର୍ତ୍ତୀ କାଳରେ ଖାରବେଳଙ୍କ ନେତୃତ୍ୟରେ ଓଡ଼ିଆ ଜାତିର ପୁନରୁତ୍ଥାନ ସମ୍ଭବ ହୋଇନଥାନ୍ତା । ପାଉଁଶ ତଳର ନିଆଁ ଭଳି କଳିଙ୍ଗର ଶୌର୍ଯ୍ୟ ବୀର୍ଯ୍ୟ- ପରାକ୍ରମ ତଥାପି ବି ଅତୁଟ ରହିଥିଲା ମହାନ ଚେଦୀ ବଂଶର ସୁଯୋଗ୍ୟ ଦାୟାଦ ମହାମେଘବାହନ-ଐର-ଖାରବେଳଙ୍କ ଉତ୍ଥାନ ସମୟ ପର୍ଯ୍ୟନ୍ତ । କେବଳ ରାଜଧାନୀ ପରିବର୍ତ୍ତିତ ହୋଇଥିଲା ଶିଶୁପାଳଗଡ଼ (କଳିଙ୍ଗନଗର)ରୁ ବରମୁଣ୍ଡା-ତୁମୁତୁମା (ପିଥୁଣ୍ଡ)କୁ । କଳିଙ୍ଗ ଯୁଦ୍ଧର ମହାବିପର୍ଯ୍ୟୟ ପରେ ମଧ୍ୟ ଯେଉଁ ଯେଉଁ ରଣରଙ୍କା କଳିଙ୍ଗାମାନେ ତଥାପି ରାଜଧାନୀ-କଳିଙ୍ଗନଗର (ଆଧୁନିକ ଭୁବନେଶ୍ୱର)ର ଆଖ-ପାଖ ଅଞ୍ଚଳରେ ବସବାସ କରିଥିଲେ ନାନା ଘାତ-ପ୍ରତିଘାତ ସହି, ସେମାନେହିଁ ବାସ୍ତବରେ ସହାୟକ ହୋଇଥିଲେ ଖାରବେଳଙ୍କ ନେତୃତ୍ୱରେ କଳିଙ୍ଗ ସେନାର ପୁନରୁତ୍ଥାନରେ ଏବଂ ଭିତ୍ତିଭୂମି ପକେଇଥିଲେ ପରବର୍ତ୍ତୀ କାଳର ଦୁର୍ଜ୍ଜୟ କଳିଙ୍ଗ ସାମ୍ରାଜ୍ୟର ପୁନର୍ଗଠନରେ । ସୌଭାଗ୍ୟକ୍ରୁ, ଆମର ଆଧୁନିକ ରାଜଧାନୀ ସହର ସେହି ଅଞ୍ଚଳର ଛାତି ଉପରେ ହିଁ ବର୍ତ୍ତମାନ ସଗର୍ବେ ଦଣ୍ଡାୟମାନ ଆମକୁ ମନେ ପକାଇଦେବାକୁ ଆମମାନଙ୍କର ପୂର୍ବସୂରୀଙ୍କ ତ୍ୟାଗ, ନିଷ୍ଠା, ତିତିକ୍ଷା, ଅଧ୍ୟବସାୟ ଓ ଗୌରବର ଗାଥା ।

କଳିଙ୍ଗ ସେନା ନିଜର ସାହସିକତା, ବୀରତ୍ୱ ଏବଂ ରଣନୈପୁଣ୍ୟ ପାଇଁ ସାରା ଭାରତରେ ସେତେବେଳେ ବିଶେଷ





ଖ୍ୟାତିଲାଭ କରିଥିଲେ । ସାମ୍ରାଟଙ୍କ ଆଦେଶ ପାଇବା ମାତ୍ରେ ଶହଶହ ସୈନ୍ୟ ସହାସ୍ୟ ବଦନରେ ରଣାଙ୍ଗନକୁ ଲମ୍ଫ ପ୍ରଦାନ କରୁଥିଲେ । ଅଶୋକଙ୍କ ପୂର୍ବ ମୌର୍ଯ୍ୟ ଶାସକଗଣ କଳିଙ୍ଗ ଚତୁଃପାର୍ଶ୍ୱସ୍ଥ ଅବଶିଷ୍ଟ ଭାରତ ଜୟ କରିଥିଲେ ହେଁ, କଳିଙ୍ଗ ଅଧିକାର କରିବାକୁ ସାହସ କରିପାରିନଥିଲେ । ଏହାର କାରଣ, କଳିଙ୍ଗର ବିଶାଳ ଗଜସେନା ତଥା କଳିଙ୍ଗର ଶୌର୍ଯ୍ୟ-ବୀର୍ଯ୍ୟ-ପ୍ରତିଷ୍ଠା-ପ୍ରତିପତ୍ତି-ମାନ-ସମ୍ମାନ । ଏହା ତତ୍କାଳୀନ ଗ୍ରୀକବୀର ଆଲେକଜାଣ୍ଡାର ତଥା ମୌର୍ଯ୍ୟ ସାମ୍ରାଜ୍ୟର କର୍ଣ୍ଣଧାର କୌଟିଲ୍ୟଙ୍କ ମନରେ ମଧ ପ୍ରବଳ ଭୀତି ସଂଚାର କରିଥିଲା । ବୀରତ୍ୱ ସହ ତତ୍କାଳ କଳିଙ୍ଗ ଥିଲା ଶିଳ୍ପ କଳା ଭାସ୍କର୍ଯ୍ୟର ଗୌରବ ମଣ୍ଡିତ ଭୂଖଣ୍ଡ । ସ୍ୱୟଂ ମହାରାଜା ଖାରବେଳ ଥିଲେ ନୃତ୍ୟଗୀତ ବିଶାରଦ ଓ ବୀଣା ବାଦକ ।

ମେଘାସ୍ଥିନିସଙ୍କ ବିବରଣୀ ଅନୁଯାୟୀ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ରାଜତ୍ୱ କାଳରେ କଳିଙ୍ଗରେ ଷାଠିଏ ହଜାର ପଦାତିକ ସୈନ୍ୟ, ଏକ ହଜାର ଅଶ୍ୱାରୋହୀ ସୈନ୍ୟ, ସାତ ଶହ ଯୁଦ୍ଧ ଅଶ୍ୱ ଏବଂ ସହସ୍ରାଧିକ ହସ୍ତୀ ଥିଲେ । ସମ୍ରାଟ ଅଶୋକଙ୍କ ସମୟରେ ଏହା ଆହୁରି ବୃଦ୍ଧି ପାଇ ସୈନ୍ୟ ସଂଖ୍ୟା ପ୍ରାୟ ପାଞ୍ଚ ଲକ୍ଷ ଥିବାର ଐତିହାସିକ ସୂତ୍ରରୁ ପ୍ରକାଶ । ଖାରବେଳଙ୍କ ସୈନ୍ୟ ସଂଖ୍ୟା ଅଶୋକଙ୍କ ସମୟର ସୈନ୍ୟ ସଂଖ୍ୟା ପାଞ୍ଚ ଲକ୍ଷ ଠାରୁ ମଧ ଅଧିକ ଥିବାର ଜଣାଯାଏ । ମୌର୍ଯ୍ୟ ସାମ୍ରାଜ୍ୟର ପ୍ରତିଷ୍ଠାତା ଚନ୍ଦ୍ରଗୁପ୍ତଙ୍କର ଛ' ଲକ୍ଷ ସୈନ୍ୟ ଥିଲେ ।

କଳିଙ୍ଗ ଯୁଦ୍ଧ ନିର୍ବିବାଦରେ ଓଡ଼ିଶାର ସମାଜିକ ତଥା ଅର୍ଥନୈତିକ ଜୀବନକୁ ସମ୍ପୂର୍ଣ୍ଣ ବିପର୍ଯ୍ୟସ୍ତ କରିଦେଇଥିଲେ ହେଁ, ପରୋକ୍ଷରେ ସାମାଜିକ ତଥା ସାଂସ୍କୃତିକ ଜୀବନକୁ ପରବର୍ତ୍ତୀ କାଳରେ ଏକ ମହତ୍ତ୍ୱପୂର୍ଣ୍ଣ ଦିଗ ପ୍ରଦାନ କରିଥିଲା । ଯେମିତି ୧୮୬୬ର ନ'ଅଙ୍କ ଦୁର୍ଭିକ୍ଷ । ଯାହାର ବିନାଶକାରୀ ପରିଣତି ପରେ ରାଜ୍ୟରେ ଶିକ୍ଷା ଓ ଜଳସେଚନର ସୁବିଧା ପାଇଁ ସୁବର୍ଣ୍ଣ ସୁଯୋଗ ଆଣିଦେଇଥିଲା । ଫଳରେ ପ୍ରତିଷ୍ଠା ହୋଇଥିଲା ରେଭେନ୍ସା କଲେଜ । ଖନନ ହୋଇଥିଲା ତାଳଦଣ୍ଡା, କେନ୍ଦ୍ରାପଡ଼ା ଓ ହାଇଲେଭେଲ କେନାଲ । ଏହାଫଳରେ ଓଡ଼ିଶାର ସାମାଜିକ ତଥା ଅର୍ଥନୈତିକ କ୍ଷେତ୍ରରେ ଏକ ଯୁଗପତ ପରିବର୍ତ୍ତନ ସଂଘଟିତ ହୋଇଥିଲା ।

କଳିଙ୍ଗର ଅଧିବାସୀମାନେ ଥିଲେ ପ୍ରକୃତିର ଉପାସକ ତଥା ପ୍ରେତ ପୂଜକ । ସଧାରଣତଃ, ଆଟବିକମାନେ କାଠ ଓ ପଥର ଦେହରେ ଶକ୍ତିର ଚେତନାକୁ ଅନୁଭବ କରନ୍ତି । ରକ୍ତରେ ନିରାଜନା କରନ୍ତି । ବୃକ୍ଷ ଓ ପଶୁ-ପକ୍ଷୀ ପୂଜା, ସ୍ତମ୍ଭେଶ୍ୱରୀ, ଖମ୍ଭେଶ୍ୱରୀ ଆଦି ପୂଜା ଥାଏ ସେମାନଙ୍କ ଆଧାତ୍ମିକ ଚିନ୍ତା ଓ ଚେତନାର ଚୌହଦୀରେ । ଆରମ୍ଭରୁ କଳିଙ୍ଗ ଅଧିବାସୀମାନେ ଠିକ ଏହି ବନବାସୀ ଧାର୍ମିକ ଚିନ୍ତାଧାରାର ବଶବର୍ତ୍ତୀ ହୋଇ ପରେ ନାଥଧର୍ମ ତଥା ଆଟବିକ ଧର୍ମାନୁରାଗୀ ହୋଇଥିଲେ । କଳିଙ୍ଗ ଯୁଦ୍ଧ ପରେ ପରେ ହିଁ କଳିଙ୍ଗ ସମାଜ ବୌଦ୍ଧ ଧର୍ମ ଦ୍ୱାରା ପ୍ରଭାବିତ ଓ ଦୀକ୍ଷିତ ହୋଇଥିଲା । କୌଣସି ଏକ ଆଧାତ୍ମିକ ସମାଜ ପରି ସେତେବେଳେକାର ବୌଦ୍ଧ ଧର୍ମ ଥିଲା ସଂଘ ଭିତ୍ତିକ ଏକ ସୁସଂଗଠିତ ସମାଜ । ତାର ପ୍ରଭାବରେ ଆସି କଳିଙ୍ଗ ସମାଜ କ୍ରମଶଃ ଶୃଙ୍ଖଳିତ / ସୁସଂଗଠିତ ହୋଇପାରିଥିଲା ।

ଖାରବେଳଙ୍କ ସମୟ ବେଳକୁ କଳିଙ୍ଗମାନେ କିନ୍ତୁ ଜୈନ ଧର୍ମରେ ଦୀକ୍ଷିତ ହୋଇସାରିଥିଲେ । କଳିଙ୍ଗବାସୀମାନଙ୍କର ଜୀବନଠାରୁ ବଳି ମହତ୍ତର ଜୀନାସନ (ଜୀନମୂର୍ତ୍ତି)କୁ ଅପହୃତକାରୀ ମଗଧ ପାଖରୁ ପୁନରୁଦ୍ଧାର କରିଥିଲେ ସମ୍ରାଟ ଖାରବେଳ । ବର୍ତ୍ତମାନ ଶ୍ରୀମନ୍ଦିରର ଚତୁର୍ଦ୍ଧାମୂର୍ତ୍ତିର ମୂଲ୍ୟ ଯାହା, ସେତେବେଳେ ଜୀନାସନ ଥିଲା କଳିଙ୍ଗ ଅଧିବାସୀଙ୍କପାଇଁ ଠିକ ତାହା ।

କଳିଙ୍ଗ କନ୍ୟା କାରୁବାକୀ ଉପାଖ୍ୟାନ ସତ୍ୟ ହୋଇଥାଇପାରେ । କିନ୍ତୁ, ସେ ଯେ ଧୀବର କନ୍ୟା ଥିଲେ, ଏହା ଅସତ୍ୟ ଉପରେ ହିଁ ଆଧାରିତ । କାରଣ, ଆଜିପରି ତତ୍କାଳୀନ କଳିଙ୍ଗ ସମାଜ ଜାତିଭେଦ ଗ୍ରସ୍ତ ନଥିଲା । ସମାଜରେ ଗୋତ୍ର ଗ୍ରହଣର ପରମ୍ପରା କିମ୍ବା ଜାତି-ଉପଜାତି ପ୍ରଥା ସୃଷ୍ଟି ହୋଇନଥିଲା । ଏସବୁ ଓଡ଼ିଶା ମଧକୁ ଆର୍ଯ୍ୟ ଆଗମନର ପରବର୍ତ୍ତୀ କାଳର କଥା । ଯୁଦ୍ଧ ଓ କୃଷି ଏବଂ ଶିକାର ବିଶେଷ କରି ମତ୍ସ୍ୟ ଜୀବିକା କଳିଙ୍ଗ ଅଧିବାସୀମାନଙ୍କର ପ୍ରଧାନ ବୃତ୍ତି ଥିଲା । ଅଶୋକ ଓ ଖାରବେଳଙ୍କ ସମୟ ପୂର୍ବରୁ କଳିଙ୍ଗରେ ଉନ୍ନତ ହସ୍ତୀପଲ ଥିଲେ । ଏଣୁ ''ଗଂଗାରିଡେ'' ଓ କଳିଙ୍ଗ ଗଜର ପ୍ରାଧାନ୍ୟ ପ୍ରାଚୀନ ସାହିତ୍ୟରେ ମିଳେ । ଗ୍ରୀକ ଐତିହାସିକମାନେ ଏହା ବର୍ଣ୍ଣନା କରିଛନ୍ତି । ଐତିହାସିକ ଡକ୍ଟର ସତ୍ୟ ନାରାୟଣ ରାଜଗୁରୁ ଲେଖିଛନ୍ତି ଯେ 'ମଗଧର ସୁଂଗ ରାଜବଂଶ ଓଡ଼ିଶାର ଚେଦିରାଜବଂଶ ରାଜତ୍ୱ ସମୟରେ ଶିଳ୍ପକଳାର ପ୍ରଭୂତ ଉନ୍ନତି ସାଧିତ ହୋଇଥିଲା । ସାଞ୍ଚି



ବୌଦ୍ଧ ସ୍ତୂପର ବାଡ଼ରେ ଓ ଭାରହୁତ ତଥ୍ୟ ବୋଧଗୟା ସ୍ତୂପଗୁଡ଼ିକରେ ଯେପରି ଦେଶବାସୀଙ୍କ ସାମାଜିକ ଜୀବନର ବିବରଣୀ ପ୍ରଦର୍ଶିତ ହୋଇଛି ସେପରି ଚେଦିରାଜବଂଶ ସମୟର କଳିଙ୍ଗର ଅଧିବାସୀଙ୍କ ସାମାଜିକ ସଂସ୍କୃତି ଖଣ୍ଡଗିରି ଓ ଉଦୟଗିରି ଗୁମ୍ଫା ଗୁଡ଼ିକରେ ପ୍ରଦର୍ଶିତ ହୋଇଛି । ଏହି ତତ୍‌କାଳ ସମାଜରେ ନାଗପୂଜା ଓ ଯକ୍ଷପୂଜାର ପରମ୍ପରା ଥିଲା । କଳିଙ୍ଗର ତତ୍‌କାଳୀନ ସଂସ୍କୃତି ଏବଂ ସାମାଜିକ ଆଚାର, ଶିଳ୍ପକଳାର ସ୍ୱାତନ୍ତ୍ୟ ପ୍ରଦର୍ଶିତ ହୋଇଥିଲା । ସେଥିମଧ୍ୟରୁ ମଞ୍ଚପୁରୀ ଗୁମ୍ଫା, ଅନନ୍ତ ଗୁମ୍ଫା ପ୍ରଧାନ ।

କଳିଙ୍ଗ ରାଜ୍ୟ ବିଷୟରେ ମହାକବି କାଳିଦାସ ତାଙ୍କ ''ଇନ୍ଦୁମତୀ'' କାବ୍ୟରେ ବେଶ୍ ଏକ ରୋଚକ ବର୍ଣ୍ଣନା ଦେଇଛନ୍ତି:- ବିଦର୍ଭ ରାଜାଙ୍କ ଅନୂଢ଼ା ସୁନ୍ଦରୀ କନ୍ୟା 'ଇନ୍ଦୁମତୀ'ଙ୍କ ସ୍ୱୟମ୍ବର ସଭାରେ କଳିଙ୍ଗ ରାଜା ହେମାଙ୍ଗଦଙ୍କୁ ଦେଖେଇ ସହଚରୀ-ଦାସୀ 'ସୁନନ୍ଦା' କହୁଛି- ''ଇଏ ମହେନ୍ଦ୍ର ପର୍ବତ ଭଳି ଶକ୍ତିଶାଳୀ । ବିରାଟ ଧନୁର୍ଦ୍ଧର । ଉଭୟ ମହେନ୍ଦ୍ର ପର୍ବତ ଓ ମହୋଦଧିର ଅଧିପତି । ପ୍ରଭାତରେ ସାଗର ତାଙ୍କ ପ୍ରସାଦର ପାଦ ପ୍ରକ୍ଷାଳନ କରେ ଓ ମନ୍ଦ୍ର ସ୍ୱରରେ ରାଜଙ୍କୁ ନିଦ୍ରାରୁ ଜଗାଏ ।''

ଅନ୍ୟ ଏକ ସୂଚନାରୁ ଯାହା ପ୍ରମାଣ ମିଳେ, ଅଶୋକଙ୍କ କଳିଙ୍ଗ ଆକ୍ରମଣ ତଥା ଖାରବେଳଙ୍କ ଦିଗବିଜୟୀ ଶାସନର ଅନ୍ତ ପରେହିଁ କଳିଙ୍ଗର କ୍ଷମତା କେନ୍ଦ୍ର ଭୁବନେଶ୍ୱର ଅଞ୍ଚଳରୁ ସ୍ଥାନାନ୍ତରିତ ହୋଇ ଅବିଭକ୍ତ ଗଞ୍ଜାମ ଜିଲ୍ଲାର ମହେନ୍ଦ୍ରଗିରି ଅଞ୍ଚଳକୁ ପରିବର୍ତ୍ତିତ ହୋଇଥିଲା । ପରିଶେଷରେ ଏହା କଟକ (ଅଭିନବ ବାରଣାସୀ କଟକ) ସ୍ଥାନାନ୍ତର ହୋଇଥିଲା କେଶରୀ ବଂଶର ଶାସନ କାଳରେ । ମର୍କତ କେଶରୀ, ନୃପ କେଶରୀ, ସୁବର୍ଣ୍ଣ କେଶରୀ, ମାଧବ କେଶରୀ, ଲଲାଟେନ୍ଦୁ କେଶରୀ ଆଦି ହେଉଛନ୍ତି କଟକରୁ କଳିଙ୍ଗ ବା ଉତ୍କଳକୁ ଶାସନ କରୁଥିବା ରାଜନ୍ୟବର୍ଗ । କେଶରୀ ରାଜକନ୍ୟା ନନ୍ଦିକେଶ୍ୱରୀଙ୍କ ଆମନ୍ତ୍ରଣରେ ଚୋଡଗଙ୍ଗଦେବ ଓଡ଼ିଶାରେ ଗଙ୍ଗ ବଂଶର ପ୍ରତିଷ୍ଠା କରିଥିଲେ । ଶେଷ କେଶରୀ ବଂଶର ନରପତି ଭାନୁଦେବଙ୍କ ହାତରୁ କ୍ଷମତା ଅପହରଣ କରିଥିଲେ । ତାଙ୍କର ନାମାନୁସାରେ ନନ୍ଦିକେଶ୍ୱରୀ ପଠା ।

କଲେଜଛକ, କଟକ
ଫୋନ-୮୨୮୦୭୭୪୯୦୪

○○





# କଟକର ତାରକସି ଶିଳ୍ପ

❖ କାଞ୍ଚି ନାରାୟଣ ମହାନ୍ତି

କଟକ ସହରର କୁଶଳୀ କାରିଗରମାନଙ୍କ ଶ୍ରମ ଓ ସୃଜନର ଯଥାର୍ଥ ପ୍ରାପ୍ୟ ଅତୀତରେ ଲୁଣ୍ଠିତ ହେଉଥିଲା । କେତେକ ବାହାର ବ୍ୟବସାୟୀ ଓ ମହାଜନଙ୍କ ଚକ୍ରାନ୍ତରୁ ସେମାନେ ମୁକୁଳିପାରୁ ନଥିଲେ । କଟକର ବହୁ କୁଶଳୀ ତାରକସି ଶିଳ୍ପର କାରିଗରଙ୍କର ସୂକ୍ଷ୍ମଦୃଷ୍ଟି ଓ କାରିଗରୀ ନୈପୁଣ୍ୟର ତୁଳନା ନାହିଁ । ତାରକସି ଶିଳ୍ପର ଠିକ ଇତିହାସ ଏଯାବତ ନିରୂପିତ ହୋଇ ପାରି ନାହିଁ, ତେବେ ମୋଗଲ ଶାସନ ସମୟରୁ ଅର୍ଥାତ ୧୫୬୮ ଖ୍ରୀଷ୍ଟାବ୍ଦ ଠାରୁ ୧୭୫୧ ମଧ୍ୟରେ କଟକର ଲାଲବାଗ ଅଞ୍ଚଳରେ ଯଥା ଚାନ୍ଦିନୀଚୌକ ଶେଖ୍‌ବଜାର, ମହମ୍ମଦିଆ ବଜାର, ଦେୱାନବଜାର, କାଜୀବଜାର, ମେହେନ୍ଦୀପୁର, କାଫଲାବଜାର, ଅଲିଶାବଜାର । ବହୁ ସାହି ବସ୍ତି ଆଦି ମୁଣ୍ଡ ଟେକିଲା କାରଣ ମୋଗଲ ସୁବେଦାରଙ୍କ ବାସସ୍ଥାନ ଲାଲବାଗ ଯାହା ବର୍ତ୍ତମାନର ଶିଶୁଭବନ ଅଞ୍ଚଳ ଏହି ଇଲାକାରେ ରହିଥିଲା ।

ସେହି ସମୟରେ କାବୁଲି ବେପାରି ମାନେ ଆସି ହଜାର ହଜାର ଭରି ଓଜନର ଗହଣା ତିଆରି କରି ସେମାନଙ୍କ ଦେଶକୁ ପଠାଉଥିଲେ । ଡକ୍ଟର ବଂଶୀଧର ଜେଠୀ ଲେଖିଛନ୍ତି - ଏହି ଗହଣାମାନଙ୍କ ମଧ୍ୟରେ ବେକରେ ପିନ୍ଧିବା ପାଇଁ ହସିଲି, କାନରେ ପିନ୍ଧିବା ପାଇଁ ବିଜ୍‌ଲି, ଜାମାରେ ଲଗାଇବା ପାଇଁ ଚେନ୍, ଲାଖ ବୋତାମ ଏବଂ ଆଉ ଅନେକ ସୁନାଗହଣା ପାଇଁ ବରାଦ କରୁଥିଲେ । ସେସବୁ ରୁପାକାମ ମୋଟା ଜାଲିକାମ ସହିତ ରଙ୍ଗୀନ କାଚପଥର ଦ୍ୱାରା ତିଆରି ହେଉଥିଲା । ସେତେବେଳେ ନିଦାକାମ ଥିଲା, ଏବେ ସୌକିନ କାମ ପସନ୍ଦ ।

ଗହଣା ତିଆରି କରୁଥିବା ଶିଳ୍ପୀମାନେ ମାନସିଂହ ପାଟଣା, ରାମଗଡ, ଡଗରପଡା, ଅଲିଶାବଜାର, ମହମ୍ମଦିଆବଜାର ପ୍ରଭୃତି ଅଞ୍ଚଳରେ ରହୁଥିଲେ । ଏଥିସହିତ ଲାଲ୍‌ବାଗ ଠାରୁ ମାତ୍ର ଅଳ୍ପ ଦୂରରେ ବକ୍ସିବଜାର, ମଙ୍ଗଳାବାଗ, ନୂଆପାଟଣା, ବିଦ୍ୟାଧରପୁର, କଖଡି ଦାଢ଼ା, ବାରଙ୍ଗ ଏବଂ ଚୌଦ୍ୱାର ପ୍ରଭୃତି ଅଞ୍ଚଳରେ ଥିବା ବଣିଆ କାରିଗରମାନେ ଏହି କାମରେ ସିଦ୍ଧହସ୍ତ ଥିଲେ । ପୁରୁଣା ବଣିଆ କାରିଗରୀ ଅପେକ୍ଷା ଆଜିକାଲି ଯୁଗୋପଯୋଗୀ ହାଲୁକା ଅଳଙ୍କାର ବଜାରରେ ବହୁ ନାମିଦାମି କଂପାନିମାନଙ୍କ ଦ୍ୱାରା ଉପଲବ୍ଧ ହେଉଛି ଏବଂ ବିଦେଶରେ ମଧ୍ୟ ଆମ ଓଡ଼ିଶା ତଥା ଭାରତୀୟ କାରିଗରୀର ଯଥେଷ୍ଟ ଚାହିଦା ରହିଛି । କଟକର ତାରକସିକାମର ପ୍ରଶସ୍ତି ବିଶ୍ୱ ଦରବାରରେ ପ୍ରସିଦ୍ଧି ଲାଭକରି ପାରି ଥିବାରୁ କଟକ ମହାନଗରୀକୁ 'ସିଲ୍‌ଭରସିଟି' ବୋଲି କୁହାଯାଏ । ଏହି 'ରୌପ୍ୟନଗରୀ'ର ସୁନ୍ଦର, ସୂକ୍ଷ୍ମ ସରୁ ରୁପା ସୂତାର ଯେଉଁ ଚମକପ୍ରଦ କାରୁକାର୍ଯ୍ୟ ତାହା ଯେ କେହି ବ୍ୟକ୍ତିକୁ ଅଭିଭୂତ କରିଥାଏ ।

କଟକର ତାରକସି ଶିଳ୍ପ ହେଉଛି ଏଠିକାର ବଣିଆ ସଂପ୍ରଦାୟର ବଂଶଗତ ବୃତ୍ତି ଏବଂ କୃତି । ଦୀର୍ଘବର୍ଷ ଧରି କଟକ ସହରର ପୁରାତନ ଅଧିବାସୀ ଭାବେ ଏଠାରେ ବସତି ସ୍ଥାପନ କରିଥିବା ଯେଉଁ କେତେକ ଜାତି କଟକର ମୂଳବାସିନ୍ଦା ଭାବରେ ସ୍ୱୀକୃତ ସେମାନେ ହେଲେ ଗଉଡ, କେଉଟ, ବେପାରି ଓ ବଣିଆ ପ୍ରଭୃତି ସେଥିଲାଗି 'ବାଉନବଜାର ତେପନ ଗଳି' ଭିତରେ ଅନେକ ସ୍ଥାନରେ ବଣିଆ ସାହି ଓ ବଣିଆ କାମର ବେଉଷା ବଂଶାନୁକ୍ରମେ ସେମାନଙ୍କର ଶ୍ରେଷ୍ଠତ୍ୱ ପ୍ରଦର୍ଶନ କରି ଆସୁଛନ୍ତି ।

ଇଣ୍ଡୋନେସିଆର 'ଆର୍ଟଫର୍ମର କାରୁକାର୍ଯ୍ୟ ସହିତ କଟକର ତାରକସି କାମର କେତେକ ସାମଞ୍ଜସ୍ୟ ରହିଛି । ଏହାହିଁ ଉତ୍କଳର ପ୍ରାଚୀନ ନୌବାଣିଜ୍ୟ ପରଂପରାର ପ୍ରତୀକ ଓ କଳିଙ୍ଗ ଶିଳ୍ପୀମାନଙ୍କର ବିଶ୍ୱ ବାଣିଜ୍ୟ ଓ କଳାତ୍ମକ ଅଭିନିବେଶ ଜନିତ ପରିପ୍ରସାରର ପ୍ରମାଣ ଦିଏ ।

ଗତଶତକର ପଚାଶ ଦଶକରେ ପାରଂପରିକ ରୁପାଗହଣା ସହିତ ସୁନାର ଅଳଙ୍କାରର ମଧ୍ୟ ବହୁଳ ବ୍ୟବହାର ଥିଲା ।



ସାଧାରଣତଃ ମଧ୍ୟମକାର ପରିବାର ଶୁଭ ଆନୁଷ୍ଠାନିକ କର୍ମରେ ଖଡ଼ୁ, ପାହୁଡ, ବାଲା, ମଲ, ବଟଫଳ, ବାଲିଆ, ଗୋଠ, କଣ୍ଠି, ମଥାମଣି, ବାଜୁ, ପଞ୍ଚମ, ପାଉଁଜି, ବାହୁଚୁଡି, ଝୁଣ୍ଟିଆ, ଚନ୍ଦ୍ରହାର ମୁଦି ଇତ୍ୟାଦିର ମହିଳାମାନଙ୍କର ପରିପାଟୀକୁ ମର୍ଯ୍ୟାଦାବନ୍ତ ବୋଲି ମନେ କରାଯାଉଥିଲା ।

ଆଗେ ରାଜା ମହାରାଜାମାନଙ୍କର ଏହି ଚାନ୍ଦି କାରିଗରମାନଙ୍କ ପାଇଁ ଯଥେଷ୍ଟ ପ୍ରୋତ୍ସାହନ ଥିଲା । ଆମ ସାମାଜିକ ଜୀବନ ପ୍ରଣାଳୀକୁ, ସେମାନେ ପ୍ରୀତିପୂର୍ଣ୍ଣ ରଖିବା ସହିତ ରୁପାର ବାସନକୁସନ ଏପରିକି ରୁପାଚାମଚ ଠାରୁ ରୁପା ଗଡୁ, ଗରା, ଗମଲା ପ୍ରଭୃତି ବରାଦ କରାଯାଉଥିଲା । ରାଜ ପରିବାର ମାନଙ୍କର ବଡବଡ ଚାନ୍ଦିକାମର ଝାଡ, ଫଟୋଫ୍ରେମ୍, ଅତରଗିନା, ଗୋଲାପ ବାସ ଅତର ଛିଞ୍ଚା, ଫୁଲଦାନୀ ଆଦି ଘର ସଜ୍ଜା ଉପକରଣ ତଥା ରାଜାରାଜୁଡା ଉତ୍ସବରେ ପରସ୍ପର ରାଜପରିବାରକୁ ଉପହାର ପ୍ରଦାନ କରାଯାଉଥିଲା ।

ଚାନ୍ଦିର ସୌଖୀନ୍ ଉପହାର ମଧ୍ୟରେ ସେ ସମୟରେ ନିଦା ଗଢ଼ଣର ବେକର ହାର-ଲକେଟ, କାନଫୁଲ, ହାତମୁଦି, ସିନ୍ଦୂରଫରୁଆ, ଗୋଲାପଫୁଲ, ଯାଇଫୁଲ, ମୁଣ୍ଡକଣ୍ଟା ବା ହେୟାର ପିନ୍ ପ୍ରଭୃତି ବ୍ୟବହୃତ ହେଉଥିବା ବେଳେ ଆଜିକାଲି ଆଧୁନିକ ଶୈଳୀର ସୂକ୍ଷ୍ମ ତଥା ହାଲୁକା ରୂପସଜ୍ଜା ଅଳଂକାର ବଜାରରେ ଉପଲବ୍ଧ ହୋଇଥାଏ ।

ଉତ୍କଳଗୌରବ ମଧୁସୂଦନ ଦାସ ଓଡ଼ିଶା ମାଟିର ସର୍ବାଙ୍ଗୀନ ଉନ୍ନତି ପାଇଁ ଚିନ୍ତା କରୁଥିଲେ । ସେ କଟକର ସୁନାରୁପାର ତାରକସି କାମର ସୁଦୂରପ୍ରସାରୀ ଭବିଷ୍ୟତକୁ ଆଖିରେ ରଖି 'ଓଡ଼ିଶା ଆର୍ଟ ୱାର୍କସ' ନାମରେ ଏକ କାରଖାନା ପ୍ରତିଷ୍ଠା କରିଥିଲେ । ଏହି କାରଖାନାରେ ନିର୍ମିତ ସୁନାରୁପାର ତାରକସି କାମ ଦେଶ ବିଦେଶରେ ଆଦର ଲାଭ କରିଥିଲା ।

କଟକର କେନ୍ଦ୍ରସ୍ଥଳ ମାଆ କଟକଚଣ୍ଡୀ ମନ୍ଦିର ସମ୍ମୁଖରେ ଥିବା ମଧୁବାବୁଙ୍କ ବାସଭବନ ହତା ଭିତରେ ଏହି କାରଖାନାରେ ଦକ୍ଷ କାରିଗର ମାନଙ୍କ ଦ୍ୱାରା ଶ୍ରେଷ୍ଠ କଳାତ୍ମକ ସାମଗ୍ରୀ ନିର୍ମାଣ ଓ ବ୍ୟବସାୟ ଚାଲିଥିଲା । ମଧୁବାବୁ ଏହାକୁ ବ୍ୟବସାୟିକ ଦୃଷ୍ଟିକୋଣରୁ ନଚଳାଇ ଗୁଣାତ୍ମକ ଉତ୍ପାଦନ ଉପରେ ଗୁରୁତ୍ୱ ଦେଉଥିଲେ । ଏହାର ପ୍ରଭାବରେ କ୍ରମେ କାରଖାନାର ପରିଚାଳନା ବ୍ୟାହତ ହେଲା ଏବଂ ଶେଷକୁ ତାହା ବନ୍ଦ ହୋଇ ଯାଇଥିଲା ।

ମଧୁବାବୁଙ୍କର ସୁନାରୁପାର ତାରକସି କାମର ବିକାଶ ଲାଗି କେବଳ ଯେ "ଓଡ଼ିଶା ଆର୍ଟ ୱାର୍କ୍ସ" ପ୍ରତିଷ୍ଠା ହୋଇଥିଲା ତାହା ନୁହେଁ, ୧୯୦୫ ମସିହାରେ କଟକ ରେଳଷ୍ଟେସନ ନିକଟରେ ୪୦ ଏକର ଜାଗାରେ 'ଉତ୍କଳ ଟ୍ୟାନେରୀ' ନାମରେ ଏକ ଜୋତା କାରଖାନା ବସାଇ ଥିଲେ । ଏଠାରୁ ଯେଉଁ ଉନ୍ନତମାନର ଜୋତା ପ୍ରସ୍ତୁତ ହେଉଥିଲା ତାହା ବିଦେଶୀ ମାନଙ୍କର ବିଶେଷ ପସନ୍ଦ ଥିଲା । ୧୯୦୭ ମସିହାରେ କଲିକତାରେ ଅନୁଷ୍ଠିତ ପ୍ରଦର୍ଶନୀରେ ଏହି ଉତ୍କଳଟ୍ୟାନେରୀ ଉଚ୍ଚମାନର ଜୋତା ନିର୍ମାଣ ଲାଗି ସ୍ୱର୍ଣ୍ଣ ପଦକ ଲାଭ କରିଥିଲା । ମହାତ୍ମାଗାନ୍ଧି ଏହି ଅନୁଷ୍ଠାନକୁ ଅକାଳ ମୃତ୍ୟୁରୁ ରକ୍ଷା କରିବାକୁ ଅପ୍ରାଣ ଚେଷ୍ଟା କରିଥିଲେ । ଶେଷକୁ ଏହା ହିଁ ମଧୁବାବୁଙ୍କୁ ଦେବାଳିଆ କରି ଦେଇଥିଲା । ପୂର୍ବତନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କର ତାରକସି କାରୁକାର୍ଯ୍ୟର ବିକାଶ ପାଇଁ ଥିବା ଅସୀମ ଅନୁଦାନରୁ ଗୋଟିଏ ହେଲା 'କଳିଙ୍ଗ ଫିଲିଗ୍ରି ୱାର୍କ୍ସ' ।

ବିଜୁବାବୁ ଜଣେ ଗଭୀର ଅନୁଭବୀ ବ୍ୟକ୍ତି । ସେ ସବୁ କଥାକୁ ତୃଣମୂଳ ସ୍ତରରୁ ବିଶ୍ଳେଷଣ କରି ପରବର୍ତ୍ତୀ ପଦକ୍ଷେପ ଗ୍ରହଣ କରିଥାନ୍ତି । ୧୯୬୦ ମସିହାର କଥା, ଡାଇରେକ୍ଟର ଅଫ ଇଣ୍ଡଷ୍ଟ୍ରୀଜ୍ ଡିରେକ୍ଟର ସେତେବେଳେ ଥିଲେ ପରମାନନ୍ଦ ତ୍ରିପାଠୀ । ତାଙ୍କର ସ୍ୱଚ୍ଛ ପ୍ରଶାସକର ଭୂମିକା ତଥା କାର୍ଯ୍ୟକାରୀତା ସଂପର୍କରେ ବିଜୁବାବୁ ନିଃସନ୍ଦେହ ଥିଲେ । ଉଭୟେ ଅତି ଅନ୍ତରଙ୍ଗ ଭାବେ ପରସ୍ପରକୁ ଜାଣିଥିଲେ । ଦିନେ ପରମାନନ୍ଦ ବାବୁଙ୍କୁ ଡାକି କହିଥିଲେ । କଟକିଆ ଭାବରେ ଆମକୁ କେତେଗୁଡିଏ କାମ କରିବାକୁ ହେବ । କଟକ ତାରକସି କାରିଗରମାନେ ଦିନରାତି ଖଟିଖଟି ମରୁଛନ୍ତି କିନ୍ତୁ ତାଙ୍କୁ ପ୍ରକୃତ ପାରିଶ୍ରମିକ ମିଳୁନାହିଁ । ବିହାରୀ ବ୍ୟବସାୟୀମାନେ ପ୍ରଚୁର ଲାଭ ଉଠାଇ ନେଇ ଚାଲିଛନ୍ତି । ତାପରେ ଜନ୍ମନେଲା କଳିଙ୍ଗ ଫିଲିଗ୍ରୀ ୱାର୍କ୍ସ । ନୀତିବାନ ତ୍ରିପାଠୀ ମହୋଦୟଙ୍କ ପ୍ରଚେଷ୍ଟାରେ କଟକର କାଠଯୋଡି ତଟବର୍ତ୍ତୀ ଖପୁରିଆ ଶିଳ୍ପାଞ୍ଚଳରେ ଶହଶହ କାରିଗର ମାନଙ୍କୁ ନେଇ ଗଢ଼ି ଉଠିଲା ଏହି ଅନୁଷ୍ଠାନ । ପାଞ୍ଚବର୍ଷ ମଧ୍ୟରେ ଏହାର ଉତ୍ପାଦିତ ଦ୍ରବ୍ୟ ସରକାରଙ୍କର ରାଜକୋଷ ପାଇଁ ଅପ୍ରତ୍ୟାଶିତ ଅଭିବୃଦ୍ଧି ଘଟାଇଥିଲା ।

ବିଜୁବାବୁ ଉଦ୍‌ଯୋଗୀ ପରମାନନ୍ଦ ତ୍ରିପାଠୀଙ୍କୁ ସାରା ଭାରତବର୍ଷରେ ଏହାର ଶାଖା ଖୋଲି କଳିଙ୍ଗର ତାରକସି ଶିଳ୍ପ ବିକାଶ ପାଇଁ ଅନୁମତି ଦେଇଥିଲେ । ତାରକସି କାରିଗର ମାନଙ୍କର ଦୁରବସ୍ଥା କ୍ରମେ ସୁଧୁରିଯାଇଥିଲା । ସେମାନଙ୍କର ପିଲାମାନଙ୍କର





ଶିକ୍ଷା, ସ୍ୱାସ୍ଥ୍ୟ ବିକାଶ ପାଇଁ ସରକାରୀ ସୁବିଧା ସୁଯୋଗର ବ୍ୟବସ୍ଥା କରାଯାଇଥିଲା । କଟକର ପାଞ୍ଚଟି ସାହି ଯଥା ମାନସିଂହପାଟଣା ଅଲିଶାବଜାର, ମହମ୍ମଦିଆ ବଜାର, ବକ୍ସିବଜାର ଓ ବିଦ୍ୟାଧରପୁର ପ୍ରଭୃତି ସ୍ଥାନମାନଙ୍କରେ ଥିବା ବଣିଆ ସାହିର ଶିଳ୍ପୀମାନେ ତାରକସି ଶିଳ୍ପୀର ସଫଳତାର ବିନ୍ଧାଣି । ମଧୁବାବୁ, ବିଜୁବାବୁଙ୍କର କୀର୍ତ୍ତିମୟ ଐତିହ୍ୟ ପ୍ରତି ପ୍ରୋତ୍ସାହନ ଥିଲା ।

କଟକ ମହାନଗର ପାର୍ବଣର ଏକ ପୁଣ୍ୟଭୂମି । କଟକର ପୂଜାପାଇଁ ଯେପରି ଦେବଦେବୀ ମାନଙ୍କର ପୀଠ ଅଛି ମୃଣ୍ମୟ ମୂର୍ତ୍ତି ପୂଜା ପାଇଁ ସେହିପରି ମଣ୍ଡପ ରହିଛି । ମନ୍ଦିର ଓ ମଣ୍ଡପକୁ ବିଭିନ୍ନ ସାହି, ବଜାରର ମୁରବୀମାନେ ଉତ୍ସବମୁଖର କରି ରଖିବାରେ ଯେଉଁମାନଙ୍କର ସାହାଯ୍ୟ ଅନିବାର୍ଯ୍ୟ ମଣିଥାନ୍ତି ସେମାନେ ହେଲେ ମୃଣ୍ମୟ ମୂର୍ତ୍ତିର ନିର୍ମାଣକାରୀ ବିଶ୍ୱକର୍ମା ମାଟି କାରିଗର । ମାଟିର ମୂର୍ତ୍ତିପୂଜା ହେଲା ପରେ ତାଙ୍କପାଇଁ ମେଢ଼ ପ୍ରସ୍ତୁତି କାରିଗର ମେଢ଼ର ଜରି କାମରେ କଟକର ସୁନେଲି, ରୁପେଲି ଝିଲିମିଲି ପାଇଁ ମେଢ଼ ମୂର୍ତ୍ତି ସାଜସଜ୍ଜା ଓଡ଼ିଶାର ଅନ୍ୟକେଉଁଠି ଦେଖିବାକୁ ମିଳନ୍ତି ନାହିଁ ।

ବିଦ୍ୟୁତ୍ ଆଲୋକର ପ୍ରଭାବରେ ଏ ସୁନେଲି ରୁପେଲି ଜରିମେଢ଼ ଓଡିଶା ତଥା ବାହାର ଆଗନ୍ତୁକମାନଙ୍କୁ କଟକର ଦଶହରା ଉତ୍ସବ ଗଭୀର ଭାବରେ ଆକର୍ଷିତ କରିଥାଏ ।

ଜରି ମେଢ଼କୁ ସାଇତି ରଖି ପୁଣି କିଛି ବର୍ଷ ପୂଜାରେ ବ୍ୟବହାର କରିବା ପରେ ତାହା ନଷ୍ଟ ହୋଇଯାଉଥିବାରୁ ସ୍ଥାୟୀ ମେଢ଼ ପାଇଁ ଚାନ୍ଦିମେଢ଼ ଆରମ୍ଭ ହେଲା । କ୍ୱିଣ୍ଟାଲ ପରିମାଣର ରୁପାକୁ ବର୍ଷ ବର୍ଷ ଧରି ତାରକସି ଫୁଲ, ମୟୂର, ମାଛ, ପଦ୍ମହାର ରଣପତ୍ର, ଶୁଆ ଇତ୍ୟାଦି କୁନ୍ଦ କାରିଗରମାନେ କଟକର ଦଶହରା ମଣ୍ଡପକୁ ଗରିମାମୟ କରି ପାରିଛନ୍ତି । ସବୁବେଳେ ମେଢ଼କାମ ଯେ କାରିଗରମାନଙ୍କୁ ନିଯୁକ୍ତ ରଖେ ତା ନୁହେଁ, କଟକ ମହାନଗର ମଧ୍ୟରେ ଶତାଧିକ ଦୁର୍ଗାପୂଜା ମେଢ଼ ମଧ୍ୟରୁ ପ୍ରାୟତଃ ୨୮ଟି ମଣ୍ଡପର ଚାନ୍ଦିମେଢ଼ ମାଆ ଦୁର୍ଗାଙ୍କ ପାଇଁ ନିର୍ମିତ ହୋଇ ସାରିଛି । ଗୋଟିଏ ଗୋଟିଏ ଚାନ୍ଦି ମେଢ଼ ପାଇଁ ଶହେରୁ ପାଞ୍ଚଶହ କେଜି ପର୍ଯ୍ୟନ୍ତ ରୁପା ବ୍ୟବହାର କରାଯାଉଛି ।

ଏହି ଚାନ୍ଦିମେଢ଼ ପ୍ରଥମେ ୨୫୦କେଜି ପରିମାଣର ରୁପାର ଉପଯୋଗ ହୋଇ ୧୯୫୬ ମସିହାରେ ଚୌଧୁରୀବଜାର ପୂଜାମଣ୍ଡପରେ ବିଶେଷ ଆକର୍ଷଣ ପାଲଟିଥିଲା । ଶେଖବଜାର ପୂଜାମଣ୍ଡପରେ ୩୫୦ କେଜି ରୁପା ବ୍ୟବହାର କରି ବିଶାଳ ଚାନ୍ଦିମେଢ଼ ସହର ପରିକ୍ରମ କରିଥିଲା । ଦରଘାବଜାର, ନୟାସଡକ, କାଜିବଜାର, ବାଲୁବଜାର, ଶିଖରପୁର, ଫିରିଙ୍ଗିବଜାର, ଅଲିଶା ବଜାର, ବାଦାମବାଡି ପ୍ରଭୃତି ମଣ୍ଡପରେ ଚାନ୍ଦିମେଢ଼ ପୂଜାର ମାଧୁରୀ ବଢ଼ାଇ ଚାଲିଛି । ଖାଲି ସେତିକି ନୁହେଁ ମାଆ ଦୁର୍ଗାଙ୍କର ଦଶ ହାତରେ ଧରିଥିବା ଆୟୁଧ ଗୁଡିକ ମଧ୍ୟ ରୁପାରେ ତିଆରି କରି ମୃଣ୍ମୟୀଙ୍କୁ ଅଧିକ ଦିବ୍ୟତାରେ ପ୍ରକଟିତ କରାଯାଉଛି । ପ୍ରତିବର୍ଷ ଦୁର୍ଗା ମଣ୍ଡପରେ ଚାନ୍ଦିମେଢ଼ ପ୍ରସ୍ତୁତି ଥିବା ଉନ୍ମୋଚନ କରାଯାଉଛି । ଅନେକ କ୍ଷେତ୍ରରେ ଚାନ୍ଦିମେଢ଼ ପରେ ମାଆଙ୍କର ଆଭରଣଯୁକ୍ତ ଅଳଙ୍କାର ଗୁଡିକୁ ମଧ୍ୟ ସୁନା ରୁପାରେ ପରିବର୍ତ୍ତିତ କରାଯାଇଛି । ମାଆଙ୍କର ଆବାହନ, ମହାସମାରୋହରେ ପୂଜାର ଆୟୋଜନ, ହଜାର ହଜାର ସଂଖ୍ୟାରେ ଲୋକମାନଙ୍କୁ ପ୍ରସାଦ ବିତରଣ ଏବଂ ସର୍ବଶେଷରେ ବିସର୍ଜନ ଉତ୍ସବ କଟକର ଭାଇଚାରାର ନିଦର୍ଶନ ।

ଯେଉଁ ସମୃଦ୍ଧ ଓଡ଼ିଶାର ପ୍ରାଚୀନ ସଂସ୍କୃତିରେ ଇଷ୍ଟଦେବୀ ସ୍ୱୟଂ ଜଗନ୍ନାଥ । ଯାହାଙ୍କର ମନ୍ଦିରରେ ଚାରିଦ୍ୱାରରେ ରୂପାର କବାଟ, ଭଅଣ୍ଡ ଘର, ଜଗମୋହନ କଳାହାଟ ଦ୍ୱାରରେ ରୂପାର କବାଟ ଲାଗିଛି । ଚଳନ୍ତି ବିଷ୍ଣୁ ଗଜପତି ରାଜା ରଥରେ ଛେରା ପହଁରା କଲାବେଳେ ରୁପା ପିଙ୍ଗଳରୁ ଚନ୍ଦନ ମିଶ୍ରିତ ଜଳ ସିଞ୍ଚନ ହେଉଥିବାବେଳେ ସୁନା ବେଣ୍ଟର ଚାମର ଆଉ ସୁନାର ଆଳଟୀ ଦାନୀରେ ପୂଜା କରିବା ପରେ ସୁନା ଝାଡୁରେ ରଥର ସଂସ୍କାର କରିଥାନ୍ତି । ସେ ସଂସ୍କୃତିରେ ପ୍ରଭୁଙ୍କର ଆୟ ଅଳଙ୍କାର, ବେଶ ପାଇଁ ବ୍ୟବହୃତ ମଣିମାଣିକ୍ୟକୁ କିଏ ଆକଳନ କରିବ ? ପ୍ରଭୁଙ୍କର ରଥ ଉପରେ ସୁନାବେଶ ଦର୍ଶନ ରଥଯାତ୍ରା ଶେଷରେ ବିଶ୍ୱବାସୀମାନଙ୍କ ପାଇଁ କୃପାମୟଙ୍କର ଅଭିନବ ଅନୁକମ୍ପା ବୋଲି ମନେହୁଏ ।

ଭାରତବର୍ଷର ଧନଶାଳୀ ମନ୍ଦିର ଧର୍ମସ୍ଥଳ, ତିରୁପତି, ସିଦ୍ଧିବିନାୟକ ପରି ଆମ ଶ୍ରୀମନ୍ଦିର ଲିଙ୍ଗରାଜ ମନ୍ଦିରରେ କିଛି କିଛି ଧର୍ମାତ୍ମା ମାନଙ୍କ ଦ୍ୱାରା ଧନରତ୍ନ ଦାନ କରାଯାଇଥାଏ । ଏହି ମୂଲ୍ୟବାନ ଧାତୁର ଉପହାର କେବଳ ଯେ କଟକ ସହରରେ ଉତ୍ପାଦିତ ହେଉଛି ତାହା ନୁହେଁ ଅନେକ କାରିଗର ମଧ୍ୟ କଟକର ଆଖପାଖ ଜିଲ୍ଲାରେ ବଡବଡ ନାମି କଂପାନି ଥିବା ପ୍ରତିଷ୍ଠିତ ସୋରୁମରୁ କାମ ନେଇ ଲୋକମାନଙ୍କର ପସନ୍ଦ ମୁତାବକ ଗହଣା ତିଆରି କରି ନିଜନିଜର ପ୍ରାପ୍ୟ ପାଇଥାନ୍ତି ।



ଆଜିକାଲି ବଣିଆମାନେ ବଂଶଗତ ବୃତ୍ତି ଏଇ ତାରକସି କାମ କରିବାକୁ ଆଉ ବିଶେଷ ଆଗ୍ରହୀ ନୁହଁନ୍ତି । ବିକଳ୍ପ ଭାବରେ ବହୁ ନକଲି ଗହଣା ବଜାରରେ ମିଳି ପାରୁଛି । ତା ସହିତ ଲୋକଶକ୍ତିର ଉପଯୋଗ ଅପେକ୍ଷା ଅନେକ ଗହଣାକାମ ମଧ୍ୟ ମେସିନ୍ ଦ୍ୱାରା ଖୁବ୍ କମ୍ ସମୟରେ ସମ୍ଭବ ହୋଇପାରୁଛି, ଯାହା ଏହିସୂକ୍ଷ୍ମ କାରୁକାର୍ଯ୍ୟ ଭିତ୍ତିକ ତାରକସି ଶିଳ୍ପ ଲାଗି ପ୍ରଚଣ୍ଡ ଆଘାତ ଭଳି । ଏଥିପାଇଁ ଆବଶ୍ୟକ ପ୍ରୋତ୍ସାହନର ଅଭାବ ଥିବା ମନେ ହୁଏ ।

ତାରକସି ସୂକ୍ଷ୍ମ କାରୁକାର୍ଯ୍ୟ କଟକ ମାଟିର ୫୦୦ ବର୍ଷ ତଳର ପୁରାତନ ସିଦ୍ଧି । ୨୦୦ ବର୍ଷ ତଳର ଇତିହାସରେ ବ୍ରିଟିଶ ଲାଇବ୍ରେରୀରେ କଟକର ଶିଳ୍ପୀ ମାନଙ୍କର ନିଷ୍ଠାପର ଭାବେ ନିୟୋଜିତ କର୍ମପ୍ରବଣତାର ଫଟୋ ସଂରକ୍ଷିତ ହୋଇ ରହିଛି ।

ଓଡ଼ିଶୀ ହେଉଛି ଓଡ଼ିଶାର ଶାସ୍ତ୍ରୀୟମୁଖର ଶ୍ରେଷ୍ଠ ବିଭବ ଯେଉଁ ନୃତ୍ୟର ନୃତ୍ୟ ଶିଳ୍ପୀମାନେ ତାରକସି କାମର ଅଳଙ୍କାର ତଥା ମଥାର ମୁକୁଟ ବା ଟାହିଆ ପିନ୍ଧୁଥିଲେ, ସେଗୁଡିକ ମଧ୍ୟରେ ମୁଖ୍ୟତଃ, ପଦକତିଳକ, କଂକଣ, ମେଖଳା, କାପ, ସିନ୍ଥି, ଚୁଡ଼ି ରହିଥାଏ । ରାଜପରିବାର ବା ମହାଜନ ସାଆନ୍ତ ପରିବାରର ମୁଖ୍ୟ ସାଆନ୍ତାଣୀ ମାନଙ୍କ ଅଣ୍ଟାରେ ଯେଉଁ ଅଣ୍ଟାସୂତା ଥିଲା ତାହା ମଧ୍ୟ ସେମାନଙ୍କର ଶରୀରର ସୌନ୍ଦର୍ଯ୍ୟ ସହିତ ଘରର ତାରକସି ରୁପାକାମର ଝୁମ୍ପାଲଗା ଚାବିନେନ୍ଥା ତଦ୍ରୁପରି ମର୍ଯ୍ୟାଦାବନ୍ତ କରି ତୋଳୁଥିଲା ।

ତାରକସିର ଗହଣା ଓଡ଼ିଆଣୀଘରର ଶୁଭ ସଂକେତ । କନ୍ୟାଦାନ କାଳରେ ପାଦର ଝୁଣ୍ଟିଆଠାରୁ ସିନ୍ଥି ମୁଣ୍ଡକଣ୍ଟା ପର୍ଯ୍ୟନ୍ତି ସବୁ ପ୍ରକାର ଗହଣା ଖୋଜା ପଡେ । ଘରର କୁଳବଧୂ ସ୍ୱାମୀର ଏବଂ ସାରା ସଂସାରର ଶୁଭ ମନାସି ଦର୍ପଣ ଆଗରେ ମଥାରେ ସଧବା ସିନ୍ଦୂର ଲଗାଇ ନାରୀ ଜନ୍ମକୁ ସାର୍ଥକ ମଣିଥାଏ ।

କଟକ ମାଟିର ପରିଚୟ ପ୍ରଦାନ କରି ବିଶ୍ୱସ୍ତରରେ ସୁନାମ ଅର୍ଜନ କରିଥିବା ଏହି ସ୍ୱର୍ଣ୍ଣକାର କୁଳଙ୍କୁ ସାଧୁବାଦ ଦେବା ଏ ଜାତିର କର୍ତ୍ତବ୍ୟ; କାରଣ କଟକର ଶିଳ୍ପୀମାନଙ୍କର ଅସୀମ ଅଧ୍ୟବସାୟରେ ଗଢ଼ା କୋଣାର୍କଚକ୍ର, ମହାଭାରତର କୃଷ୍ଣ ଅର୍ଜୁନଙ୍କର ରଥ, ତାଜମହଲ, ଆଇଫେଲ ଟାୱାର, ଶଂଖ, ପ୍ରଭୃତିକୁ ଦେଶ ବିଦେଶର ବିପଣୀ ତଥା ସରକାରୀ ବେସରକାରୀ କ୍ଷେତ୍ରରେ ଦେଖିଦେଲେ ଗର୍ବରେ ଛାତିଫୁଲି ଉଠେ । ତାରକସି ଜୟଯାତ୍ରା ଅବ୍ୟାହତ ରହୁ । ଅନ୍ତର୍ଜାତୀୟ ସ୍ତରରେ ଏହା ପୁରସ୍କୃତ ସାମଗ୍ରୀର ମାନ୍ୟତା ଲାଭ କରୁ ।

ଦୂରଭାଷ: ୯୭୭୬୩୩୬୨୮୧

ଠଠ

# କଟକ ଦହିବରା

❖ କୃଷ୍ଣପ୍ରସାଦ ଦାସ

ଦହିବରା ମୂଳତଃ ଓଡ଼ିଶାର କି କଟକର ଖାଦ୍ୟ ସାମଗ୍ରୀ କେବେ ନଥିଲା । କିନ୍ତୁ ବର୍ତ୍ତମାନ ସମୟରେ ସ୍ୱତନ୍ତ୍ର ଶୈଳୀରେ ପ୍ରସ୍ତୁତ ହୋଇ ଜାତୀୟସ୍ତରରେ ପରିଚୟ ଆଉ ଲୋକପ୍ରିୟତା ହାସଲ କରି ପାରିଥିବା ଦହିବରା-ଆଳୁଦମ୍-ଘୁଗୁନି ଏହି ଐତିହାସିକ କଟକ ସହରରୁ ଯେ ଆରମ୍ଭ ହୋଇଛି, ତାହାକୁ ନେଇ କୌଣସି ସନ୍ଦେହ ଅଥବା ଦ୍ୱନ୍ଦ୍ୱ ନାହିଁ । ଉତ୍ତର ଭାରତ ଏବଂ ଦେଶର ଅନ୍ୟ ସ୍ଥାନମାନଙ୍କରେ ଯେଉଁ ପ୍ରକାରର ଦହିବରା ବିକ୍ରି ହୁଏ ତା'ଠାରୁ କଟକର ଦହିବରା-ଆଳୁଦମ-ଘୁଗୁନି ସଂପୂର୍ଣ୍ଣ ଭିନ୍ନ । ସ୍ୱାଦ ଆଉ ପ୍ରସ୍ତୁତିରେ ଭିନ୍ନ । କଟକର ବିଡ଼ାନାସୀ ଅଞ୍ଚଳରୁ ପ୍ରଥମେ ଏ ପ୍ରକାର ସ୍ୱତନ୍ତ୍ର ଶୈଳୀରେ ଦହିବରା ପ୍ରସ୍ତୁତ ଆରମ୍ଭ ହୋଇଥିଲା । ଧୀରେ ଧୀରେ ଏହାର ପ୍ରସ୍ତୁତି ଆଉ ପରିବେଷଣରେ ନୂଆ ନୂଆ କଥା ସଂଯୋଗ ହୋଇ ଚାଲିଲା ଏବଂ ସେ ପରୀକ୍ଷାନିରୀକ୍ଷା ଏବେ ବି ଜାରି ରହିଛି । କିନ୍ତୁ କଟକ ଦହିବରାର ଚର୍ଚ୍ଚା ଏବେ ରାଜ୍ୟ ବାହାରେ ଦେଶବିଦେଶରେ ପରିବ୍ୟାପ୍ତ ହେବାରେ ଲାଗିଛି । କଟକ ପୁଅ ଦେଶର ରାଜଧାନୀ ଦିଲ୍ଲୀରେ ଆୟୋଜିତ ଖାଦ୍ୟମେଳାରେ ଦହିବରା ବିକ୍ରି କରି ଶ୍ରେଷ୍ଠ ଷ୍ଟ୍ରିଟ୍ ଫୁଡ୍ ପୁରସ୍କାର ଜିତି ରାଜ୍ୟ ପାଇଁ ଗୌରବ ଆଣିବାକୁ ସକ୍ଷମ ହୋଇ ପାରିଛନ୍ତି ।

ଦହିବରା ପ୍ରଥମେ କଟକରେ କିଏ ପ୍ରସ୍ତୁତ କରିଥିଲେ ? ନିର୍ଦ୍ଦିଷ୍ଟ ଭାବେ ଏ ପ୍ରଶ୍ନର ଠିକ୍ ଉତ୍ତର କାହା ପାଖରେ ନାହିଁ । କିନ୍ତୁ ବିଡ଼ାନାସୀ ଅଞ୍ଚଳରୁ ଏହର ପ୍ରସ୍ତୁତି ଆରମ୍ଭ ହୋଇଥିଲା ବୋଲି ସମସ୍ତେ ସହମତ । କିନ୍ତୁ ଦହିବରାକୁ ଚର୍ଚ୍ଚିତ କରାଇବା ସହିତ ବ୍ୟବସାୟିକ ସଫଳତା ହାସଲ କରିବାରେ ସବୁଠୁ ଆଗରେ ଆସେ ରଘୁ ବେହେରାଙ୍କ ନାମ । ଦହିବରା ସହ ଆଳୁଦମ୍‌କୁ ମିଶାଇ ରଘୁ ନିଜର ସ୍ୱତନ୍ତ୍ର ଶୈଳୀରେ ପରିବେଷଣ କରୁଥିବା ଖାଦ୍ୟ ତାଙ୍କର ନିଜସ୍ୱ ନାମ (ବ୍ରାଣ୍ଡ)ରେ ପରିଣତ ହୋଇଛି । କଟକର ରଘୁ ଦହିବରା କହିଲେ ରାଜ୍ୟ ବାହାରେ ବି ଲୋକ ଜାଣୁଛନ୍ତି । ରଘୁ ପ୍ରଥମେ କଟକର ବାରବାଟୀ ଷ୍ଟାଡ଼ିୟମ୍ ଅଞ୍ଚଳରେ ବ୍ୟବସାୟ କରୁଥିବା ବେଳେ ଏବେ ବିଡ଼ାନାସୀ ବନ୍ଧ ପାର୍ଶ୍ୱରେ ବ୍ୟବସାୟ କରୁଛନ୍ତି । ତାଙ୍କ ବ୍ୟବସାୟର ଢଙ୍ଗ ବି ବେଶ୍ ଚର୍ଚ୍ଚିତ । ଅପରାହ୍ନରେ ନିର୍ଦ୍ଦିଷ୍ଟ ସମୟରେ ତାଙ୍କ ପସରା ଖୋଲେ ଏବଂ ଦୁଇ/ତିନି ଘଣ୍ଟାରେ ବନ୍ଦ ହୋଇଯାଏ । ପତର ଠୋଲାରେ ରଘୁଙ୍କ ଦହିବରା-ଆଳୁଦମ୍‌କୁ ହାତରେ ଖାଇବାକୁ ପଡ଼ିଥାଏ । ତାଙ୍କ ପାଖରେ ଖାଇବା ପାଇଁ ଚାମଚ ମିଳେନି । ରଘୁଙ୍କର ବିଶେଷତ୍ୱ ହେଉଛି କେବଳ ଦହିବରା ଆଉ ଆଳୁଦମ୍ ଏବଂ ଦହିବରା ଖାଇ ସାରିବା ପରେ ପାଟି ମିଠା କରିବାକୁ ଚାହିଁଲେ ପେଡ଼ା । ବର୍ଷ ବର୍ଷ ଧରି ଏଭଳି ଢଙ୍ଗରେ ରଘୁ ନିଜର ସ୍ୱତନ୍ତ୍ରତା ବଜାୟ ରଖି ଆସିଛନ୍ତି । କିନ୍ତୁ ରଘୁଙ୍କ ଦହିବରା-ଆଳୁଦମ୍ ସହିତ ପରୀକ୍ଷାନିରୀକ୍ଷା କରି ଅନ୍ୟ ବ୍ୟବସାୟୀମାନେ ନୂଆ ନୂଆ କଥା ଯୋଡ଼ି ଆସିଛନ୍ତି । ଦହିବରା-ଆଳୁଦମ୍ ସହିତ ମିଠା ଦହିବରା, ଘୁଗୁନି, ମିଠା ଦହି, କଞ୍ଚା ପିଆଜ, ସେଉ ଇତ୍ୟାଦି ଯୋଡ଼ି ହୋଇ ଚାଲିଛି । କଟକ ସହରର ବିଭିନ୍ନ ସ୍ଥାନରେ ବୁଲି ବିକ୍ରି କରୁଥିବା ବ୍ୟବସାୟୀଙ୍କ ସଂଖ୍ୟା ଏକ ମୋଟା ଆକଳନରେ ୧ ହଜାରରୁ ଅଧିକ ହେବ ବୋଲି କୁହାଯାଏ । ସହର ବାହାରୁ ବି ଅନେକ ବ୍ୟବସାୟୀ ଆସି ଏଠି ବ୍ୟବସାୟ କରୁଛନ୍ତି । ସହର ଉପକଣ୍ଠରେ ଦହିବରା ବ୍ୟବସାୟ ବଢ଼ିବାରେ ଲାଗିଛି । ଦହିବରାକୁ ନେଇ ଲୋକଙ୍କ ପସନ୍ଦରେ ବି ଭିନ୍ନତା ରହିଛି । ଦହିବାରର ସ୍ୱାଦକୁ ନେଇ କଟକର ଖଟି ଜମେ । କାହା ଦହିବରାର ବିଶେଷତ୍ୱ କ'ଣ, କାହା ଦହିବରା କେଉଁ କାରଣରୁ ଭିନ୍ନ ଆଉ ସ୍ୱାଦିଷ୍ଟ, ତାହାକୁ ନେଇ କଟକିଆଙ୍କ ଆଲୋଚନାର ଅନ୍ତ ନଥାଏ ।

କିନ୍ତୁ ବିଜୁ ପଟ୍ଟନାୟକ ଛକର ଈଶ୍ୱର ବେହେରା ହୁଅନ୍ତୁ



କି କନିକା ରୋଡ୍‌ର ତ୍ରିନାଥ ସାହୁ ଅଥବା ସେଲ୍‌ଟର ଛକର ପ୍ରଦୀପ୍ତ ସାହୁ ହୁଅନ୍ତୁ, ସେମାନଙ୍କ ବ୍ୟବସାୟ ପରିମାଣ, ନିଆରା ପ୍ରସ୍ତୁତି ଆଉ ସ୍ୱାଦକୁ ନେଇ ସେମାନେ ଏବେ ଚର୍ଚ୍ଚାରେ ରହି ଆସିଛନ୍ତି । କୁହାଯାଏ ଈଶ୍ୱର ଦହିବରା-ଆଳୁଦମ୍‌ରେ ମିଠା ଦହିବରା ଯୋଡ଼ି ସ୍ୱତନ୍ତ୍ର ସ୍ୱାଦ ଆଣିବା ସହିତ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଥିଲେ । ତ୍ରିନାଥ ଦହିବରା-ଆଳୁଦମ-ମିଠା ଦହିବରାରେ ଘୁଗୁନି ଯୋଡ଼ି ନିଜର ସ୍ୱତନ୍ତ୍ର ସ୍ୱାଦକୁ ଲୋକଙ୍କ ପାଖରେ ପହଞ୍ଚାଇଥିଲେ ଏବଂ ବ୍ୟବସାୟିକ ସଫଳତା ହାସଲ କରିଥିଲେ । ଅନ୍ୟପଟେ ପ୍ରଦୀପ୍ତ କଟକ ଦହିବରାକୁ ଦିଲ୍ଲୀ ଦରବାରରେ ପରିଚୟ ଦେଇ ଗୌରବ ଆଣିବାରେ ସଫଳ ହୋଇଛନ୍ତି । ୨୦୧୯ରେ ଦିଲ୍ଲୀରେ ଆୟୋଜିତ 'ଜାତୀୟ ଷ୍ଟ୍ରିଟ୍ ଫୁଡ୍ ଫେଷ୍ଟିଭାଲ'ରେ ପ୍ରଦୀପ୍ତ ନିଜ ଦହିବରା-ଆଳୁଦମ୍-ଘୁଗୁନିର ପସରା ଖୋଲି ଶ୍ରେଷ୍ଠ ଷ୍ଟ୍ରିଟ୍ ଫୁଡ୍ ଭାବେ ପୁରସ୍କାର ଜିତିବା ଘଟଣା କଟକ ପାଇଁ ଗର୍ବ ଆଉ ଗୌରବର ବିଷୟ ହୋଇଛି ।

କଟକ ଦହିବରାକୁ ନେଇ ବିଭିନ୍ନ ବ୍ୟବସାୟୀ ନିଜନିଜ ଢଙ୍ଗରେ ଏବେ ବି ପରୀକ୍ଷାନିରୀକ୍ଷା ଅବ୍ୟାହତ ରଖିଛନ୍ତି । ଦହିବରା-ଆଳୁଦମ୍‌ରେ ରଘୁ ଛିଞ୍ଚି ଦେଉଥିବା ମସଲାର ସ୍ୱାଦ ଆଉ କାହା ପାଖରେ ନଥାଏ । ସେ ମସଲା ହେଉଛି ତାଙ୍କର ନିଜସ୍ୱ । ଦହିବରା, ଘୁଗୁନିର ପ୍ରସ୍ତୁତିର ଶୈଳୀ ବି ବ୍ୟବସାୟୀରୁ ବ୍ୟବସାୟୀଙ୍କ ମଧ୍ୟରେ ଫରକ ଆସେ । କିନ୍ତୁ କଟକର ଦହିବରା-ଆଳୁଦମ୍-ଘୁଗୁନିର ଲୋକପ୍ରିୟତା ଯେ ଦିନକୁ ଦିନ ବଢ଼ିବାରେ ଲାଗିଛି ଏବଂ ବ୍ୟାବସାୟିକ ସଫଳତା ହାସଲ ସହ ଅଧିକରୁ ଅଧିକ ଲୋକଙ୍କ ରୋଜଗାରର ମାଧ୍ୟମ ପାଲିଟିଛି ତାହାକୁ ନେଇ ସନ୍ଦେହ ନାହିଁ । ଦହିବରା ବ୍ୟବସାୟରେ ଯୁବତୀ ଓ ମହିଳାମାନେ ପ୍ରତ୍ୟକ୍ଷ ଭାବେ ସାମିଲ ହୋଇ ଉଲ୍ଲେଖନୀୟ ସଫଳତା ହାସଲ କରିବା ବି ଉତ୍ସାହର ବିଷୟ । କୁହାଯାଏ ଜଣେ ଜଣେ ଦହିବରା ବ୍ୟବସାୟୀଙ୍କ ଦୈନିକ ବ୍ୟବସାୟ ପରିମାଣ ଲକ୍ଷେ ଟଙ୍କାରୁ ବି ଅଧିକ ରହୁଛି । କିନ୍ତୁ ଅଧିକ ରୋଜଗାର ସତ୍ତ୍ୱେ ସେମାନେ ନିଜନିଜର ଠେଲା ଗାଡ଼ି, ପତର ଠୋଲା, ଚିରାଚରିତ ହାଣ୍ଡି-ଡେକ୍‌ଚିକୁ ବଜାୟ ରଖିଛନ୍ତି । ଏହା ହିଁ ତ କଟକ ଦହିବରାର ବିଶେଷତା ।

ସହକାରୀ ମହାପ୍ରବନ୍ଧକ 'ସମ୍ବାଦ'
ଦୂରଭାଷ : ୯୪୩୭୩୭୭୨୨୯

○○





# ଦେଶର ମୁକ୍ତି ସଂଗ୍ରାମ ଓ କଟକ

❖ ଡ. ସତ୍ୟରାୟ

ରାଜ୍ୟର ସର୍ବପ୍ରାଚୀନ ତଥା ଐତିହ୍ୟସଂପନ୍ନ କଟକ ସହର କେବଳ କଳା, ସାହିତ୍ୟ, ସଂସ୍କୃତି, ଶିକ୍ଷା, ବାଣିଜ୍ୟ ବ୍ୟବସାୟ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିନାହଁ, ଦେଶର ସ୍ୱାଧୀନତା ସଂଗ୍ରାମ ତଥା ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ କ୍ଷେତ୍ରରେ ମଧ୍ୟ ଏକ ବଳିଷ୍ଠ ଭୂମିକା ଗ୍ରହଣ କରିଛି । ଏଥିପାଇଁ ସ୍ୱାଧୀନତାର ଇତିହାସ ପୃଷ୍ଠାରେ କଟକ ଓ ଏହାର ମହାନ୍ ଦେଶଭକ୍ତମାନଙ୍କର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଛି ।

ସ୍ୱାଧୀନତା ଆନ୍ଦୋଳନର ବିଭିନ୍ନ ପର୍ଯ୍ୟାୟ ବିଶେଷ କରି ଅସହଯୋଗ ଆନ୍ଦୋଳନ, ଆଇନ ଅମାନ୍ୟ ଆନ୍ଦୋଳନ, ଲବଣ ସତ୍ୟାଗ୍ରହ ଓ ଭାରତ ଛାଡ଼ ଆନ୍ଦୋଳନରେ କଟକର ସଂଗ୍ରାମୀମାନେ ସକ୍ରିୟଭାବେ ଅଂଶ ଗ୍ରହଣ କରି ନିଜର ପରମ ଦେଶଭକ୍ତି, ଅସୀମ ତ୍ୟାଗ ଓ ପରକାଷ୍ଠା ପ୍ରଦର୍ଶନ କରିଥିଲେ । ଏଥିପାଇଁ ଅତ୍ୟାଚାରୀ ଇଂରେଜ ଶାସକଙ୍କ ଦ୍ୱାରା ସେମାନଙ୍କୁ ଅକଥନୀୟ ନିର୍ଯ୍ୟାତନା ଭୋଗିବାକୁ ପଡିଥିଲା । ଅନେକ ସଂଗ୍ରାମୀଙ୍କୁ କାରାଗାର ମଧ୍ୟରେ ବର୍ଷ ବର୍ଷ ଧରି ଯନ୍ତ୍ରଣା ସହ୍ୟ କରିବାକୁ ପଡ଼ିଥିଲା ।

ମହାନ୍ ଦେଶପ୍ରେମୀ ଓ ବିପ୍ଳବୀ ମହାନାୟକ ନେତାଜୀ ସୁବାସ ଚନ୍ଦ୍ର ବୋଷ କଟକର ଓଡ଼ିଆ ବଜାରରେ ଜନ୍ମଗ୍ରହଣ କରି ଏହାକୁ ଗୌରବମଣ୍ଡିତ କରିଯାଇଛନ୍ତି । କଟକର ପଶ୍ଚିମବଙ୍ଗରେ ପଢ଼ା ନେତାଜୀ ସୁବାସ ଚନ୍ଦ୍ର ରେଭେନ୍ସା କଲିଜିଏଟ ସ୍କୁଲରେ ଅଧ୍ୟୟନ କରୁଥିବାବେଳେ ତତ୍‌କାଳୀନ ପ୍ରଧାନ ଶିକ୍ଷକ ବେଣୀମାଧବ ବାବୁ ଓ ଅନ୍ୟାନ୍ୟ ସହକାରୀ ଶିକ୍ଷକମାନଙ୍କଦ୍ୱାରା ଅନୁପ୍ରାଣିତ ହୋଇ ନିଜର ପ୍ରିୟ ଜନ୍ମଭୂମି ଭାରତବର୍ଷକୁ ପରାଧୀନତାର ଶୃଙ୍ଖଳରୁ ମୁକ୍ତ କରିବା ନିମନ୍ତେ ଦୃଢ଼ ସଂକଳ୍ପ ଗ୍ରହଣ କରିଥିଲେ । ତାଙ୍କ ଭଳି ଦେଶଭକ୍ତ କେବଳ ଭାରତରେ କାହିଁକି ସମଗ୍ର ବିଶ୍ୱରେ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ଛାତ୍ରାବସ୍ଥାରୁ ହିଁ ତାଙ୍କ ମନରେ ଦେଶପ୍ରେମ ଓ ଜନସେବା ଜାଗ୍ରତ ହୋଇଉଠିଥିଲା ।

ସତ୍ୟ, ଶାନ୍ତି ଓ ଅହଂସାର ମୂର୍ତ୍ତିମନ୍ତ ପ୍ରତୀକ ଜାତିର ଜନକ ମହାତ୍ମା ଗାନ୍ଧୀ ସ୍ୱାଧୀନତା ସଂଗ୍ରାମର ବିଭିନ୍ନ ସମୟରେ କଟକ ଗସ୍ତରେ ଆସି ଲୋକଙ୍କ ମଧ୍ୟରେ ଜାତୀୟତାବୋଧ ଜାଗ୍ରତ କରିଥିଲେ । ପୁଣ୍ୟାତ୍ମା ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଆମନ୍ତ୍ରଣ କ୍ରମେ ୧୯୨୧ ମସିହା ମାର୍ଚ୍ଚ ୨୩ ତାରିଖ ପବିତ୍ର ଦୋଳପୂର୍ଣ୍ଣିମା ତିଥିରେ ଓଡ଼ିଶା ଗସ୍ତରେ ଆସି କଟକର କାଠଯୋଡ଼ି ନଦୀ ବାଲୁକା ଶଯ୍ୟାରେ ଆୟୋଜିତ ଜନସମାବେଶରେ ଉଦ୍‌ବୋଧନ ଦେଇଥିଲେ । ତାଙ୍କ ସହିତ ସହଧର୍ମିଣୀ କସ୍ତୁରବା ଓ ସାନପୁଅ ଦେବଦାସ ମଧ୍ୟ ଆସିଥିଲେ । କଟକ ରେଳ ଷ୍ଟେସନଠାରେ ସେମାନଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନାଜ୍ଞାପନ କରାଯାଇଥିଲା । ଏ ପ୍ରକାର ଜନସମାଗମ ଦେଖି ବ୍ରିଟିଶ ସରକାର ମଧ୍ୟ ବିଚଳିତ ହୋଇପଡ଼ିଥିଲେ । ଗାନ୍ଧୀଜୀଙ୍କର ଆହ୍ୱାନ କ୍ରମେ ବହୁ ଦେଶପ୍ରେମୀ ଯୁବକ ଯୁବତୀ ମୁକ୍ତି ସଂଗ୍ରାମରେ ଝାସ ଦେଇଥିଲେ । ପୁଣ୍ୟାତ୍ମା ଗୋପବନ୍ଧୁ ଗାନ୍ଧିଜୀଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇବାକୁ ଯାଇ ତାଙ୍କୁ ଜଣେ ମହାପୁରୁଷରୂପେ ଅଭିହିତ କରିଥିଲେ । ପରେ ସାହେବଜାଦା ବଜାରସ୍ଥିତ ଐତିହାସିକ ସ୍ୱରାଜ ଆଶ୍ରମଠାରେ ଗାନ୍ଧିଜୀ ବହୁ ସତ୍ୟାଗ୍ରହୀଙ୍କୁ ଭେଟି ସ୍ୱାଧୀନତା ମନ୍ତ୍ରରେ ଦୀକ୍ଷିତ କରାଇଥିଲେ । ଅସହଯୋଗ ଆନ୍ଦୋଳନରେ ପୂର୍ଣ୍ଣପ୍ରାଣରେ ସାମିଲ ହେବାପାଇଁ ଗାନ୍ଧିଜୀ ସଂଗ୍ରାମୀମାନଙ୍କ ମାଧ୍ୟମରେ ରାଜ୍ୟବାସୀଙ୍କୁ ଆହ୍ୱାନ ଜଣାଇଥିଲେ । ଗାନ୍ଧିଜୀଙ୍କ ବଳିଷ୍ଠ ନେତୃତ୍ୱ ଓ ବ୍ୟକ୍ତିତ୍ୱ ଯୁବ ସଂଗ୍ରାମୀମାନଙ୍କୁ ଉଦ୍‌ବୁଦ୍ଧ କରିଥିଲା । ଗୋପବନ୍ଧୁ ଚୌଧୁରୀ, ପଣ୍ଡିତ ଲିଙ୍ଗରାଜ ମିଶ୍ର, ପଣ୍ଡିତ କୃପାସିନ୍ଧୁ ମିଶ୍ର, ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ପ୍ରାଣକୃଷ୍ଣ ପଢ଼ିଆରୀ, ନୀଳମଣି ପ୍ରଧାନ, ଡଃ ରବିଘୋଷ, ଗୁରୁଚରଣ ପଟ୍ଟନାୟକ, ଭାଗୀରଥି ମହାପାତ୍ର, ସରଳା ଦେବୀ, ରମାଦେବୀ, ମାଳତୀ ଚୌଧୁରୀ, ଅନ୍ନପୂର୍ଣ୍ଣା, ନିତ୍ୟାନନ୍ଦ କାନୁନ୍‌ଗୋ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ସୁରେନ୍ଦ୍ର ପଟ୍ଟନାୟକ, ରାଜକୃଷ୍ଣ ବୋଷ, ବିନୋଦ କାନୁନ୍‌ଗୋ, ଯଦୁମଣି ମଙ୍ଗରାଜ, ପୁରୁଷୋତ୍ତମ ସିଂହ, ଆଚାର୍ଯ୍ୟ ହରିହର ଦାସ, ନିରଂଜନ ଘୋଷ, ମନମୋହନ ଚୌଧୁରୀ, ଅନୀଲ ଘୋଷ, ପଣ୍ଡିତ ନୀଳକଣ୍ଠ ଦାସ, ବୀରକିଶୋର ଦାସ, ନନ୍ଦ ସାହୁ, ବୀରେନ୍ ମିତ୍ର, ବିଶ୍ୱନାଥ ପଣ୍ଡିତ, ମଧୁରୀ ସାହୁ, ନାରାୟଣ ବୀରବରସାମନ୍ତ, ଗୌରାଙ୍ଗ ଚରଣ ଦାସଙ୍କ ସମେତ ବହୁ ସଂଗ୍ରାମୀ ମୁକ୍ତି ସଂଗ୍ରାମରେ ଯୋଗଦେଇ ବିଭିନ୍ନ ପର୍ଯ୍ୟାୟରେ କାରାବରଣ କରିଥିଲେ ।

ସଦ୍‌ଭାବନା ତଥା ଭାଇଚାରାର କଟକ ସହରରେ ବସବାସ

କରୁଥିବା ବିଭିନ୍ନ ସଂପ୍ରଦାୟର ପ୍ରତିନିଧିମାନଙ୍କୁ ଭେଟି ଗାନ୍ଧିଜୀ ମାତୃଭୂମିର ମୁକ୍ତି ପାଇଁ ଆଗେଇ ଆସିବାକୁ ପରାମର୍ଶ ଦେଇଥିଲେ । ବାଲୁବଜାର ଅନ୍ତର୍ଗତ ବିନୋଦ ବିହାରୀ ପରିସରରେ ଆୟୋଜିତ ଏକ ମହିଳା ସମାବେଶରେ ଯୋଗଦେଇ ଗାନ୍ଧିଜୀ ମହିଳାମାନଙ୍କୁ ମଧ୍ୟ ଦେଶପ୍ରେମରେ ଉଦ୍‌ବୁଦ୍ଧ କରାଇଥିଲେ । ବହୁ ମହିଳା ସ୍ୱେଚ୍ଛାସେବୀ ସ୍ୱ-ଇଚ୍ଛାରେ ତିଳକ ସ୍ୱରାଜ୍ୟ ପାଣ୍ଠି ପାଇଁ ନିଜର ସମସ୍ତ ସୁନା ଅଳଙ୍କାର ଦାନ କରିଦେଇଥିଲେ । ମା' ରମାଦେବୀ, ସରଳାଦେବୀ, ସରୋଜିନୀ ଦେଈ ପ୍ରମୁଖ ଏହାର ନେତୃତ୍ୱ ନେଇଥିଲେ । ଅସହଯୋଗ ଆନ୍ଦୋଳନକୁ ସଫଳ କରିବା ନିମନ୍ତେ କଟକର ବହୁ ଯୁବକ ସ୍କୁଲ, କଲେଜ ଏପରିକି ଚାକିରି ବର୍ଜନ କରି ସେଥିରେ ସାମିଲ ହୋଇଥିଲେ । ପରବର୍ତ୍ତୀକାଳରେ ବହୁ ଯୁବକ ଯୁବତୀ ଐତିହାସିକ ଲବଣ ସତ୍ୟାଗ୍ରହରେ ଯୋଗଦେବା ନିମନ୍ତେ ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡ଼ି ଅଭିମୁଖେ ଯାତ୍ରା କରିଥିଲେ ।

ଗାନ୍ଧିଜୀଙ୍କ ପରାମର୍ଶକ୍ରମେ ବହୁ ତରୁଣ ତରୁଣୀ ବାନରସେନା ଗଠନ କରି ମୁକ୍ତି ସଂଗ୍ରାମର ବାର୍ତ୍ତା ପ୍ରଚାର କରିଥିଲେ । ସେମାନେ ବିଦେଶୀ ବସ୍ତ୍ର ବର୍ଜନ କରିବା ସାଂଗକୁ ମଦ, ଗଞ୍ଜାଇ ଓ ଅଫିମ ଦୋକାନଗୁଡ଼ିକ ସମ୍ମୁଖରେ ଧାରଣା ମଧ୍ୟ ଦେଇଥିଲେ । ସଂପୂର୍ଣ୍ଣ ନିଶାନିବାରଣ ଗାନ୍ଧିଜୀଙ୍କ ସଂଗ୍ରାମର ଏକ ମୁଖ୍ୟ କାର୍ଯ୍ୟକ୍ରମ ଥିଲା ।

ବାନର ସେନାର ନେତୃତ୍ୱ ନେଇଥିବା ରାଜକୃଷ୍ଣ ବୋଷ ରାଜ୍ୟର ପ୍ରଥମ ରାଜବନ୍ଦୀ ଥିଲେ । ତାଙ୍କ ନେତୃତ୍ୱରେ ବାନରସେନାମାନେ ସାହସର ସହିତ ତତ୍‌କାଳୀନ ଜିଲ୍ଲାପାଳଙ୍କ କାର୍ଯ୍ୟାଳୟ ଉପରେ ଉଡୁଥିବା ୟୁନିୟନ୍ ଜ୍ୟାକ୍‌କୁ କାଢ଼ିନେଇ ସେଠାରେ ତ୍ରିରଙ୍ଗା ପତାକା ଉଡ଼ାଇ ଦେଇଥିଲେ । ଏଥିରେ ସଂପୃକ୍ତ ବାନରସେନାମାନଙ୍କୁ ପୁଲିସ ଧରିନେଇ ସେମାନଙ୍କୁ ପ୍ରବଳ ଲାଠି ପ୍ରହାର କରିଥିଲେ । ବେତମାଡ଼ରେ ସେମାନଙ୍କ ହାତର ପାପୁଲି ସବୁ ରକ୍ତାକ୍ତ ହୋଇଯାଇଥିଲା । ଏହାସତ୍ତ୍ୱେ ସେମାନେ ଭୟଭୀତ ହୋଇ ଇଂରେଜ ଶାସକଙ୍କ ବିରୋଧରେ ସଂଗ୍ରାମ ଜାରି ରଖିଥିଲେ । କଟକର ବିଭିନ୍ନ ସ୍ଥାନରେ ସତ୍ୟାଗ୍ରହୀମାନଙ୍କୁ ନିୟନ୍ତ୍ରଣ କରିବା ପୁଲିସ ପକ୍ଷରେ ଖୁବ୍ କଷ୍ଟକର ହୋଇପଡୁଥିଲା । ସେହି ସମୟରେ ବାଁଉଶଗଳି ତନ୍ତୀସାହିରେ ବିଦ୍ରୋହୀ ନାମକ ଏକ ପତ୍ରିକା ଗୁପ୍ତରେ ପ୍ରକାଶ ପାଇଥିଲା । ସୁରେନ୍ଦ୍ରନାଥ ଦ୍ୱିବେଦୀ, ରାଧାନାଥ ରଥ ଓ ବିନୋଦ କାନୁନ୍‌ଗୋ ଏହାର ସଂପାଦନା ଓ ବିତରଣ ଦାୟିତ୍ୱ ବହନ କରିଥିଲେ ।

ଦରଘାବଜାର ସ୍ଥିତ ପୁରାତନ ମଣ୍ଡଳ କାରାଗାରର ୧୫ ନମ୍ବର ୱାର୍ଡ଼ରେ ମୁଖ୍ୟତ ଗିରଫ ହେଉଥିବା ସଂଗ୍ରାମୀ ମାନଙ୍କୁ ଅତି ଦୟନୀୟ ଅବସ୍ଥାରେ ରଖାଯାଉଥିଲା । ଏହି କାରାଗାରଟିକୁ ଚୌଦ୍ୱାରକୁ ସ୍ଥାନାନ୍ତର କରାଯିବା ପରେ ୧୫ ନମ୍ବର ୱାର୍ଡ଼ଟିକୁ ସଂଗ୍ରାମୀମାନଙ୍କୁ ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ସମର୍ପିତ କରାଯାଇଛି । ୧୯୩୨ ମସିହା ଜାନୁୟାରୀ ୨୬ ତାରିଖରେ କାରାଦଣ୍ଡ ଭୋଗୁଥିବା ନିର୍ଭୀକ ସଂଗ୍ରାମୀମାନେ କୌଶଳକ୍ରମେ ସେଠାରେ ତ୍ରିରଙ୍ଗା ପତାକା ଉଡ଼ାଇ 'ମହାତ୍ମାଗାନ୍ଧୀଙ୍କ ଜୟ' ଧ୍ୱନି ଦେଉଥିଲେ । ଏ ପ୍ରକାର ଘଟଣା ନେଇ ବରିଷ୍ଠ ଜେଲ ଅଧିକାରୀ ତଥା ୱାର୍ଡ଼ରଙ୍କ ମଧ୍ୟରେ ଭାଳେଣି ପଡ଼ିଯାଇଥିଲା । ପତାକା ଉଠାଇବାରେ ନେତୃତ୍ୱ ନେଉଥିବା ମହାଦେବ ସିଂହ ଓ ପହଲି ରାଉତଙ୍କ ବିରୋଧରେ ଦଣ୍ଡ ବିଧାନ କରାଯାଇଥିଲା । ସ୍ୱାଧୀନତା ସଂଗ୍ରାମ ସମୟରେ କଟକରୁ ପ୍ରକାଶ ପାଉଥିବା ଦୈନିକ 'ସମାଜ' ଓ ଦୈନିକ 'ପ୍ରଜାତନ୍ତ୍ର' ମଧ୍ୟ ଲୋକଙ୍କ ମଧ୍ୟରେ ଜାତୀୟତା ବୋଧ ଜାଗ୍ରତ କରାଇବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ବ୍ରିଟିଶ ସରକାରଙ୍କ ଅନ୍ୟାୟ, ଅନୀତି, ଅତ୍ୟାଚାର ବିରୋଧରେ ସମ୍ବାଦ ପରିବେଷଣ କରି ଏହି ଦୁଇଟି ସମ୍ବାଦପତ୍ରର ସଂପାଦକ ଓ ସାମ୍ବାଦିକମାନଙ୍କୁ କାରାବରଣକରିବାକୁ ପଡ଼ିଥିଲା । ଏପରିକି ଇଂରେଜୀ ସରକାର ଖବର କାଗଜ କାର୍ଯ୍ୟାଳୟରେ ତାଲା ପକାଇ ଦେବାକୁ ମଧ୍ୟ ପଶ୍ଚାତପଦ ହୋଇନଥିଲେ । 'ସମାଜ' ପ୍ରକାଶନ ସହିତ ସଂଶ୍ଳିଷ୍ଟ ତତ୍‌କାଳୀନ ସଂପାଦକ ପଣ୍ଡିତ ଲିଙ୍ଗରାଜ ମିଶ୍ର, ରାଧାନାଥ ରଥ, ଉଦୟନାଥ ଷଡ଼ଙ୍ଗୀ, ବାଞ୍ଛାନିଧି ଦାସ, ଫକୀର ଚରଣ ଦାସ, ଫକୀର ଚରଣ ମିଶ୍ର, ଅଦ୍ୱୈତ ବଲ୍ଲଭରାୟ, ଶରତ ସରକାର ପ୍ରମୁଖଙ୍କୁ ବିଭିନ୍ନ ସମୟରେ କାରାଦଣ୍ଡ ଭୋଗିବାକୁ ହୋଇଥିଲା । ଏହା ସତ୍ତ୍ୱେ ସେମାନେ ଇଂରେଜ ସରକାରଙ୍କ ନିକଟରେ ମୁଣ୍ଡ ନୁଆଁଇ ନଥିଲେ । 'ପ୍ରଜାତନ୍ତ୍ର' ପରିଚାଳନା ମନ୍ଦିର ସଂଶ୍ଳିଷ୍ଟ ଶ୍ରୀହର୍ଷ ମିଶ୍ର, 'ଚନ୍ଦ୍ର ଶେଖର ମହାପାତ୍ର, ବିଶ୍ୱମ୍ବର ପରିଡ଼ା, ପ୍ରମୁଖଙ୍କୁ ମଧ୍ୟ କାରାଦଣ୍ଡ ଭୋଗିବାକୁ ପଡ଼ିଥିଲା ।

ତତ୍‌କାଳୀନ ବିଶିଷ୍ଟ ଆଇନଜୀବୀ ଗୋକୁଳାନନ୍ଦ ଚୌଧୁରୀଙ୍କ ବାଖରାବାଦସ୍ଥିତ ବାସଭବନ 'ଚୌଧୁରୀ ନିବାସ' ସଂଗ୍ରାମୀମାନଙ୍କର ଏକ ପୀଠ ସ୍ଥଳୀ ଥିଲା । ସେହିଠାରେ ହିଁ ସଂଗ୍ରାମୀମାନଙ୍କର ଗୁପ୍ତ ବୈଠକ ବସି କୌଶଳ ନିର୍ଦ୍ଧାରଣ ହେଉଥିଲା । ବାନର ସେନାମାନେ ବହୁ ସଂଖ୍ୟାରେ ସେଠାରେ ସମବେତ ହେଉଥିଲେ । ଏହି ସବୁ ଦୃଷ୍ଟିକୋଣରୁ ଦେଶର ମୁକ୍ତିସଂଗ୍ରାମରେ କଟକ ସହରର ବାସିନ୍ଦାମାନେ ଯେ ବଳିଷ୍ଠ ଭୂମିକା ଗ୍ରହଣ କରିଥିଲେ ଏଥିରେ କାହାରି ଦ୍ୱିମତ ନାହିଁ । ଏ ସଂପର୍କରେ ଅଧିକରୁ ଅଧିକ ଗବେଷଣା ହେବାର ଆବଶ୍ୟକତା ରହିଛି । ଏ ସଂକ୍ରାନ୍ତରେ ଉଭୟ ଇଂରାଜୀ ଓ ହିନ୍ଦୀଭାଷାରେ ଗ୍ରନ୍ଥ ପ୍ରକାଶ କରାଯାଇପାରିଲେ ଅନେକ ତଥ୍ୟ ଲୋକଲୋଚନକୁ ଆସିପାରିବ । ଏ କ୍ଷେତ୍ରରେ ସରକାର ବିଶେଷ କରି ଜିଲ୍ଲା ପ୍ରଶାସନ ଧ୍ୟାନ ଦେଇପାରିଲେ ଏକ ମହାନ୍ କାର୍ଯ୍ୟ ସମ୍ଭବ ହୋଇପାରିବ ।

ଭ୍ରାମ୍ୟଭାଷ: ୯୪୩୭୨୭୭୬୨୫

ଠଠ

# ଜଗନ୍ନାଥ ସାଧବ ନିଶ୍ଚେ ଫେରିବ

❖ ଡ. ବିଶ୍ୱଭାରତୀ

(କାହାଣୀଟି ଉନବିଂଶ ଶତାବ୍ଦୀର ପ୍ରାକ୍‌କାଳରେ ଗଞ୍ଜାମ ଅଞ୍ଚଳର ଏକ ସତ୍ୟ ଘଟଣା ଉପରେ ଆଧାରିତ)

କୌତୁକୀର ବିଭାଘର ମା'ପେଟରେ ଥିଲାବେଳୁହିଁ ଧାର୍ଯ୍ୟ ହୋଇଯାଇଥିଲା । ସେ ସନ ତା' ଆଈ ଆଉ ଗୋସେଇଁ ମା' ଦୁହେଁ ପୁରସ୍ତମରେ ହବିଷ କଲାବେଳେ ବୃନ୍ଦାବତୀ ପାଖରେ ରାଇ ଦାମୋଦର ପୂଜି ସତ୍ୟ କରିଥିଲେ ଯେ ଲାବଣ୍ୟର ଯଦି ଝିଅ ହେବ, ତେବେ ସେ ମାମୁ ପୁଅ ଭାଇ ଜଗନ୍ନାଥକୁ ବିଭାହେବ । ସେୟା ହେଲା; ପାଞ୍ଚ ବର୍ଷ ବୟସରେ କୌତୁକୀର ପିଲାକନିଆଁ ବିଭାଘର ତେର ବର୍ଷୀୟ ମାମୁ ପୁଅ ଭାଇ ଜଗନ୍ନାଥ ସହିତ ହୋଇଗଲା । ବାପାମା'ଙ୍କର ବେଶି କିଛି ଉଚ୍ଚ ଆଶା ନଥିଲା । ଜଗନ୍ନାଥ ନିରୋଗ, ନିଖୁଣିଆ ପିଲା; ତା' ସହିତ ବାରହାତ ଆଟୁଘର, ଘରେ ବର୍ଷତମାମ ଓଳିଆଚାଉଳ, ଫାଳିଆ କାଠ, ଗୁହାଳେ ଗାଈ ବଳଦ ବନ୍ଧା । ଆଉ କ'ଣ ଲୋଡ଼ା ? କୌତୁକୀର ଦିହକଯାକ ପେଟକୁ ଭାତ, କନା ଦିହାତ ନିଅଣ୍ଟ ହେବନି ନା ! ପନ୍ଦର ବର୍ଷ ବୟସରେ କୌତୁକୀର ପୁଆଣି ହେଲା; ସେତେବେଳକୁ ଜଗନ୍ନାଥ ତେଇଶି ବର୍ଷର ଯୁଆନ ।

ଜଗନ୍ନାଥ ଯେତେବେଳେ ସାରାଦିନ ଭାଲୁ ମୁଣ୍ଡିଆ, ମାଣିକ ଯୋର, ଶାଳଖଣ୍ଡି ବଣ ବୁଲିବୁଲି ସଞ୍ଜ ସରିକି ଗୁଞ୍ଜର ପୋକ, ସାଧବ ବୋହୂ, ମୟୂର ପର, ଗିଲିରି ଫୁଲ, ଶାରୀ ଚଢ଼େଇ ଆଣି ନହେଲେତ ବେଲଗୁଣ୍ଠା ପେଣ୍ଠକୁ ଯାଇ ରିବନଫିତା, ବାଳଛପା (ହେୟାର କ୍ଲିପ୍), ଗୁଲୁସୁ (ଏକ ପ୍ରକାର ହାତରେ ପିନ୍ଧା ଯାଉଥିବା ରୁପା ଅଳଂକାର) ଆଣି କୌତୁକୀକୁ ଉପହାର ଦେଉଥିଲା, ଦେଖନ୍ତା ଲୋକେ ଟାପରା କରୁଥିଲେ, ଜଗନ୍ନାଥ ନୂଆ ନୂଆ କଷି କନିଆଁ ପାଇଛିତ, ସେଇଥିପାଇଁ ଏମିତି ହଉଛି । ପିଲାଛୁଆ ହେଇଗଲେ ବଳେ ମନ ଘର ଧରିଯିବ, କାମ ପାଇଟିରେ ମନ ଦେବ । ସତର ବର୍ଷରେ କୌତୁକୀ ମା' ହେଲା । ସାକ୍ଷାତେ କଇଁ ପୋଖରିର ଧୋବହଂସ ପରି ଝିଅଟେ, ଏଣୁ ନାଁ ଦିଆହେଲା ହଂସିନୀ ।

ତେବେ ୟା ପରେ ବି ଜଗନ୍ନାଥର କିଛି ଗୋଟାଏ ଆଖିଦୃଶିଆ ପରିବର୍ତ୍ତନ ହେଲା ନାହିଁ । ଅସଲ କଥା ହେଲା ତାକୁ ଖରାବର୍ଷା ମାଟି କାଦୁଅରେ ଘାଣ୍ଟି ଚକଟି ହୋଇ ସେ ନିଉଛୁଣିଆ ଚାଷ କାମ କରିବାକୁ ଟିକିଏବି ମନ ହଉନଥିଲା । ଏତିକି ବେଳେ ଗାଁକୁ ବାର୍ତ୍ତା ଆସିଲା, ନାରାୟଣ ସାଧବ କାର୍ତ୍ତିକ ପୂର୍ଣ୍ଣିମାରେ ଚିଲିକାରୁ ବୋଇତ ନେଇ ବ୍ରହ୍ମଦେଶ (ମ୍ୟାମାର୍) ଯିବ; ଯିବା ଲୋକ ପନ୍ଦର ଦିନରେ ଯାଇ ବହଣା ଦଶ ସୁଉକା (ଅଢ଼େଇଟଙ୍କା) ଦେବାକୁ କଣ୍ଟ ରହିଲା । ଜଗନ୍ନାଥର ମନ ଉଲ୍ଲସିତ ହେଇଗଲା । ପିଲାଦିନେ ମନେ ଅଛି, ଅନ୍ତରପୁରର ଏଇ ନାରଣ ସାହୁ, ସଞ୍ଜ ପହରି ୟା'ତା' ବାରିରୁ ମକା କାକୁଡ଼ି, କଂସାତାଟିଆ ଚୋରୋଉଥିଲା, ଶିମିଳି ପୋଖରୀର ମାଇପି ତୁଠ ପାଖରେ ଲୁଚି ବସୁଥିଲା । ଥରେ ସାଉକାରର ଶଗଡ଼ ନେଇ ପାଲୁପୁରୁ (ପାଲୁର୍) ଯାଇଥିଲା ଯେ, ସେଇଠୁ ତା' ଭାଗ୍ୟ ବଦଳି ଗଲା । ସାଉକାରର ବୋକଚା ବୋହିବାକୁ ସାଙ୍ଗରେ ଯାଇ କଳିଙ୍ଗ ପାଟଣା, ବିଶାଖା ପାଟଣା, ସିଂହଳ, ଶ୍ୟାମଦେଶ, ବ୍ରହ୍ମଦେଶ ସବୁ ବୁଲି ଆସିଲା । ଚତୁର ଲୋକଟା ତ, ତେଣୁ ତା'ପରେ ଏକୁଟିଆ ଯାଇ ବେପାର ବଣିଜ କରି ସାତ ବର୍ଷ ପରେ ନିଜର ବୋଇତ ଘେନି ଦେଶକୁ ଫେରିଲା ବେଳକୁ ସେ ନାରଣ ସାଉରୁ ନାରାୟଣ ସାଧବରେ ପରିଣତ ହୋଇଗଲା । ନାରାୟଣ ସାଧବର ଇତିହାସ ଜଗନ୍ନାଥକୁ ନିଜର ଭବିଷ୍ୟତ ଆବିଷ୍କାର କରିବାକୁ ସାହାଯ୍ୟ କଲା । ସେ ତତକ୍ଷଣାତ୍ ନିଷ୍ପତ୍ତି ନେଲା, ବଣିଜ କରିବାକୁ ଯିବ ।

କୌତୁକୀକୁ ବୁଝାଇବାକୁ ବିଶେଷ କଷ୍ଟ ହେଲା ନାହିଁ । 'ମୋ ରାଣ, ବାହୁଡ଼ିଲା ବେଳକୁ ତୋ'ପାଇଁ ଖୋସାକୁ ଚଉଁରି କାଠି ଆଉ ନାଗରାମ୍‌ଆଣି ଦେବିଲୋ କୌତୁକୀ' ଏତିକିରେ କୌତୁକୀ ଖୁସ୍ । ବାପା ମା' ବି ଅମଙ୍ଗ ହେଲେନି, ସେମାନେ ଭାବିଲେ, ଏଠିତ କୋଉ ପାଇଟି ପତରକୁ ମନ ଦଉନି, କେଜାଣି ବେପାର ବଣିଜରେ ମନ ଦବ ପରା । ଅତଏବ ଜଗନ୍ନାଥ ପ୍ରବାସ ଯିବାଟା



ଥୟ ହୋଇଗଲା । ହେଲେ ବହଣା ଦେବାକୁ ତା'ପାଖରେ ଦଶସୁଉକା ନଥିଲା । କୌତୁକୀର କଣ୍ଟି ଋପସରି ମାଳିଟା ନହେଲେତ ବହଲ (ବଳଦ) ହଳଟା ବନ୍ଧା ପକେଇଥିଲେ ହେଇଥାନ୍ତା, କିନ୍ତୁ ତହିଁକି ମନଡାକିଲାନି । ତେଣୁ ଜଗନ୍ନାଥ ସ୍ଥିରକଲା ନାରାୟଣ ସାଧବର ଗୋତି ଖଟିବ । ବଣିଜ ଦ୍ରବ୍ୟ ସବୁ ବୋଇତରେ ଚଢ଼ାଉତୁରା କରିକରି ମାହାଳିଆମାହାଳିଆ କଳିଙ୍ଗ ସାଗରଟା ପାରେଇ ଦେଲେ ଗଲା ।

ଦିନେ ଦୁଇଦିନରେ ହୁରି ହେଇଗଲା, ଗାଁରୁ ଛଜଣ ଭେଣ୍ଡିଆ - ବଚ୍ଛ ପାହାନ (ବତ୍ସ ପ୍ରଧାନ), ରଘୁ ପାହାନ, ହରି ଗୁଡ଼ିଆ, ବନମାଳୀ ପାଣିଗ୍ରାହୀ, ଘନ ପାଢ଼ୀ ଆଉ ଜଗନ୍ନାଥ ପଣ୍ଡା ନାରାୟଣ ସାଧବର ବୋଇତରେ ବଣିଜ କରିଯିବେ । ବୃନ୍ଦାବନ ଷଡ଼ଙ୍ଗୀଏ ପାଞ୍ଜି ଦେଖିଲେ - ଡାଙ୍ଗଦେଖା ଅମାସିଆ (ଦୀପାବଳି ଅମାବାସ୍ୟା) ବାହାରେ ଆଠଦିନଠେ ଯାତ୍ରା ଯୋଗ ଅଛି । ପ୍ରସ୍ତୁତି ପର୍ବ ଆରମ୍ଭ ହେଲା । ଜଗନ୍ନାଥ ମାମୁ, ମାଉସୀ, ପିଉସୀମାନଙ୍କୁ ଦେଖା କରିବାକୁ ବାହାରିଗଲା । କହିପୋଛି ଓଳଗି ହେଲାବେଳକୁ ସମସ୍ତେ ଅଧଲେ ପାହୁଲେ ବାଟ ଖର୍ଚ୍ଚ ଦେଲେ । ଶାଶୁ ବୋହୂ ଦୁହେଁ ଲାଗିପଡ଼ି ନଉତିଏ ଚୁଡ଼ା କୁଟିଲେ, ଗଉଣିଏ ଧାନର ଖଇଭାଜି ଉଖୁଡ଼ା କଲେ, ଦି ଅଡ଼ା ରାଶି ଭୂଇଁଚଣା (ଚିନାବାଦାମ) ସହିତ ମିଶେଇ ଗୁଡ଼ପାଗ କରି ଖଜା କଲେ । ଗଉଣିଏ ଚାଉଳ ଚୂନା କୁଟି ଆରିଷା ପିଠା କଲେ । ମାସାଧିକ କାଳ ପର୍ଯ୍ୟନ୍ତ ଖରାପ ନହେଉଥିବାରୁ ବୋଇତ ଯାତ୍ରୀଏ ବାଟକୁ ଏ ପ୍ରକାର ଖାଦ୍ୟ ସାଥିରେ ନିଅନ୍ତି । ଆଉ ତା' ସହିତ, ଆମ୍ବୁଲ, ଅଁଳା, ନବାତ ନହେଲେ ଗୁଡ଼ ସଜକରା ହୁଏ ।

ଯିବା ଆଗଦିନ ଜଗନ୍ନାଥକୁ ନେଇ ତା' ନନା ବୋଉ ଗ୍ରାମ ଦେବତୀଙ୍କ ଦୂଆରେ ନିଉଛାଳି ହେଲେ । ଗ୍ରାମଦେବତୀ, ତାରାତାରିଣୀଙ୍କୁ କଳାବୋଦା ଯାଚିଲେ । ମଙ୍ଗଳା କୋଠିକୁ ଯାଇ ନିଶାମଙ୍ଗଳବାର ଓଷା ମନାସିଲେ । ନିଜଗାଁ ତଥା ପାଖ ପଡ଼ୋଶୀ ଗାଁର ପୁରୁଖା ବୋଇତିଆଳ (ବୋଇତରେ ଯାତ୍ରା କରିଥିବା ବା କାମ କରିଥିବା ବ୍ୟକ୍ତି)ମାନଙ୍କୁ ଭେଟି ଆଶୀର୍ବାଦ ଭିକ୍ଷା କଲେ । ସେମାନେ ଜଗନ୍ନାଥକୁ ଅନେକ ଉପଦେଶ ଦେଲେ - ସମୁଦ୍ରରେ, ବିଦେଶରେ କେମିତି ଚଳିବାକୁ ହୁଏ କି କି ବିପଦ ପ୍ରତି ସାବଧାନ ରହିବାକୁ ହୁଏ, ଅସୁବିଧା ଜାଗାରୁ କେମିତି ଖସି ଆସିବାକୁ ହୁଏ, କୋଉଠି କ'ଣ ଭଲ ଜିନିଷ ମିଳେ, କେମିତି ମୂଲଚାଲ କରିବାକୁ ହୁଏ ଇତ୍ୟାଦି ।

ମୁହଁ ଅନ୍ଧାରୁ ସମସ୍ତେ ବାହାରିଲେ । ଗାଁର ଅଧେଲୋକ ଗାଁମୁଣ୍ଡକୁ ବାଟେଇ ଆସିଲେ । ସମସ୍ତଙ୍କ ଆଖିରେ ଲୁହ । ଚିତର ବୁଢ଼ା କୁହାଟିଲା, "ଆରେ ଭେଣ୍ଡିଆମାନେ ! ମନ ଦମ୍ଭ କରିକି ଯାଅ, ସଦାବେଳେ ମା'ମଙ୍ଗଳାଙ୍କୁ ସୁମରଣା କରୁଥିବ, ସେ ତମକୁ ସବୁ ବିପଦରୁ ଉଦ୍ଧାର କରିବେ । ଜୟ ମା' ମଙ୍ଗଳା !' ସମସ୍ତେ ଏକା ସାଥିରେ ଦୋହରାଇଲେ, ଜୟ ମା' ମଙ୍ଗଳା ! ତା'ପରେ ଛ'ଜଣଯାକ ଆଉ ପଛକୁ ନଚାହିଁ ଏକମୁହାଁ ହୋଇ ବାହାରିଗଲେ ।

ଜଗନ୍ନାଥକୁ ନାରାୟଣ ସାଧବର ସିନ୍ଧୁକ ବୋହିବା କାମ ମିଳିଲା । ବୋଇତରେ ସବୁ ବଣିଜଦ୍ରବ୍ୟ ସାଇତା ସରିଲା ପରେ ଶୁଭଲଗ୍ନରେ ଯାତ୍ରା ଆରମ୍ଭ ହେଲା । ସେଇଟା ଜଗନ୍ନାଥର ପ୍ରଥମ ଜଳଯାତ୍ରା ଥିଲା । ଅନେକ ଭାର ବୋଝ ବୁହାଥୁଆ ପରେ ଅଧିକାଂଶ ଗୋତିବେଠିଆ (ମାଗଣା ଶ୍ରମିକ) ନିଘୋଡ଼ ନିଦରେ ଶୋଇ ପଡ଼ିଲେ । ଜଗନ୍ନାଥର କିନ୍ତୁ ନିଦ ହଜିଯାଇଥିଲା । ସେ ବୋଇତ ଭିତରର ପ୍ରତ୍ୟେକ କୋଣ ଅନୁକୋଣ ସନ୍ଧାନ ଦେଇ ନିରୀକ୍ଷଣ କରିବାରେ ଲାଗିଲା । ବୋଇତ ଚାଳନା କେମିତି ହେଉଛି, ପାଲ କେମିତି ଟଣା ହେଉଛି, ବିଭିନ୍ନ ସ୍ଥାନର ବଣିକମାନେ କେଉଁ କେଉଁ ଦ୍ରବ୍ୟ ନେଇ ଯାଉଛନ୍ତି, ସେମାନେ କିଏ କୋଉଠିକି ଯିବେ ଇତ୍ୟାଦି ପଚାରି ବୁଝିଲା । ତା'ସାଙ୍ଗମାନେ ଗପସପ ବା ଗଞ୍ଜାପା ଖେଳ (ତାସ୍ ପରି ଏକ ପାରମ୍ପରିକ ଖେଳ)ରେ ମାତିଥିବା ବେଳେ ଜଗନ୍ନାଥ ଅଭିଜ୍ଞ ନାବିକ, ବଣିକ, ଶ୍ରମିକ ଏବଂ ପର୍ଯ୍ୟଟକଙ୍କ ସହିତ ବାର୍ତ୍ତାଳାପ କରି ନୌବାଣିଜ୍ୟ, ଭୂଗୋଳ, ସମୁଦ୍ର ବିଜ୍ଞାନ, ଜୀବ ବିଜ୍ଞାନ, ଖଗୋଳ ବା ଗ୍ରହନକ୍ଷତ୍ର ସମ୍ବନ୍ଧୀୟ ଜ୍ଞାନ, ବୋଇତ ଚାଳନା, ଦିଗନିର୍ଣ୍ଣୟ କରିବାର କଳା, ବିଭିନ୍ନ ଦେଶର ସଂସ୍କୃତି, ରାଜନୀତି, ଲୋକ ଚରିତ୍ର ସମ୍ବନ୍ଧରେ ପ୍ରଚୁର ଜ୍ଞାନ ଆହରଣ କଲା ।

ନାରାୟଣ ସାଧବର କଳିଙ୍ଗ ପାଟଣାରୁ (କଳିଙ୍ଗ ପଟ୍ଟନମ୍) କିଛି ସଉଦା ଉଠାଇବାର ଥିଲା । ତେଣୁ ସେ ବୋଇତ ଅଟକାଇ ଜଗନ୍ନାଥ ପରି କିଛି ଭାରୁଆଙ୍କୁ ଘେନି ଛୋଟ ନୌକାରେ କଳିଙ୍ଗ ପାଟଣା ହାଟକୁ ବାହାରିଲା । ସେଠି ସଉଦା ବୋହିବା ସହିତ ଜଗନ୍ନାଥ ଯେମିତି ଜିନିଷ ତଉଲ ମୂଲ କରିବାରେ ଓ ଦେଖି ପରଖି ବଛାବଛି କରିବାରେ ସାହାଯ୍ୟ କଲା, ନାରାୟଣ





ସାଧବ ଚମକୃତ ହେଲା । ବୋଇତ ସେଠୁ ପୂର୍ବମୋଡ଼ ନେଇ ବ୍ରହ୍ମଦେଶ ମୁଖୀ ହେଲା ।

ବ୍ରହ୍ମଦେଶର ପେଗୁ ସହର । ସେଠି ପ୍ରତିଷ୍ଠିତ କଳିଙ୍ଗ ବ୍ୟାପାରୀ ନାରାୟଣ ସାଧବର ପରମମିତ୍ର ଚନ୍ଦ୍ର ସାଧବର ଘର । ନାରାୟଣ ସାଧବ ସେଠାରେ ଅତିଥି ହେଲେ ଏବଂ ବୋଇତରୁ ତାଙ୍କର ବଣିଜ୍ୟ ଦ୍ରବ୍ୟ ସବୁ ଚନ୍ଦ୍ର ସାଧବର ସମୁଦ୍ରତଟସ୍ଥ ବିଶାଳ ବିପଣୀ ଗୃହ ମାନଙ୍କୁ ସ୍ଥାନାନ୍ତରିତ ହେଲା । କିଛିଦିନ ବିଶ୍ରାମ କରି ଯାତ୍ରା ବଥା ତୁଟିଲା ଉତାରୁ ବେପାରକୁ ବାହାରିବେ ବୋଲି ନାରାୟଣ ସାଧବଙ୍କୁ ମିତ୍ର ଚନ୍ଦ୍ର ସାଧବ ଅନୁରୋଧ କଲେ । ସେଇ ମଉକାରେ ଜଗନ୍ନାଥ ବ୍ରହ୍ମଦେଶ ଆବିଷ୍କାର କରିବାକୁ ବାହାରିଲା ।

ଇରାୱାଡ଼ି ଓ ରେଙ୍ଗୁନ ନଦୀର ବିସ୍ତୃତ ମାନବଶୂନ୍ୟ ଅବବାହିକା । ଅତ୍ୟନ୍ତ ଉର୍ବର ମୃତ୍ତିକା, ସୁନାଖଣି ଓ ଦୁର୍ମୂଲ୍ୟ ବୃକ୍ଷରାଜିରେ ପରିପୂର୍ଣ୍ଣ ଅଞ୍ଚଳ, ଉପଭୋଗ କରିବାକୁ କେହି ନାହିଁ । ଚନ୍ଦ୍ର ସାଧବ ନିଶ୍ଚେ ଏମିତି ଦିନେ ଏଠିକି ଆସି ଦୁଇଶ' ବାଟି ଜମି ଆବୋରି ଏବେ ରଜାଭୋଗ କରୁଛି । ପାଞ୍ଚଦିନ ପରେ ନାରାୟଣ ସାଧବ ବେପାର କରିବାକୁ ବାହାରିଲା । ତା'ସହିତ ବିଭିନ୍ନ ହାଟ ପେଣ୍ଠ ବୁଲି ବୁଲି ଜଗନ୍ନାଥ ଦେଖିଲା ଏଠି ଭାରତ, ଚୀନ, କମ୍ବୋଜ (କାମ୍ବୋଡ଼ିଆ), ଶ୍ୟାମଦେଶ (ଥାଇଲାଣ୍ଡ), ସିଂହଳ ଆଦି ସବୁ ଦେଶର ଜିନିଷ କିଣାବିକା ହେଉଛି । ଆଉ କଳିଙ୍ଗ ସାଧବତ ଏଠି ହାଉଯାଉ ।

ଜଗନ୍ନାଥ ନିଷ୍ପତ୍ତି ନେଲା ନାରାୟଣ ସାଧବ ସହିତ ଦେଶକୁ ଫେରି ନଯାଇ ଏଠି ରହିଯିବ । ନାରାୟଣ ସାଧବ ମଧ୍ୟ ଇତିମଧ୍ୟରେ ତା'ର ପାରିବାର ପଣିଆ ଦେଖି ନିଜ ହାତରେ ନିଜର ଉଜ୍ଜ୍ୱଳ ଭବିଷ୍ୟତ ଗଢ଼ିପାରିବାର ଦକ୍ଷତା ଆବିଷ୍କାର କରିସାରିଥିଲା । ତେଣୁ ସେ ଜଗନ୍ନାଥକୁ ନିଜ ଗୋଡିରୁ ମୁକ୍ତି ଦେଇଦେଲା । ଏତିକି ଦିନରେ ଅର୍ଜନ କରିଥିବା ଜ୍ଞାନ ତଥା ନିଜର ବୁଦ୍ଧି ଏବଂ ବଳକୁ ଲଗାଇ ଜଗନ୍ନାଥ ଖୁବ୍ କମ୍ ଦିନରେ ରେଙ୍ଗୁନ୍‌ର ବିସ୍ତୃତ ଇଲାକାରେ ଆଧିପତ୍ୟ ବିସ୍ତାର କଲା ।

ବୋଇତ ବାହୁଡ଼ିଲା । ଜଗନ୍ନାଥ ବାହୁଡ଼ିଲା ନାହିଁ । ଗାଁରୁ ଯାଇଥିଲେ ଛ'ଜଣ, ଫେରିଲା ଜଣେ – ଘନ ପାଢ଼ୀ । ଦୁଇ ଜଣ ଅଜଣା ରୋଗରେ ମଲେ; ଜଣେ ରେଙ୍ଗୁନର ଗୋଟେ ଝିଅ ସହିତ ଭାବପୀରତି କରି ସେଇଠି ରହିଗଲା, ଆଉ ଜଣେ ନାରାୟଣ ସାଧବ ସହ ରିଷା ପଡ଼ିକି (ରାଗ ହୋଇ) ଆଉ ଜଣେ କଳିଙ୍ଗ ସାଧବର ବୋଇତରେ ବାଲି ଦ୍ୱୀପ ଚାଲିଗଲା । ଘନ ପାଢ଼ୀ ଏ ବାରତା ପାଞ୍ଚ ଘରେ କହିଦେଲା । କୌତୁକୀର ଶାଶୁ ଶଶୁର, ପୁଅ ବଞ୍ଚିଛି, ଭଲରେ ଅଛି, ଏବେ ନହେଲେ ବି କେବେ ଦେଶକୁ ଫେରିବ, ଏ ବାର୍ତ୍ତା ପାଇ ଆଶ୍ୱସ୍ତ ହେଲେ । ହେଲେ କୌତୁକୀ ? ଦାଣ୍ଡକୁ ଗଲେ ମରଦଙ୍କ ଆତଯାତ, ବାରିକୁ ଗଲେ ଶାଳଖଣ୍ଡି ବଣରୁ ମୟୂରର ଡାକ ଆଉ ଶାଳ'ଫୁଲର ବାସ୍ନା, ଘରକୁ ଆସିଲେ ଶାରୀ ଚଢ଼େଇର ଜଗନ୍ନାଥ ଜଗନ୍ନାଥ ବୋଲି । ଓଃ ! ମେଦିନୀ ଫାଟିଯାଆନ୍ତାନି, ସୀତା ଠାକୁରାଣୀଙ୍କ ପରି ଭୂଇଁରେ ପଶିଯାଆନ୍ତି । ଆଉ ଏ ଅକୁହା ଯନ୍ତ୍ରଣା ଭୋଗିବାକୁ ପଡ଼ନ୍ତାନି । ଏହା କେବଳ କୌତୁକୀର ଅନ୍ତର୍ଦାହ ନଥିଲା, ଏହା ଥିଲା ଅକଳନ୍ତି ଓଡ଼ିଆଣୀଙ୍କର ଅସରନ୍ତି ମର୍ମବେଦନା, ଯେଉଁମାନଙ୍କ ଉଚ୍ଚାଭିଳାଷୀ ସ୍ୱାମୀମାନେ ନୌବାଣିଜ୍ୟ କରି ବିତ୍ତଶାଳୀ ସୌଦାଗର ହେବାର ସ୍ୱପ୍ନ ଦେଖି ପ୍ରବାସରେ ନିଜର ଠିକଣା ହଜାଇ ଦେଇଥିଲେ ।

ପାଞ୍ଚ ବର୍ଷ ପରେ ଜଗନ୍ନାଥ ଫେରିଲା । ସେତେବେଳକୁ ସେ ଆଉ ରସୁଣଗନ୍ଧିଆ କୋଚଟ ଚଷା ନଥିଲା । ଶାନ୍ତିପୁରୀ ଧୋତି ସହିତ ମସଲିନ୍ ଅଙ୍ଗୀ ଆଉ ଚମଡ଼ା ଚପଲ । ମୁଣ୍ଡରେ ବ୍ରହ୍ମଦେଶୀ ପଗଡ଼ି ସହିତ ହାତରେ ସୁନାବେଣ୍ଟ ଲଗା କାରୁକାର୍ଯ୍ୟଭରା ହାତୀଦାନ୍ତର ଛଡ଼ି । କାନରେ ମକରକୁଣ୍ଡଳ, ହାତରେ ବଳୟ କଙ୍କଣ । ରୂପଭେକ ସହିତ ଜଗନ୍ନାଥର ଚାଲିବା, ଚାହିଁବା, କଥା କହିବାର ଠାଣିବି ବଦଳି ଯାଇଥିଲା । ଗାଁଦାଣ୍ଡରେ ଲୋକ ଟେରା ଟାଟକା ହେଇ ଚାହିଁ ରହିଲେ । ଇଏ କ'ଣ ସତରେ ମଧୁଆ ପୁଅ ଜଗନ୍ନାଥିଆ ! ପଛରେ ଚାରିଜଣ ଭାରୁଆ ଏକ ବିରାଟ ସିନ୍ଦୁକ ବୋହି ଆଣି ଘରେ ରଖିଲେ । ଦାଣ୍ଡଲୋକ କ'ଣ, ବାପାମା', ଏମିତିକି କୌତୁକୀ ମଧ୍ୟ ନିଜ ଆଖିକୁ ବିଶ୍ୱାସ କରିପାରିଲାନି । ଯୋଉଦିନ କୌତୁକୀ ମୟୂରକଣ୍ଠିଆ ଦକ୍ଷଣୀ ପାଟ ପିନ୍ଧି ଖୋସାର ଚଉଁରି କାଠିଠୁ ପାଦର ପାହୁଡ଼ ଯାଏଁ ସୁନାରେ ଛାଉଣି ହେଇ ସ୍ୱାମୀ ସହିତ ହାନ୍ଦୋଳାରେ ବସି ପିଉସୀ ପୁଅ ଭାଇର ବାହାଘରରେ ଯୋଗଦେବାକୁ ଗଲା, ଲୋକେ କହିଲେ "ହେଇ ଦେଖମ, ଜଗନ୍ନାଥ ସାଧବ କୌତୁକୀ ସାଧବାଣୀ ଯାଉଛନ୍ତି !'



ରେଙ୍ଗୁନ ପରି ଏଠି ମଧ୍ୟ ଜଗନ୍ନାଥ ପ୍ରାୟ ଦେଢ଼ଶହ ଲୋକ ଲଗାଇ ଶାଳଖଣ୍ଡି ବଣରୁ ଏକ ବିସ୍ତୃତ ଅଞ୍ଚଳ ସଫା କରି ଚାଷ ଜମି ତିଆରି କଲା । ସେଇବାଟ ଦେଇ ଯାଉଥିବା ବାଘୁଆ ଝରକୁ ଦି'ମୁଣ୍ଡିଆ ମଝିରେ ବନ୍ଧେଇ ବିଲକୁ ପାଣି ମଡ଼େଇବାର ବ୍ୟବସ୍ଥା କଲା । ଦଶବାଟିଆ, ବାରବାଟିଆ ଆମ୍ବ ତୋଟା ଦୁଇଟା କଲା; ଗାଁଠୁ ଚିଲିକା ଯାଏଁ ବାଟରେ ଚାରିଟା ଚଟିଘର ଓ କୂଅ ତିଆରି କଲା । ବାପାମା' ଯାହା ମାନସିକ କରିଥିଲେ, ତାହା ପୂରଣ କଲା । ତା ସହିତ ଶହେ ବ୍ରାହ୍ମଣଙ୍କୁ ଗାଈ ଦାନ ଦେଲା । ଦରିଦ୍ରଙ୍କୁ ବସ୍ତ୍ର ଦାନ କଲା ।

ବାହୁଡ଼ା ବେଳ । ଜଗନ୍ନାଥ ପଚାରିଲା "ମୋ ସାଙ୍ଗରେ ରେଙ୍ଗୁନ୍ ଯିବୁ କୌତୁକୀ ? ପ୍ରବାସରେ ଏକେଲା ରହିବା ଭାରି ଦୁଃଖଲୋ' । "ହଂସିନୀକୁ ଛ' ବର୍ଷ ହେଲା । ଆଉ ବରଷକେ ତା' ବିଭାଘର ହେବ । ତାକୁ ଧରି ପ୍ରବାସ ଗଲେ ବାହୁଡ଼ିଲା ବେଳକୁ ଆଉ ପାତ୍ର ମିଳିବେନି । ତା'ଛଡ଼ା ବୁଢ଼ା ବାପାମା, ଘର ଜଞ୍ଜାଳ କିଏ ବୁଝିବ ? ବରଂ ତମେ ଏପାଳି ଝଅଟ ବାହୁଡ଼ି ଆସିବ; କୌତୁକୀ ଉତ୍ତର ଦେଲା । ଜଗନ୍ନାଥ କହିଲା, ଜାଣିଲୁ, ମୁଁ ଭାବୁଛି ଛୋଟ ହେଉ ପଛେ ଏପାଳି ଗୋଟେ ବୋଇତ କିଣିବି । ବୋଇତ ନାଁ କ'ଣ ଦେବି ଜାଣିଛୁ ? କୌତୁକୀ । କୌତୁକୀ ହସିହସି ଗଡ଼ିଗଲା - ଛୋଟ ନାଇଁ, ବଡ଼ ବୋଇତ କିଣ ଆଉ ତା' ନାଁ ଦିଅ "ହଂସିନୀ ବାପା' । ଜଗନ୍ନାଥ ତା' ହାତଧରି କହିଲା, "ହଉ ତୋ' କଥା ରହିଲା । ବୋଇତଟେ କିଣିଦେଲେ ଆଉ ପରନିର୍ଭର ନକରି ମୋ'ର ଯେବେ ମନହବ ମୁଁ ତୋ' ପାଖକୁ ଆସିପାରିବି ।' ଆରଥର ଆସିଲାବେଳକୁ ତୋ'ପାଇଁ ମେଘମାଳିଆ, ଫଗୁରଙ୍ଗିଆ ଦକ୍ଷିଣୀପାଟ କଳିଙ୍ଗପାଟଣା ହାଟରୁ ଆଣିଦେବି ।

ରେଙ୍ଗୁନରେ ପହଞ୍ଚି କିନ୍ତୁ ସବୁକିଛି ଓଲଟପାଲଟ ହୋଇଗଲା । ଜଗନ୍ନାଥ ସେଠି ଗୋଟିଏ ସୁନ୍ଦରୀ ବ୍ରହ୍ମଦେଶୀ ଝିଅର ପ୍ରେମରେ ପଡ଼ିଗଲା ଓ ତାକୁ ବିବାହ କଲା । ସେ କେବଳ ସୁନ୍ଦରୀ ନଥିଲା । ଚତୁରୀ ମଧ୍ୟ ଥିଲା । ଉଭୟେ ମିଶି ନିଜର ସାମ୍ରାଜ୍ୟ ଆହୁରି ବିସ୍ତାର କଲେ । ଯା ଭିତରେ କେମିତି ଦଶବର୍ଷ ବିତିଗଲା ଜଣାପଡ଼ିଲାନି । ଦିନେ ଜଗନ୍ନାଥର ଦେଶ ମାଟି ମନେ ପଡ଼ିଲା । ଅନ୍ୟାନ୍ୟ ଅନେକ ଚିଜ ସହିତ ତେର ସିନ୍ଦୁକ ସୁନା ଭରି ସେ ରେଙ୍ଗୁନରୁ ପଶ୍ଚିମ ମୁହାଁ ବୋଇତ ମେଲିଦେଲା ।

ଅମାବାସ୍ୟା ରାତି । ମଝି ସମୁଦ୍ର । କେହି କିଛି ବୁଝିବା ଆଗରୁ ଜଳଦସ୍ୟୁ ଆକ୍ରମଣ କରିସାରିଥିଲେ । ଜଗନ୍ନାଥର ପାଇକମାନେ ଖୁବ ଲଢ଼ିଲେ, ହେଲେ ଦଳଦସ୍ୟୁମାନଙ୍କ ଅସ୍ତ୍ର ଆଗରେ ପାରିଲେନି । ରାତି ପାହି ଆସିଲା ବେଳକୁ ଦଳଦସ୍ୟୁମାନେ ଜଗନ୍ନାଥକୁ ହାଣି ଖଣ୍ଡଖଣ୍ଡ କରି ସମୁଦ୍ରକୁ ଫୋପାଡ଼ି ଦେଲେ ଏବଂ ବୋଇତ ଅକ୍ତିଆର କରିନେଲେ । ଏ ଖବର ନା ବ୍ରହ୍ମଦେଶରେ ପହଞ୍ଚିଲା ନା ଜଗନ୍ନାଥର ଗାଁରେ । କୌତୁକୀ ସାଧବାଣୀ ଚାରିକୋଡ଼ି ଆଠବର୍ଷରେ ମଶାଣିକୁ ଗଲାଯାଏଁ ଶଙ୍ଖାସିନ୍ଦୂର, ମୟୂରକଣ୍ଠିଆ ଶାଢ଼ୀପିନ୍ଧି ପ୍ରତୀକ୍ଷା କରିଥିଲା, ମନଟାଣ କରିଥିଲା, ଜଗନ୍ନାଥ ସାଧବ ନିଶ୍ଚେ ଫେରିବ । ହାତଧରି କଥା ଦେଇଥିଲା ନା !

୦୦

# କଟକ ବାଲିଯାତ୍ରା ଏକ ଜାତୀୟ ଉତ୍ସବ

❖ ଡ଼ାକ୍ତର ରବିରଞ୍ଜନ ସାହୁ

ଐତିହାସିକ କଟକ ସହରରେ ସାତରୁ ଅଧିକ ଦିନ ଧରି ଆୟୋଜିତ ହେଉଥିବା ସାଂସ୍କୃତିକ ଉତ୍ସବ ବାଲିଯାତ୍ରା ଯଥାର୍ଥରେ ଏକ ଜାତୀୟ ଉତ୍ସବ । ଅନେକ ଦାବି ପରେ ଭାରତ ସରକାରଙ୍କ ପକ୍ଷରୁ ବାଲିଯାତ୍ରାକୁ ଜାତୀୟ ଉତ୍ସବର ମାନ୍ୟତା ମିଳି ନାହିଁ ସତ, ଅନେକ ଉଦ୍ୟମ ହୋଇଥିଲାବେଳେ ଏହା ହୋଇ ପାରି ନାହିଁ, ଏକ ରାଜ୍ୟ ଉତ୍ସବର ମାନ୍ୟତା ମିଳିଛି, ମାତ୍ର ବାଲିଯାତ୍ରା ଯେ ଏକ ଜାତୀୟ ଉତ୍ସବ ଏହାକୁ ଯେ କେହି ସ୍ୱୀକାର କରିବେ ନିଶ୍ଚୟ । ଭାରତ ସରକାରଙ୍କ ପକ୍ଷରୁ ଅନେକ ଧାର୍ମିକ ଉତ୍ସବ ଯଥା ରଥଯାତ୍ରା, ଦୁର୍ଗାପୂଜା, ଦୀପାବଳି, ମକର, ଇଦ, ମହରମ, ବୁଦ୍ଧ ଜୟନ୍ତୀ, ମହାବୀର ଜୟନ୍ତୀ, ବଡଦିନ ଆଦି, ସାଂସ୍କୃତିକ ଉତ୍ସବ ପୋଙ୍ଗଲ, ବୈଶାଖୀ, ବିହୁ, ନୂଆଖାଇ ଆଦି, ଜାତୀୟ ଦିବସ ସ୍ୱାଧୀନତା ଦିବସ, ସାଧାରଣତନ୍ତ୍ର ଦିବସ ଆଦିକୁ ଜାତୀୟ ଉତ୍ସବର ମାନ୍ୟତା ପ୍ରଦାନ କରିଛନ୍ତି । ବାଲିଯାତ୍ରା କୌଣସି ଧର୍ମ ସହିତ ସଂପୃକ୍ତ ନୁହେଁ କି ଏହା ଏକ ଧାର୍ମିକ ଉତ୍ସବ ନୁହେଁ । ଏହା ଉତ୍କଳୀୟ ପ୍ରାଚୀନ ସଂସ୍କୃତି ଓ ପରମ୍ପରାର ଏକ ଉତ୍ସବ । ପ୍ରାଚୀନ ଉତ୍କଳର ନୌବାଣିଜ୍ୟ ପରମ୍ପରା ସହିତ ଏହି ଉତ୍ସବର ସମ୍ପର୍କ ରହିଛି । ଏକଦା ଉତ୍କଳ କଳିଙ୍ଗ ନାମରେ ପରିଚିତ ଥିଲା । ସେହିପରି ଆଜିର ବଙ୍ଗୋପସାଗର ଦିନେ କଳିଙ୍ଗ ସାଗର ନାମରେ ଜଣାଯାଉଥିଲା । ସମୁଦ୍ର ବକ୍ଷରେ କଳିଙ୍ଗର ବାଣିଜ୍ୟିକ କାରବାରକୁ ନେଇ ସେହି ସମୁଦ୍ରର ଏପରି ନାମକରଣ ହୋଇଥିବା ନିଶ୍ଚିତ ।

ପ୍ରାଚୀନ କାଳରେ କଳିଙ୍ଗ ନୌବାଣିଜ୍ୟରେ ସମୃଦ୍ଧ ହୋଇଥିଲା । ବହୁ ଦୂରଦୁରାନ୍ତର ଦେଶମାନଙ୍କୁ କଳିଙ୍ଗର ସାଧବମାନେ ବଣିଜ କରି ଯାଉଥିଲେ । ଜାଭା, ସୁମାତ୍ରା, ବାଲିଦ୍ୱୀପ ସହିତ ସୁଦୂର ଆରବ ଦେଶ ଏବଂ ଆଫ୍ରିକୀୟ ଦେଶକୁ ମଧ୍ୟ କଳିଙ୍ଗର ବାଣିଜ୍ୟ ପ୍ରସାରିତ ହୋଇଥିଲା । ଏହି କାରଣରୁ ସେତେବେଳେ କଳିଙ୍ଗ ଓ ପରକାଳରେ ସେହି ନୌବାଣିଜ୍ୟକୁ ମାଧ୍ୟମ କରି ଉତ୍କଳ ଉନ୍ନତିର ଚରମ ଶିଖରରେ ପହଁଚି ପାରିଥିଲା । ଆଜି ବି ଏହାର ଉଦାହରଣ ଇଣ୍ଡୋନେସିଆ ମ୍ୟାଲେସିଆ ଆଦିରେ ଦୃଷ୍ଟିଗୋଚର ହୋଇଥାଏ । ସେଠାରେ ଏବେ ବି କଳଙ୍ଗ ଓ ଉତ୍କଳୀୟ ସଂସ୍କୃତି ରହିଛି । ସେଠାକାର ଲୋକେ ବି ଯାତ୍ରା ମହୋତ୍ସବ ଆଦି ପାଳନ କରୁଛନ୍ତି ।

ପ୍ରାଚୀନ କଳିଙ୍ଗ କୁହନ୍ତୁ ବା ଉତ୍କଳ, ଏକ ସମୃଦ୍ଧ ଦେଶରେ ପରିଣତ ହୋଇଥିଲାବେଳେ ଏହାର ଶାସକମାନେ ମଧ୍ୟ ସେତେବେଳେ ପ୍ରସିଦ୍ଧି ହାସଲ କରିଥିଲେ । ଏକଦା ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ଉତ୍କଳର ସୀମା ବିସ୍ତାରିତ ହୋଇଥିଲା । ସେଦିନର ନୌବାଣିଜ୍ୟ ଆଜି ନାହିଁ ହେଲେ ସେହି ପ୍ରାଚୀନ ପରମ୍ପରା ଏବେ ବି ବଂଚି ରହିଛି । ଉନ୍ନତ ନୌବାଣିଜ୍ୟର ସ୍ମୃତି ବହନ କରି ଏବେ ବି ଓଡ଼ିଆ ଲୋକେ ଘରେ ଘରେ ପର୍ବ ପାଳନ କରୁଛନ୍ତି ଓ ଯାତ୍ରା ଆୟୋଜନ କରୁଛନ୍ତି । ଏହି କାରଣରୁ କାର୍ତ୍ତିକ ପୂର୍ଣ୍ଣମୀରେ ନଦୀ ବା ପୁଷ୍କରିଣୀମାନଙ୍କରେ ଡଙ୍ଗା ଭସା ଯାଉଛି । ନୌବାଣିଜ୍ୟ ସହିତ କାର୍ତ୍ତିକ ପୂର୍ଣ୍ଣମୀର ସଂଯୋଗ ରହିଛି । ଏହିଦିନ ଉତ୍କଳୀୟ ବଣିକମାନେ ବାଣିଜ୍ୟ ସାରି ଫେରୁଥିଲେ ଓ ସେମାନଙ୍କର ସ୍ୱାଗତ ପାଇଁ ଲୋକମାନଙ୍କର ଭିଡ ନଦୀକୂଳରେ ଲାଗିଯାଉଥିଲା । ବାଣିଜ୍ୟରୁ ଫେରି ସାଧବମାନେ ସଙ୍ଗରେ ଆଣିଥିବା ସମାଗ୍ରୀଗୁଡିକର ବ୍ୟବସାୟ କରୁଥିଲେ । ତେଣୁ ନଦୀ କୂଳରେ ମେଳା ଲାଗୁଥିଲା । ଏହି ମେଳା ପରେ ବାଲିଯାତ୍ରାରେ ପରିଣତ ହୋଇଛି । ମହାନଦୀ ବାଲିରେ ଯାତ୍ରା ହେଉଥିବାରୁ ଏହାର ଏପରି ନାମକରଣ ହୋଇଥିବା ଜଣାଯାଏ । ସେହି ପ୍ରାଚୀନ କାଳରୁ ଏହି ଯାତ୍ରା ହୋଇଆସୁଛି । ସେ ଦିନର ସେହି ସାଧବ ସଂସ୍କୃତି ସମୟ ସୁଅରେ ହଜିଯାଇ ଥିଲାବେଳେ ପରମ୍ପରା କିନ୍ତୁ ବଂଚି ରହିଛି । ଏବେ ବି ବାଲିଯାତ୍ରାରେ ବହୁ ଦୂରଦୁରାନ୍ତରୁ ବ୍ୟବସାୟୀମାନେ ଆସି ଭାଗ ନେଉଛନ୍ତି ଓ ସେମାନଙ୍କ ସାମଗ୍ରୀମାନ ବିକ୍ରିକରି ଲାଭବାନ ହେଉଛନ୍ତି ।

ବାଲିଯାତ୍ରା ସହିତ ଆଉ ଏକ ଐତିହାସିକ ଘଟଣା ବି ଗୁରୁତ୍ୱ ବହନ କରେ । ତାହା ହେଲା ଆଜକୁ ପାଞ୍ଚଶହ ବର୍ଷ ପୂର୍ବେ ଓଡ଼ିଶାକୁ ଆସିଥିଲେ ଧର୍ମ ପ୍ରଚାରକ ଶ୍ରୀଚୈତନ୍ୟ । ନଦିଆ ନବଦ୍ୱୀପରୁ ଶ୍ରୀ ଚୈତନ୍ୟଙ୍କର ଓଡ଼ିଶା ଆଗମନ ଓ କଟକ ମହାନଦୀ କୂଳରେ ରାଜାଙ୍କ ଦ୍ୱାରା ତାଙ୍କର ସ୍ୱାଗତ ସମ୍ବର୍ଦ୍ଧନା ଏକ ମେଳାରେ ପରିଣତ



ହୋଇଥିଲା । ନୌକାରେ ଆସି ମହାନଦୀ କୂଳରେ ପହଁଚିବା ପରେ ଶ୍ରୀଚୈତନ୍ୟ ଖୁସିରେ ବାଲିରେ ଗଡିଯାଇଥିଲେ । ଏହି କାରଣରୁ ମହାନଦୀର ସେହି ସ୍ଥାନର ନାମ ଗଡଗଡିଆ ହୋଇଯାଇଥିବା ଜଣାଯାଏ ଯାହା ଆଜି ଗଡଗଡିଆ ଘାଟ ଭାବେ ପରିଚିତ । ଶ୍ରୀ ଚୈତନ୍ୟଙ୍କ ସ୍ୱାଗତ ଓ ତାଙ୍କ ବିଦାୟୀ ପାଇଁ ଓଡ଼ିଶାର ରାଜାଙ୍କ ପକ୍ଷରୁ ନଦୀ କୂଳରେ ସେତେବେଳେ ଆୟୋଜିତ ହୋଇଥିବା କାର୍ଯ୍ୟକ୍ରମ ଏକ ମେଳାରେ ପରିଣତ ହୋଇଛି, ଯାହା ଶ୍ରୀ ଚୈତନ୍ୟଙ୍କ ଓଡ଼ିଶା ଆଗମନର ବାର୍ତ୍ତା ସହିତ ପ୍ରତିବର୍ଷ ଆୟୋଜିତ ହେଉଅଛି । ଶ୍ରୀ ଚୈତନ୍ୟ ମହାପ୍ରଭୁ କଟକରୁ ଯାଇ ପୁରୀରେ ଅବସ୍ଥାନ କରିଥିଲେ ଓ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ତାଙ୍କ ମହିମା ଗାନ କରିଥିଲେ । ଶ୍ରୀ ଚୈତନ୍ୟଙ୍କ ପାଇଁ ଓଡ଼ିଶାରେ ଓ ଓଡ଼ିଶା ବାହାରେ ଜଗନ୍ନାଥ ଚେତନା ପ୍ରସାର ହେଲା । ଜଗନ୍ନାଥ ଦାସ, ବଳରାମ ଦାସ, ଯଶୋବନ୍ତ, ଶିଶୁ ଅନନ୍ତ ଆଦି ଶ୍ରୀ ଚୈତନ୍ୟଙ୍କ ଶିଷତ୍ୱ ଗ୍ରହଣ କରି ଜଗନ୍ନାଥ ଧର୍ମର ପ୍ରଚାର ପ୍ରସାର କରିଥିଲେ । ଏହିମାନଙ୍କର କାର୍ଯ୍ୟ ଓଡ଼ିଶାରେ ଏକ ଯୁଗ ସୃଷ୍ଟି କଲା ଯାହା ପଂଚଶଖା ଯୁଗ ଭାବେ ଖ୍ୟାତ ।

କଟକରେ ଆୟୋଜିତ ହୋଇ ଆସୁଥିବା ଏହି ଐତିହାସିକ ବାଲିଯାତ୍ରା ସମୟ ସୂଅରେ ତା'ର ଆକାର ପ୍ରକାର ଓ ପରିପାଟିରେ ପରିବର୍ତ୍ତନ ହୋଇଛି ମାତ୍ର ଏହାର ମୌଳିକତା ଲୋପ ପାଇଯାଇ ନାହିଁ । ମେଳା ଆୟୋଜନ ମାଧ୍ୟମରେ ବାଣିଜ୍ୟ କାରବାର ବୃଦ୍ଧି ପାଇବା, ମେଳା ମାଧ୍ୟମରେ ପ୍ରାଚୀନ ଉତ୍କଳୀୟ ଉନ୍ନତ ସଂସ୍କୃତିର ପ୍ରଚାର ପ୍ରସାର ହୋଇ ପାରୁଛି । ପରମ୍ପରାକୁ ଲୋକେ ଭୁଲିପାରି ନାହାନ୍ତି । ଯଦି ଯାତ୍ରା ହେଉନଥାନ୍ତା, ଲୋକମାନଙ୍କର ମେଳା ଲାଗୁନଥାନ୍ତା ତେବେ ଲୋକେ ସେହି ପ୍ରାଚୀନ ସଂସ୍କୃତି ଓ ତା'ର ଉନ୍ନତ ପରମ୍ପରାକୁ ଭୁଲି ଯାଇଥାନ୍ତେ । ଓଡ଼ିଆମାନେ ଯେ ଏକଦା ବୀର ଥିଲେ, ସମୃଦ୍ଧ ଥିଲେ, ଏକ ଉନ୍ନତ ଜାତିରେ ପରିଣତ ହୋଇଥିଲେ ତାହା ଭୁଲି ଯାଇଥାନ୍ତେ । ତେଣୁ ପ୍ରାଚୀନ ସଂସ୍କୃତି ଓ ପରମ୍ପରାକୁ ବଜାୟ ରଖିବାରେ ମେଳା ବା ମହୋତ୍ସବର ଯୋଗଦାନ ରହିଛି ସେହିପରି କଟକ ବାଲିଯାତ୍ରା ମଧ୍ୟ । ଏହା ଦ୍ୱାରା ଓଡ଼ିଆମାନେ ସେମାନଙ୍କର ପୂର୍ବ ସୁରୀମାନଙ୍କୁ ସ୍ମରଣ କରି ଏବେ ବି ଗର୍ବ ଅନୁଭବ କରୁଛନ୍ତି । ଐତିହାସିକ କଟକ ବାଲିଯାତ୍ରା କେବଳ ଓଡ଼ିଶାରେ ସୀମିତ ନୁହେଁ । ଏହି ଯାତ୍ରାରେ କେବଳ ଓଡ଼ିଶାର ଲୋକମାନେ ସାମିଲ ହୋଇ ନ ଥାନ୍ତି । ଏହି ଯାତ୍ରାରେ ଓଡ଼ିଶା ବାହାରୁ ବହୁଲୋକ ସାମିଲ ହୋଇଥାନ୍ତି ତଥା ଓଡ଼ିଶା ବାହାରେ ରହୁଥିବା ଲୋକମାନେ ମଧ୍ୟ ଏହି ଯାତ୍ରା ସମୟରେ ଘରକୁ ଫେରି ଯାତ୍ରାର ଆନନ୍ଦ ନେଇଥାନ୍ତି । ଯେହେତୁ ଏହା ବର୍ଷକରେ ଥରେ ହୋଇଥାଏ ଏବଂ ଏହାର ମଜା ସବୁବେଳେ ଓ ସବୁ ସ୍ଥାନରେ ନ ଥାଏ ସେହି କାରଣରୁ ଅନ୍ୟ ପ୍ରଦେଶମାନଙ୍କରୁ ଲୋକେ ବାଲିଯାତ୍ରା ଦେଖିବାକୁ ଆସିଥାନ୍ତି । ଭାରତ ବର୍ଷର ବ୍ୟବସାୟୀ ପ୍ରତିଷ୍ଠାନମାନ ଏହି ଯାତ୍ରାରେ ଭାଗ ନେଉଛନ୍ତି ଓ ଭାରତର ବିଭିନ୍ନ ପ୍ରାନ୍ତରେ ବାସ କରୁଥିବା ଓଡ଼ିଆ ଓ ଅଣଓଡ଼ିଆମାନେ ବି ଏ ଯାତ୍ରା ଦେଖିବାକୁ ଆସୁଛନ୍ତି, ତେଣୁ ଏହା ଏକ ଜାତୀୟ ଯାତ୍ରା ବା ଉତ୍ସବରେ ପରିଣତ ହୋଇସାରିଛି । ବାଲିଯାତ୍ରାକୁ କେନ୍ଦ୍ର ସରକାରଙ୍କ ସ୍ୱୀକୃତି ନ ଥିଲେ ମଧ୍ୟ ଏହା ଯେ ଏକ ଜାତୀୟ ଉତ୍ସବ ତାହା ଏହି କାରଣରୁ ପ୍ରତିପାଦିତ ହେଉଛି ।

ଚାନ୍ଦିନୀଚୌକ, କଟକ-୨
ଦୂରଭାଷ: ୯୪୩୭୩-୧୦୧୭୧







# ବିଶ୍ୱ ମହୋତ୍ସବ ବାଲିଯାତ୍ରା

❖ ମାତୃଦତ୍ତ ମହାନ୍ତି

ହଜାର ବର୍ଷର ସହର ରୌପ୍ୟ ନଗରୀ କଟକର ଦେହ ଛୁଇଁ ପ୍ରବାହିତ ପୂଣ୍ୟତୋୟା ମହାନଦୀର ବିସ୍ତୀର୍ଣ୍ଣ ବାଲୁକା ଶଯ୍ୟାରେ ଶହ ଶହ ବର୍ଷ ଧରି ପାଳିତ ହୋଇଆସୁଛି ପବିତ୍ର ବାଲିଯାତ୍ରା । ସନାତନ ସଂସ୍କୃତିର ଅନ୍ୟତମ ପବିତ୍ର ଦିବସ କାର୍ତ୍ତିକ ପୂର୍ଣ୍ଣିମା ଦିନ ଆରମ୍ଭ ହୋଇ ସପ୍ତାହ ବ୍ୟାପୀ ମହା ଆଡ଼ମ୍ବରରେ ପାଳିତ ହୋଇଥାଏ ଏହି ଉତ୍ସବ । ଏହି ଉତ୍ସବର ଉତ୍ପତ୍ତି, କ୍ରମଃବିକାଶ ଏବଂ ଆକାର ସମ୍ପର୍କରେ ଇତିହାସ ନିରବ । ତଥାପି ବାଲିଯାତ୍ରାକୁ ନେଇ ନାନା ଲୋକକଥା, କିମ୍ବଦନ୍ତୀ ଏବଂ ଜନଶ୍ରୁତି ରହିଆସିଛି । ନିଃସନ୍ଦେହ ଏହି ଉତ୍ସବ ପ୍ରାଚୀନ ଉତ୍କଳର ନୌବାଣିଜ୍ୟ ପରମ୍ପରା ସହ ଜଡ଼ିତ । ଏହିଦିନ କଳିଙ୍ଗ ସାଧବ ପୁଅର ଘରବାହୁଡ଼ା ହୁଏ ଅଥବା ପ୍ରବାସ ଯାତ୍ରା ସେ ନେଇ କୌଣସି ତଥ୍ୟ ପ୍ରମାଣ ନଥିଲେ ସୁଦ୍ଧା ଏହା ଯେ ଏକ ବାଣିଜ୍ୟ ମେଳା ଏହାକୁ ଇତିହାସ ଅସ୍ୱୀକାର କରି ପାରିବ ନାହିଁ । ବର୍ଷାଋତୁର ଶେଷରେ ଏବଂ ଏକ ନଦୀ କୂଳରେ ଆୟୋଜନ ହେବା, କୌଣସି ଦେବାଦେବୀଙ୍କୁ କେନ୍ଦ୍ର ନକରି କେବଳ କିଣାବିକା ପାଇଁ ଆୟୋଜନ ହେବା, ଏହିଦିନ ଓଡ଼ିଶାର ପୁରପଲ୍ଲୀରେ ଡଙ୍ଗା ଭସାର ପରମ୍ପରା ପାଳନ ହେବା, ଉତ୍ସବ ସ୍ଥଳରେ ବୋଇତ ବନ୍ଦାଣ ଆୟୋଜନ କରାଯିବା ପ୍ରଭୃତି ବାଲିଯାତ୍ରାକୁ ଓଡ଼ିଶାର ପ୍ରାଚୀନ ନୌବାଣିଜ୍ୟ ପରମ୍ପରା ସହ ଯୋଡ଼ି ଦେଇଛି । ଅନ୍ୟପକ୍ଷରେ ଏହି ଯାତ୍ରା ସହ 'ବାଲି' ଶବ୍ଦ ଯୋଡ଼ି ହୋଇଯିବା ମଧ୍ୟ ନୌବାଣିଜ୍ୟ ପରମ୍ପରା ସହ ଜୋଡ଼ି ଦେଇଛି । ଅନ୍ୟ ପକ୍ଷରେ ଏହି ଯାତ୍ରା ସହ 'ବାଲି' ଶବ୍ଦ ଯୋଡ଼ି ହୋଇଯିବା ମଧ୍ୟ ନୌବାଣିଜ୍ୟ ପରମ୍ପରା କଥାକୁ ଅଧିକ ପ୍ରମାଣିତ କରେ । ଉତ୍କଳର ବଣିକମାନେ ବିଭିନ୍ନ ସାମଗ୍ରୀ ନେଇ ବାଲିଦ୍ୱୀପକୁ ଯାତ୍ରା କରୁଥିବାରୁ ଏହି ଯାତ୍ରାର ନାମକରଣ ଏହିପରି ହୋଇଥିବା ଶୁଣାଯାଏ । ସେହିପରି ନଦୀ ବାଲିରେ ଆୟୋଜିତ ହେଉଥିବାରୁ ଏହାର ନାମକରଣ ବାଲିଯାତ୍ରା ହୋଇଥିବାର ଯୁକ୍ତିକୁ ମଧ୍ୟ ଅଗ୍ରାହ୍ୟ କରି ହେବନି । ସେ ଯାହାବି ହେଉ ଆମ ସମୃଦ୍ଧ ନୌବାଣିଜ୍ୟ ଓ ସଫଳ ବ୍ୟବସାୟର ପରିଚୟ ହେଉଛି ଐତିହାସିକ ବାଲିଯାତ୍ରା । ଏହି ଯାତ୍ରାର ବିଶେଷତ୍ୱ ହେଉଛି ଏହା ଜାତି, ଧର୍ମ, ବର୍ଣ୍ଣ, ସମ୍ପ୍ରଦାୟ, ସୀମା, ସରହଦର ସଂକୀର୍ଣ୍ଣତାରେ ଆବଦ୍ଧ ନୁହେଁ । ଏଠାରେ କୌଣସି ନିର୍ଦ୍ଦିଷ୍ଟ ଦେବାଦେବୀଙ୍କ ଆରାଧନା କରାଯାଏ ନାହିଁ । ଯାହାକି ପ୍ରମାଣ କରେ ହଜାର ହଜାର ବର୍ଷ ପୂର୍ବେ ଓଡ଼ିଆମାନେ ଧର୍ମ ସମ୍ପ୍ରଦାୟରୁ ଉର୍ଦ୍ଧ୍ୱରେ ଥାଇ ଏକ ବାଣିଜ୍ୟ ପରମ୍ପରାକୁ ସମୃଦ୍ଧ କରି ପାରିଥିଲେ । କେବେ ଆରମ୍ଭ ହୋଇଥିବା ଏହି ଯାତ୍ରା ପରମ୍ପରା ଆଜି ଏକ ମହାଦ୍ରୁମରେ ପରିଣତ ହୋଇଛି । ଏକଦା କେବଳ ଓଡ଼ିଶା ଏବଂ ଓଡ଼ିଆମାନଙ୍କ ମଧ୍ୟରେ ସୀମିତ ଥିବା ବାଲିଯାତ୍ରା ଆଜି ନିଜ ସୀମାକୁ ବିଶ୍ୱବଜାର ପର୍ଯ୍ୟନ୍ତ ପରିବ୍ୟାପ୍ତ କରିପାରିଛି । ଏହା ହିଁ ଐତିହାସିକ କଟକ ବାଲିଯାତ୍ରାର ସ୍ୱତନ୍ତ୍ରତା । ଯେଉଁଠି ସମାଜର ପ୍ରତିଟି ମଣିଷର ଆବଶ୍ୟକତା ପୂରଣ ପାଇଁ ଜିନିଷ ଉପଲବ୍ଧ ହୋଇଥାଏ । ଏଠାରୁ କେହି ଖାଲିହାତରେ ଫେରି ଯାଏନି । ଏହି ଯାତ୍ରାର କେହି ନିରାଶ ହୋଇ ଘରକୁ ଫେରେନି । ସମସ୍ତଙ୍କ ପାଇଁ ଏଠାରେ କିଛି ନା କିଛି ରହିଥାଏ । ଓଡ଼ିଶାର କୋଣ ଅନୁକୋଣରେ ବ୍ୟବସାୟୀମାନେ ବାଲିଯାତ୍ରାରେ ପସରା ମେଲାଇ ଦିଅନ୍ତି । ଗାଁ ଗଣ୍ଡାରେ ଉପଲବ୍ଧ ହେଉଥିବା ଛୋଟ ବଡ଼ ସାମଗ୍ରୀ, ହସ୍ତଶିଳ୍ପ ଏବଂ ଶସ୍ୟ ବାଲିଯାତ୍ରାରେ ବିକ୍ରି ହୁଏ । ଏଠାରେ ବିରି, ମୁଗ, ଚାଉଳ, ଲାଉ, ପାଣି କଖାରୁ ଠାରୁ ଆରମ୍ଭ କରି ବଡ଼ି, ଆଚାର, ହଳଦୀ, ଅଦା, ଚକି, ଶିଳ, କୁଲା, ବାଇଁସିଆ, ଟୋକେଇ, ପାଚିଆ, ମାଛ, ସୁଖୁଆ, ଝାଡୁ, କାଇଁଚ ପାଚିଆ, କାଠ କଣ୍ଢେଇ ସବୁ କିଛି ମିଳେ । ଏହି ସବୁ ଜିନିଷ କିଣି ନେବାପାଇଁ ଲୋକମାନଙ୍କ ମଧ୍ୟରେ ବିଶେଷ ଆଗ୍ରହ ପରିଲକ୍ଷିତ ହୋଇଥାଏ । ବିଗତ କିଛି ବର୍ଷ ଧରି ବାଲିଯାତ୍ରାର ଖାଦ୍ୟ ବଜାର ମଧ୍ୟ ବେଶ ଜମୁଛି । ଏକଦା ପାରମ୍ପରିକ ଖାଦ୍ୟ ଭାବେ ବାଲିଯାତ୍ରାରେ ଦହିବରା, ଠୁଙ୍କାପୁରି, ବରା-ତରକାରୀ, କାକରା, କରଞ୍ଜି ପ୍ରଭୃତି ଉପଲବ୍ଧ ହେଉଥିବା ବେଳେ ଆଜି ଓଡ଼ିଶା



ସାରାର ଖାଦ୍ୟ ପସରା ବାଲିଯାତ୍ରାରେ ଗ୍ରାହକଙ୍କ ପାଇଁ ପହଁଚି ଯାଉଛି । ଢେଙ୍କାନାଳ ବରା, କେନ୍ଦ୍ରପଡ଼ା ରସାବଳୀ, ବାରିପଦା ମୁଢ଼ିମାଂସ, ନିମାପଡ଼ା ଛେନାଝିଲି ମଧ୍ୟ ଏହି ଖାଦ୍ୟ ତାଲିକାରେ ସାମିଲ ହୋଇଛନ୍ତି । କେବଳ ଏଇ ହାତଗଣତି ଖାଦ୍ୟ କେତେକ ଭିତରେ ବାଲିଯାତ୍ରାର ଖାଦ୍ୟମେଳା ସୀମିତ ହୋଇଯାଇନାହିଁ । ଏବେ ସାରା ବିଶ୍ୱର ଭିଳିକି ଭଳି ପାଟିସୁଆଦିଆ ଖାଦ୍ୟ ବାଲିଯାତ୍ରାରେ ଉପଲବ୍ଧ ହେଉଛି । ସେହିପରି କେବଳ ଓଡ଼ିଶାର ହସ୍ତଶିଳ୍ପ ନୁହେଁ ବରଂ ଭାରତର ବିଭିନ୍ନ ରାଜ୍ୟର ଶିଳ୍ପୀମାନଙ୍କ ଦ୍ୱାରା ପ୍ରସ୍ତୁତ ଜିନିଷ ବାଲିଯାତ୍ରାର ଶୋଭାବର୍ଦ୍ଧନ କରୁଛି । ଖାଦ୍ୟ ସାମଗ୍ରୀ, ଘରକରଣା ଜିନିଷ, ସୌଖିନ ବସ୍ତୁ ଏବଂ ଅତ୍ୟାବଶ୍ୟକ ଜିନିଷ ପାଇଁ ଆଜି ପ୍ରସିଦ୍ଧି ଲାଭ କରିଛି ବାଲିଯାତ୍ରା । ଅନ୍ୟ ପକ୍ଷରେ ଏହି ବାଣିଜ୍ୟ ମେଳା ଆଜି କଳା ସଂସ୍କୃତିର ପୃଷ୍ଠପୋଷକ ସାଜିଛି । ନଦୀକୂଳରେ ଗଢ଼ି ଉଠିଥିବା ଗଣକବି ବୈଷ୍ଣବ ପାଣି ମଂଚରେ ଗତ ଦଶନ୍ଧି ଧରି କଳା ଏବଂ କଳାକାରମାନଙ୍କ ମହାମିଳନ ଓଡ଼ିଶାର ସାଂସ୍କୃତିକ ଭଣ୍ଡାରକୁ ଆହୁରି ସମୃଦ୍ଧ କରିଛି । ଏହି ମଂଚରେ ସପ୍ତାହବ୍ୟାପୀ ଓଡ଼ିଶାର ପାରମ୍ପରିକ ଲୋକକଳା, ଲୋକନୃତ୍ୟ, ସଂଗୀତର ଆସର ଜମୁଛି । ଓଡ଼ିଶୀ, ଚମ୍ପୁ, ପାଲା, ଦାଶକାଠିଆ, ଘୋଡ଼ାନାଚ, କେନ୍ଦରା, ଛଉ, ସମ୍ବଲପୁରୀ ନୃତ୍ୟ ସଂଗୀତ, ନାଟକ, ସୁଆଙ୍ଗ, ଧୁଡୁକିନାଚ, କଣ୍ଢେଇନାଚ, ଗୋଟିପୁଅ ନୃତ୍ୟ ଖମ୍ବନୃତ୍ୟ, ମୋଗଲତାମସା, କଥକ, ଭାଙ୍ଗଡ଼ା, ବିହୁ ନୃତ୍ୟ ପ୍ରଭୃତି ବାଲିଯାତ୍ରାର ଆକର୍ଷଣ ପାଲଟିଛି । ଏହା ବ୍ୟତୀତ ଦେଶର ବିଭିନ୍ନ ରାଜ୍ୟ ତଥା ବିଦେଶୀ କଳାକାରମାନେ ମଧ୍ୟ ଏହି ମଂଚରେ ନିଜିନିଜ କଳା ପ୍ରଦର୍ଶନ କରି ପ୍ରଶଂସିତ ହୋଇଛନ୍ତି । ଦୈନିକ ପ୍ରାୟ ୫ରୁ ୬ ଲକ୍ଷ ଯାତ୍ରୀଙ୍କ ସମାଗମ ହେଉଥିବା ବାଲିଯାତ୍ରା ଆଜି ବିଶ୍ୱବଜାରର ଦୃଷ୍ଟିଆକର୍ଷଣ କରିପାରିଛି । କଟକ ବାଲିଯାତ୍ରାରେ ନିଜ ସାମଗ୍ରୀକୁ ବିଜ୍ଞାପିତ କରିବା ଏବଂ ବିକ୍ରି କରିବାର ଆଗ୍ରହ ବହୁଦେଶୀୟ କମ୍ପାନୀଗୁଡ଼ିକ ମଧ୍ୟରେ ବୃଦ୍ଧି ପାଇବା ସହ ଏଥିପାଇଁ ପ୍ରତିଯୋଗିତା ମଧ୍ୟ ଆରମ୍ଭ ହୋଇଯାଇଛି । ଫଳରେ ନିଜ ନିଜ ଉତ୍ପାଦ ଧରି ଏକାଧିକ କମ୍ପାନୀ ବାଲିଯାତ୍ରାରେ ପ୍ରତିବର୍ଷ ପହଁଚି ଯାଉଛନ୍ତି । ରାଜ୍ୟ ତତା ଦେଶ ବିଦେଶର ବ୍ୟବସାୟୀ ଏବଂ ବ୍ୟବସାୟୀକ ସଂସ୍ଥାଗୁଡ଼ିକୁ ବାଲିଯାତ୍ରାରେ ପ୍ରତିବର୍ଷ ପହଁଚି ଯାଉଛନ୍ତି । ରାଜ୍ୟ ତଥା ଦେଶ ବିଦେଶର ବ୍ୟବସାୟୀ ଏବଂ ବ୍ୟବସାୟୀକ ସଂସ୍ଥାଗୁଡ଼ିକୁ ବାଲିଯାତ୍ରାରେ ଉପଯୁକ୍ତ ସ୍ଥାନ ଏବଂ ସୁବିଧା ସୁଯୋଗ ପ୍ରଦାନ କରିବାରେ ଜିଲ୍ଲା ପ୍ରଶାସନର ଭୂମିକା ପ୍ରଶଂସନୀୟ । ଭଳିକି ଭଳି ହସ୍ତଶୀଳ୍ପ, ଦେଶ ବିଦେଶର ଖାଦ୍ୟ ପସରା, ବହୁଦେଶୀୟ ତଥା କର୍ପୋରେଟ କମ୍ପାନୀମାନଙ୍କ ଉପସ୍ଥିତି, ଦେଶ ତଥା ବିଦେଶୀ କଳାକାରମାନଙ୍କ ଦ୍ୱାରା ନୃତ୍ୟ, ସଂଗୀତ ପରିବେଷଣ ଏବଂ ବିଦେଶୀ ପର୍ଯ୍ୟଟକଙ୍କ ଆଗମନ ବାଲିଯାତ୍ରାକୁ ଏକ 'ବିଶ୍ୱ ଉତ୍ସବ'ରେ ପରିଣତ କରିଛି । ପ୍ରାଚୀନ କଳିଙ୍ଗ ଭୂମିରେ ଆରମ୍ଭ ହୋଇଥିବା ଏହି ବାଣିଜ୍ୟ ମେଳା ମହାନଦୀ ପଠା ଅତିକ୍ରମ କରି ଦେଶ ବିଦେଶରେ ନିଜର କାୟା ବିସ୍ତାର କରିବା ପ୍ରତ୍ୟେକ ଓଡ଼ିଆଙ୍କ ପାଇଁ ଏକ ଗର୍ବ ଓ ଗୌରବର ବିଷୟ ।

ପାଣ୍ଡିରି (ମହାନ୍ତିପଡ଼ା), କେନ୍ଦ୍ରାପଡ଼ା

ଦୂରଭାଷ: ୯୯୩୭୭୨୨୨୬୧

୦୦





# ଯୋବ୍ରା ଜାହାଜ ମରାମତି କାରଖାନାର ଇତିହାସ

❖ ପୂର୍ଣ୍ଣଚନ୍ଦ୍ର ଦାସ

୧୮୦୩ ମସିହାରେ ଇଂରେଜମାନେ କଟକ ଦଖଲ କଲେ ଏବଂ ୧୮୧୬ ମସିହାରେ ଏହାକୁ ଓଡ଼ିଶା ଡିଭିଜନର ରାଜଧାନୀ ଘୋଷଣା କରାଗଲା । ଓଡ଼ିଶା ଅନେକ ଦିନଧରି ବଙ୍ଗ ବିହାର ଏବଂ ୧୯୧୧ ମସିହାରେ ବିହାର ସହିତ ୧୯୩୬ ମସିହା ପର୍ଯ୍ୟନ୍ତ ଏକତ୍ର ଶାସିତ ହେଉଥିଲା । ବ୍ରିଟିଶ ଶାସନ ସମୟରେ ଓଡ଼ିଶାରେ ଦୁର୍ଭିକ୍ଷ ପଡିଥିଲା । କିନ୍ତୁ ୧୮୬୬ ମସିହାରୁ ଦୁର୍ଭିକ୍ଷ ଓଡ଼ିଶାର ମେରୁ ଦଣ୍ଡକୁ ହଲାଇ ଦେଇଥିଲା । ଏଥିରେ ଓଡ଼ିଶାର ବହୁ ଲୋକଙ୍କର ଅକାଳ ବିୟୋଗ ହେବା ସଙ୍ଗେ ସଙ୍ଗେ କେବଳ ପୁରୀ ଜିଲ୍ଲାରୁ ଶତକଡା ଚାଳିଶଭାଗ ଲୋକ ଅନାହାରରେ ମୃତ୍ୟୁବରଣ କରିଥିଲେ । ଏହି ଦୁର୍ବିପାକ ଦୈବୀକୃତ ଥିଲା ତାଠାରୁ ଅଧିକ ମନୁଷ୍ୟକୃତ ଥିଲା ବୋଲି ଏହି ଦୁର୍ଭିକ୍ଷର କାରଣ ଅନୁସନ୍ଧାନ ପାଇଁ ନିଯୁକ୍ତ କମିଟି ତାଙ୍କ ରିପୋର୍ଟରେ ଦର୍ଶାଇଥିଲେ । ଏହି ଦୁର୍ଭିକ୍ଷ ଯୋଗୁ ହାରାହାରି ଦଶଲକ୍ଷ ଲୋକ ପ୍ରାଣ ହରାଇଥିଲେ ବୋଲି ଏକ ଆକଳନରୁ ଜଣାପଡେ ।

ଦୁର୍ଭିକ୍ଷର କାରଣ ଥିଲା । ଜଳାଭାବ, ମରୁଡି ଏବଂ ବନ୍ୟା ଜନ୍ ବିମ୍ସଙ୍କ ହସ୍ତକ୍ଷେପ ଫଳରେ କେତେକ ପ୍ରତିଶେଧକ ଏବଂ ପ୍ରଗତିମୂଳକ କାର୍ଯ୍ୟାନୁଷ୍ଠାନ ହାତକୁ ନିଆଗଲା । ଯଥାର୍ଥରେ କହିବାକୁ ଗଲେ ନ'ଅଙ୍କ ଦୁର୍ଭିକ୍ଷ ପରେ ଓଡ଼ିଆ ମାନଙ୍କର ଦାବିର ଯଥାର୍ଥତା ଅନୁଭବ କରି ଓଡ଼ିଶାର ଅର୍ଥନୈତିକ ବିକାଶ ନିମନ୍ତେ ରେଳରାସ୍ତା, ଜଳସେଚନ ଶିକ୍ଷାର ପ୍ରସାରଦିଗରେ ଉଦ୍ୟମ କରାଯାଇଥିଲା ।

କେବଳ ୧୮୩୦ ମସିହାଠାରୁ ୧୯୨୭ ମସିହା ମଧ୍ୟରେ କଟକରେ ୨୮ ଥର ବନ୍ୟା ହୋଇଥିଲା । ୧୮୫୮ ମସିହାରେ ମହାନଦୀରେ ଯେଉଁ ଭୟଙ୍କର ବନ୍ୟା କଟକ ସହରକୁ ଭୟଭୀତ କରିଥିଲା ତାହା ତତ୍କାଳୀନ ଇଂରେଜ ଇଞ୍ଜିନିୟର କର୍ଣ୍ଣେଲ ଅର୍ଥର କଟନ୍ ଯିଏକି ଗୋଦାବରୀ ନଦୀବନ୍ଧ ଯୋଜନା ପ୍ରସ୍ତୁତ କରିଲେ । ସେ କଟକକୁ ବନ୍ୟାଦାଉରୁ ରକ୍ଷା କରିବା ନିଜ କର୍ତ୍ତବ୍ୟ ବୋଲି ମନେକରି କଟକର ପହଞ୍ଚିଥିଲେ । ମହାନଦୀ ଅବବାହିକାକୁ ଅନୁଧ୍ୟାନ କଲାପରେ ସେ ମହାନଦୀ ଉପରେ ଯୋବ୍ରାଠାରେ ଏକ ନଦୀବନ୍ଧ ଯୋଜନା ପ୍ରସ୍ତୁତିକରି ବନ୍ୟାନିୟନ୍ତ୍ରଣ, ଜଳସେଚନ ଓ ଜଳପଥରେ ଗମନାଗମନ ଏବଂ ବାଣିଜ୍ୟ କାରବାରରେ ଏହି ତିନୋଟି ଉଦ୍ଦେଶ୍ୟ ସାଧନପାଇଁ ସେ ପ୍ରସ୍ତାବ ଦେଇଥିଲେ ।

୧୮୬୦ ମସିହାରେ ଇଷ୍ଟଇଣ୍ଡିଆ ଇରିଗେସନ ଆଣ୍ଡ କେନାଲ କମ୍ପାନୀ ସ୍ଥାପିତ ହୋଇଥିଲା । ମହାନଦୀରୁ ତିନୋଟି କେନାଲ ଖୋଳିବା ପାଇଁ ପ୍ରସ୍ତାବ ପାରିତ ହେଲାପରେ ମହାନଦୀର ଯୋବ୍ରା ଅଞ୍ଚଳ ଏଥିରୁ ଅନୁମିତ ହୁଏ ଯୋବ୍ରାହିଁ ଆନିକଟ ନିର୍ମାଣ ଏବଂ ତାଳଦଣ୍ଡା କେନାଲ ଖୋଳାହେବା ପୂର୍ବରୁ ଏ ଅଞ୍ଚଳ ମହାନଦୀ ଜଳ ପ୍ରବାହରେ ସନ୍ତସନ୍ତିଆ ଥିଲା । ଯାହାଫଳରେ ଯୋବ୍ରାଠାରେ ମହାନଦୀ ଉପରେ ୬୩୪୯ ଫୁଟ ଦୀର୍ଘ ଆନିକଟ ନିର୍ମାଣ ସଙ୍ଗେସଙ୍ଗେ ସେହିଠାରୁ ନଦୀବନ୍ଧ ଖନନ କାର୍ଯ୍ୟ ଆରମ୍ଭ ହୋଇ ତାଳଦଣ୍ଡା ଓ ମାଛଗାଁ ଉପକେନାଲରେ ଜଳଯୋଗାଣ ସଙ୍ଗେ ସଙ୍ଗେ ଏପଟେ ବିରୁପା ନଦୀ ପାଖରୁ ପଟ୍ଟାମୁଣ୍ଡାଇ ଓ କେନ୍ଦ୍ରାପଡା କେନାଲ କାର୍ଯ୍ୟକାରୀ ହେଲା । ୧୮୬୪ ମସିହାଠାରୁ ୧୮୭୦ ମସିହା ମଧ୍ୟରେ ମହାନଦୀ, କାଠଯୋଡି, ବିରୁପା, ବ୍ରାହ୍ମଣୀ, ବୈତରଣୀ ନଦୀ ମାନଙ୍କଠାରେ ଯେଉଁସବୁ ଆନିକଟ ନିର୍ମାଣ କରାଯାଇଥିଲା । ସେଥିରେ ବଡ ବଡ ଯନ୍ତ୍ରପାତି, କଳକବ୍ଜା ଆବଶ୍ୟକ ହେବାରୁ ସବୁ ଯନ୍ତ୍ରପାତି ଇଂଲଣ୍ଡରୁ ଅଣାଇବା ସମ୍ଭବ ହେଲା ନାହିଁ ତତ୍କାଳୀନ ସମୟର ଅବସ୍ଥା କେନାଲ ଓ ଭୋକିଲା ଲୋକଙ୍କୁ କାର୍ଯ୍ୟ ଯୋଗାଇବା ଓ ଖାଦ୍ୟସମସ୍ୟାର ସମାଧାନ ପାଇଁ ୧୮୬୯ ମସିହାରେ ଜନ୍‌ବିମ୍ସ କଟକରୁ ବିଦାୟ ନେବା ପୂର୍ବରୁ ୧୮୬୩ ମସିହା ଜାନୁୟାରୀ ୧ ତାରିଖ ଦିନ ଯୋବ୍ରା ମରାମତି କାରଖାନାର ଭିତ୍ତି ପ୍ରସ୍ତର ସମାପନ କରାଯାଇଥିଲା ।

ସ୍କଟଲ୍ୟାଣ୍ଡର ଜନ୍ମିତ ଯନ୍ତ୍ରୀ ଜର୍ଜ ଫକନର ଏହି କାରଖାନାର ମୁଖ୍ୟ ପରିଚାଳକ ଭାବରେ ଏହାର ଦାୟିତ୍ୱ ଗ୍ରହଣ କରିଥିଲେ । ସେ ଇଂଲଣ୍ଡରେ ଏତେ ଜଣାଶୁଣା ନଥିଲେ ।





କିନ୍ତୁ ଭାରତ ତାଙ୍କର ଦ୍ୱିତୀୟ ମାତୃଭୂମି ପ୍ରାୟଥିଲା । ସେ ଦେଖିବାକୁ ଡେଙ୍ଗା, ହୃଷ୍ଟପୁଷ୍ଟ ମଣିଷ ଥିଲେ । ସେ କୁଶଳୀ ଶିଳ୍ପୀ, ଏକାଧାରରେ ଚିତ୍ରକର, ସ୍ଥପତି, ଲୁହା କାରିଗର ଏବଂ ବୃହତ୍ ପ୍ରାସାଦ, ନଦୀବନ୍ଧ, କେନାଲ ଜଳଯାନ ଆଦି ଅତି ନିଖୁଣ ଭାବରେ ତିଆରି କରିବାର କୌଶଳ ଶିକ୍ଷା କରିଥିଲେ ।

ପ୍ରଥମ ଅବସ୍ଥାରେ ଏହି କାରଖାନା ଲୁହାତରଳାଇବା, ଝଳେଇ ସହିତ କେନାଲରେ ବ୍ୟବହୃତ ସରଞ୍ଜାମ, ବୋଟ୍, ଷ୍ଟିମର୍ ଆଦି ଜଳମାନ ଯନ୍ତ୍ରାଂଶ ମରାମତି ଜଳସେଚନ ଉପକରଣ ନିର୍ମାଣ, ତାର ଯନ୍ତ୍ରାଂଶର ମରାମତି ନଦୀ ଓ କେନାଲରେ ବ୍ୟବହୃତ ହେଉଥିବା ଆନିକଟ କବାଟ ପ୍ରସ୍ତୁତି ତିଆରି ଓ ମରାମତି ନିମନ୍ତେ ଉଦ୍ଦିଷ୍ଟ । ପ୍ରଖ୍ୟାତ ଇଂରେଜ ପ୍ରଶାଶକ ଜନ୍ ବିମ୍ସଙ୍କ ପ୍ରତ୍ୟକ୍ଷଦର୍ଶୀ ବିବରଣୀରୁ ଜଣାଯାଏ ଏହି ଯୋବ୍ରା କାରଖାନାର ମୁଖ୍ୟଯନ୍ତ୍ରୀ ଜର୍ଜ ଫକ୍‌ନରଙ୍କ ତତ୍ତ୍ୱାବଧାନରେ ଛୋଟ ନୌକାଠାରୁ ବଡ ବୋଇତ, ଛୋଟ ନଟ୍‌ବୋଲଟ୍ ଠାରୁ ଆରମ୍ଭ କରି ବଡ ବଡ ଯନ୍ତ୍ରାଶଂର ବିଭିନ୍ନ ଉପକରଣ ମାନ ଉତ୍ପାଦନ ତଥା ମରାମତି କରାଯାଉଥିଲା । ବ୍ରିଟିଶ ରାଜତ୍ୱ କାଳରେ ବଙ୍ଗଳା ପ୍ରଦେଶ ଅନ୍ତର୍ଗତ ବଙ୍ଗଳା, ବିହାର, ଓଡ଼ିଶା ଅଞ୍ଚଳ ପାଇଁ ଏହା କାର୍ଯ୍ୟ କରୁଥିଲା ।

ଦେଶର ସ୍ୱାଧୀନତା କାଳରେ ଓଡ଼ିଶାର ବିକାଶରେ ସାଜିଥିବା ପାରାଦ୍ୱୀପ ବନ୍ଦର ନିର୍ମାଣର ପ୍ରାଥମିକ ଅବସ୍ଥାରେ କାର୍ଯ୍ୟ କରୁଥିବା ଷ୍ଟିମର ପୁଷ୍ପା, କୀରଟ୍, ଅମ୍ବୁଜ ଏବଂ ଲୁହାକାର୍ଜ, ହଂସରାଜ, ମେଘରାଜ, ଗଜରାଜ, ପ୍ରଭୃତି ଚଉମୁହାଣି ଲକ୍‌ଠାରୁ ମହାନଦୀ ମୁହାଣ ଦେଇ ସମୁଦ୍ରକୁ ବଡ ଜାହାଜରୁ ଲୁହାପଥର ବୋହୁଥିବା ଜଳଜାନ ଗୁଡିକର ମରାମତିକାର୍ଯ୍ୟ ଏବଂ ରାଜ୍ୟ ସରକାରଙ୍କର ପାଓନିୟାର, ପାୱାର ଫେରି, ରାଜଲକ୍ଷ୍ମୀ, ବ୍ରାହ୍ମଣୀ, ଡାମ୍ପଣୀ, ସରଳୁ, ମେରି ପ୍ରଭୃତି ମୋଟର ଲଞ୍ଚ ଗୁଡିଆର ମରାମତି ରକ୍ଷଣାବେକ୍ଷଣ ସହ ଓଡ଼ିଶା ସରକାରଙ୍କର ଜିପ୍, କାର ବସ, ଟ୍ରକ ମରାମତି କରୁଥିବାରୁ ଯୋବ୍ରା କାରଖାନକୁ ଏସିଆର ସର୍ବବୃହତ୍ କାରଖାନାର ମାନ୍ୟତା ମିଳିଥିଲା ।

୧୯୫୫ ମସିହାରେ ଏହି ମରାମତି କାରଖାନଟି ମହାନଦୀ ଦକ୍ଷିଣ ନିର୍ବାହୀ ଯନ୍ତ୍ରୀଙ୍କ କାର୍ଯ୍ୟାଳୟରୁ ପୃଥକ ହୋଇ ରାସ୍ତା ଓ ଗୃହନିର୍ମାଣ ନିର୍ବାହୀ ଯନ୍ତ୍ରୀଙ୍କ ଅଧିନରେ ଥିଲା । ୧୯୬୫ ମସିହାରେ ଏହା ଓଡ଼ିଶା ସରକାରଙ୍କୁ ମେକାନିକାଲ ଡିଭିଜନରେ ପରିଣତ ହୋଇ ପ୍ରାୟ ୨୦୦ ରୁ ଉର୍ଦ୍ଧ୍ୱ କର୍ମଚାରୀ ଏଠାରେ କାର୍ଯ୍ୟ କରୁଥିଲେ । ଆମ ରାଜ୍ୟର ସମସ୍ତ ବୃହତ୍ ନଦୀବନ୍ଧ ଯୋଜନାରେ କାର୍ଯ୍ୟକାରୀ ଏହି ଯୋବ୍ରା ମରାମତି କାରଖାନା ରାଜ୍ୟର ନୌଚଳାଚଳ ଓ ଜଳସେଚନ ପ୍ରଗତିରେ ଉଲ୍ଲେଖନୀୟ ଅବଦାନ ସୃଷ୍ଟି କରିଥିଲେ ।

କଟକରୁ କ୍ରମଶଃ ସ୍ଥଳପଥରେ ଗମନାଗମନରେ ବିକାଶ, ରାସ୍ତାଘାଟ ନିର୍ମାଣ ୧୯୬୦ ମସିହା ସୁଦ୍ଧା କାଠଯୋଡି ଓ ମହାନଦୀ ଉପରେ ସେତୁ ନିର୍ମାଣ ପରେ କଟକରୁ ଯିବା ଆସିବାରେ ଆଉ କୌଣସି ଅସୁବିଧା ନଥିଲା । କଟକରୁ ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ଗାଡିମଟର ଚାଲିବା ଯୋଗୁ ଜଳମାର୍ଗ ଦେଇ କଟକକୁ ଆସିବା ଆସ୍ତେଆସ୍ତେ କମିଯାଇଥିଲା । ଯାହାଫଳରେ ୧୯୮୦ ମସିହା ସୁଦ୍ଧା ମହାନଦୀର ଲଞ୍ଚଘାଟ ଗୁଡିକରେ ହାତଗଣତି କେତୋଟି ଜଳମାନ ଯାତାୟତ କରୁଥିଲା । ସେହି ସମୟରେ ମହାନଦୀରେ ୧୯୮୨ ମସିହାରେ ଏକ ନୌକା ଦୁର୍ଘଟଣା ଘଟି ବହୁତ ଲୋକ ମୃତ୍ୟୁ ବରଣ କରିଥିଲେ । ଏହି ଘଟଣାର ସରକାର ମ୍ରିୟମାଣ ହୋଇ ମହାନଦୀରେ ନୌଚଳାଚଳକୁ ସଂମ୍ପୂର୍ଣ୍ଣ ରୂପେ ନିଶିଦ୍ଧ ଘୋଷଣା କଲାପରେ ମହାନଦୀରେ ନୌଚଳାଚଳ ଏବଂ ଘାଟ ମାନଙ୍କ ଅସ୍ତିତ୍ୱ ଆସ୍ତେ ଆସ୍ତେ ଲୋପପାଇ କ୍ରମଶଃ ନିଶ୍ଚିହ୍ନ ହୋଇଗଲା । ଜଳଯାନ ଗୁଡିକ ନିର୍ମାଣ ଓ ମରାମତି ନହେବାରୁ ବିଜ୍ଞାନ ପ୍ରଯୁକ୍ତି ବିଦ୍ୟାର ବିକାଶ, ନୂତନ ଯନ୍ତ୍ରପାତି ଜ୍ଞାନକୌଶଳର ସୁବିଧା ଜନକ ବ୍ୟବହାର, ସ୍ୱଳ୍ପ ସମୟ ଅବଧି ମଧ୍ୟରେ ଅଧିକ ଯନ୍ତ୍ରାଶଂ ଉତ୍ପାଦନ ପ୍ରକ୍ରିୟା ସହିତ ସମତାଳରେ ଗତିକରି ନପାରି ଯୋବ୍ରା ମରାମତି କାରଖାନା ୧୯୮୦ ମସିହା ସୁଦ୍ଧା ସମ୍ପୁର୍ଣ୍ଣ ରୂପେ ବନ୍ଦ୍ ହୋଇଗଲା । ଦୀର୍ଘ ତିନି ଦଶନ୍ଧି ଧରି ଭଗ୍ନ ପଡିରହିଥିବା ଏହାର ଭଗ୍ନାବଶେଷ ସୌଧମାଳାକୁ ସଂରକ୍ଷଣ କରାଯାଇ ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକଙ୍କ କରକମଳରେ ମେ ୧୮ ତାରିଖ ୨୦୦୭ ମସିହାରେ ଓଡ଼ିଶା ରାଜ୍ୟ ନୌବାଣିଜ୍ୟ ସଂଗ୍ରହାଳୟର ସ୍ଥାପନ ହୋଇଥିଲା । ଏହାର ଠିକ୍ ଛଅ ବର୍ଷପରେ ଉତ୍କଳ ଦିବସ ୨୦୧୩ ଏପ୍ରିଲ୍ ୧ ତାରିଖ ଦିନ ମାନ୍ୟବର ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ 'ଓଡ଼ିଶା ରାଜ୍ୟ ନୌ ବାଣିଜ୍ୟ ସଂଗ୍ରହାଳୟକୁ ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗ କରିଥିଲେ ।

ଆମର ପୂର୍ବପୁରୁଷ ମାନେ ଖ୍ରୀଷ୍ଟପୂର୍ବ ୮୦୦ ରୁ ୧୪୭୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଯେଉଁ ସାମୁଦ୍ରିକ ବାଣିଜ୍ୟର ଗୌରବ ଅର୍ଜନ କରିଥିଲେ, ସେହି ସମ୍ଭ୍ରାନ୍ତ ସାମୁଦ୍ରିକ ନୌବାଣିଜ୍ୟର ଇତିହାସ ଓ ସଂସ୍କୃତିକୁ ଲୋକଲୋଚନକୁ ଆଣି ଏହାର ପ୍ରଚାର ପ୍ରସାର କରିବାରେ ଏହି ଅନୁଷ୍ଠାନଟି ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି ।

ଦୂରଭାଷ: ୯୦୯୦୭୨୪୮୦୯

OO





# କଟକର କିଛି କଥା କିଛି ଗାଥା

❖ ଡ. ବସନ୍ତ କୁମାରୀ ନନ୍ଦ

ଧର୍ମଭୂମି ଭାରତ ବର୍ଷ ଭଗବାନ ରାମଚନ୍ଦ୍ର, ଶ୍ରୀକୃଷ୍ଣ, ଗୌତମବୁଦ୍ଧ, ମହାତ୍ମାଗାନ୍ଧୀ, ଗୋପବନ୍ଧୁ ଦାସ, କର୍ମବୀର ଗୌରୀଶଙ୍କର ପ୍ରଭୃତି ମହାପୁରୁଷଙ୍କ ଦର୍ଶନ, ଅହିଂସା, ସତ୍ୟ-ଶାନ୍ତି ଦୟା-କ୍ଷମା ପ୍ରଭୃତି ମହନୀୟ ଗୁଣ-ରୂପ-ବାସ୍ନାରେ ସୁବାସିତ । ଆର୍ଯ୍ୟ ଋଷି ଜନକ, ବଶିଷ୍ଠ, ନାନକ, ଚୈତନ୍ୟ ପ୍ରଭୃତି ଦେବପୁରୁଷ ଏହି ଭୂମିକୁ ପବିତ୍ର ରଚି ସମ୍ପନ୍ନ ଓ ସଂସ୍କୃତି ସମ୍ପନ୍ନ କରିଯାଇଛନ୍ତି । ସେହି ଦେବଭୂମିର ଏକ ପ୍ରଦେଶ ଉତ୍କଳ ବା ଓଡ଼ିଶା ସ୍ୱକୀୟ ଗୁଣରେ ମହନୀୟ । ସେହି ପୁଣ୍ୟ ଭୂମି ଉତ୍କଳର ଏକ ପୁରାତନ ଐତିହ୍ୟ ଓ ସଂସ୍କୃତିର ଗନ୍ତାଘର ଏହି କଟକ ନଗର । ଏଠାରେ ପଠିତ ଗୀତା, ଭାଗବତ, ରାମାୟଣ, ମହାଭାରତଠୁ ଆରମ୍ଭ କରି ନଦନଦୀ, ବନପାହାଡ଼, ଶିକ୍ଷା, କାରୁକାର୍ଯ୍ୟ ସବୁ ହିଁ ସଂସ୍କୃତିର ସ୍ୱାକ୍ଷର ବହନ କରେ । ସେ ବାରବାଟୀ ଦୁର୍ଗ ହୋଇପାରେ କିମ୍ବା ମନଲୋଭା ତାରକସୀ ଶିଳ୍ପ ଚାତୁରୀ ହୋଇପାରେ ସବୁଠୁ ଫୁଟି ଉଠିଛି ଏକ ମହନୀୟ ସଂସ୍କୃତିର ତାରାଫୁଲ । ଏହାର ରୁପାରେ ଦୁଦୁରା, ସୁନାର ହରିଣୀ ସବୁଠି ସଂସ୍କୃତିର କୁଟକମ ଲାଖି ରହିଥାଏ ।

ଅସଂଖ୍ୟ ପର୍ବପର୍ବାଣୀ ଯାନିଯାତ୍ରା, ମହୋତ୍ସବ, ପୂଜାପାର୍ବଣ କ'ଣ ନାହିଁ କଟକରେ । ଅନେକ ମନ୍ଦିର, ସ୍ମୃତି, ଇତିହାସ, ଦେବଦେବୀଙ୍କୁ ନେଇ ଇତିହାସର ସ୍ୱାକ୍ଷର ବହନ କରେ କଟକ ।

କଟକ ନଗର, ଧବଳ ଟଗର କଥା ବି ସତ୍ୟ ଅଟେ । କ'ଣ ନାହିଁ ମୋ ଧର୍ମ ଭୂମି କଟକରେ । ଯେପରି "ଉତ୍କଳସ୍ୟ ସମୋଦେଶ ନାସ୍ତିକୁତ୍ର ମହୀତଳେ" । ସେହିପରି ସଂସ୍କୃତି ସଂପନ୍ନ କଟକ ନଗର ଅନେକ ଅଲିଭା ସ୍ମୃତି-ସଂସ୍କୃତିର ସାଗର ।

ସର୍ବଶ୍ରେଷ୍ଠ ଏହି କଟକ ସହରକୁ କେହି କେହି ବାରଣାସୀ କଟକ ମଧ୍ୟ କହିଥାନ୍ତି । କଟକ ଶବ୍ଦର ଅର୍ଥ ଶିବିର ବା ରାଜଧାନୀ ବା ନଗର । ମାଦଳାପାଞ୍ଜି ଅନୁସାରେ ରାଜା ମର୍କତକେଶରୀ ଏହି ନଗର ଚତୁଃପାର୍ଶ୍ୱରେ ପଥର ବନ୍ଧ ନିର୍ମାଣ କରିଥିଲେ । ବାଇମୁଣ୍ଡି ନାମକ ବ୍ୟକ୍ତି ରାଜାଙ୍କୁ ବନ୍ୟାରୁ କଟକକୁ ରକ୍ଷା ଲାଗି ଏହି ପ୍ରସ୍ତାବ ଦେଇ ଅନୁରୋଧ କରିଥିଲେ । ୧୮୮୨ ଖ୍ରୀଷ୍ଟାବ୍ଦରେ ଆଣ୍ଡୃଷ୍ଟାଲିଙ୍ଗ କଟକର ଇତିହାସ ଲେଖିବାର ପ୍ରଥମ ପ୍ରୟାସ କରିଥିଲେ । କବି କାଳିଦାସ ମଧ୍ୟ ମୁଦ୍ରାରାକ୍ଷସ ବହିରେ କଟକ ଶବ୍ଦର ବ୍ୟବହାର କରିଛନ୍ତି ।

କଟକ ସହରର ଶତାଧିକ ମେଢ଼ ଓ ମୂର୍ତ୍ତିରେ ପୂଜା ପାର୍ବଣ ଅନୁଯାୟୀ ତାରକସୀ କାର୍ଯ୍ୟର ଝଲକ ଆଖି ଝଲସାଇ ଦିଏ । କେଉଁଥିରେ ପଶୁପକ୍ଷୀ, ରାକ୍ଷସ, ଦେବଦେବୀ, ବୀଣା, ମୁକୁଟ, ଝାଲର, ବିରାଟ ବିରାଟ ତୋରଣ, ଶ୍ଳୋକ, ଗୀତ, ପୋଷାକ, ଚାନ୍ଦୁଆ, କଳସ, ଦେବଦେବୀଙ୍କ ବାହାନ ଇତ୍ୟାଦି ସବୁଠି ଝଲସି ଉଠେ ଉତ୍କଳୀୟ ପରମ୍ପରା ଓ ସଂସ୍କୃତିର ସ୍ୱଷ୍ଟ ଚିତ୍ର ତଥା ଝଲକ ।

ପୂଜ୍ୟପୂଜାହିଁ ଉତ୍କଳୀୟ ସଂସ୍କୃତି, ଶ୍ରାଦ୍ଧ, ଜନ୍ମଦିନଠାରୁ ଆରମ୍ଭ କରି ବିବାହ ବ୍ରତ, ସାଜସଜା, ଭୋଜିଭାତ ସବୁଠି ସଂସ୍କୃତିର ପରିଚୟ ମିଳେ । ଆଚରଣ ଉଚ୍ଚାରଣ ସବୁ କ୍ଷେତ୍ରରେ କଟକ ସଂସ୍କୃତିକୁ ଓ ଅତୀତର ସ୍ମୃତିକୁ ପାଥେୟ କରିଚାଲେ । ଏହାର ଘର ବାଡ଼ି ପାଣି ପବନ ସମସ୍ତେ ସଂସ୍କୃତିର ଆବାହନୀ ଗାନ କରନ୍ତି । ଆମର ନିତ୍ୟକର୍ମ, ଦେବପୂଜା, କର୍ମସ୍ଥାନ, କାର୍ଯ୍ୟଧାରା ସବୁ ହିଁ ଇତିହାସ, ପୁରାଣର ଗାଥା, ନୀତି ଆଦର୍ଶରେ ପରିପୂର୍ଣ୍ଣ । କିମ୍ବଦନ୍ତୀ ଅନୁସାରେ ଏହା ଏକ ପ୍ରାଚୀନ ସହର ଓ ଏହାର ବୟସ ୧୦୦୦ ବର୍ଷରୁ ଉର୍ଦ୍ଧ୍ୱ । କଟକ କାଠଯୋଡ଼ି ଓ ମହାନଦୀ ମଝିରେ ଅବସ୍ଥିତ ଏକ ତ୍ରିକୋଣଭୂମି ସମ ପ୍ରତୀୟ ମାନ ହୁଏ । ଭାଗବତ ଟୁଙ୍ଗୀ ଓ ପୁରାଣ ପାଠ ଦ୍ୱାରା ଏକ ମହନୀୟ ସଂସ୍କୃତିକୁ ବଞ୍ଚାଇ ରଖିଛି କଟକ ।

ଏଠାରେ ଅନେକ ପ୍ରାଚୀନ କୀର୍ତ୍ତି, ଦୁର୍ଗ, ଐତିହ୍ୟ ସମ୍ପନ୍ନ ଦେବଦେବୀ ମନ୍ଦିର, ମସ୍‌ଜିଦ୍ । କଦମ୍-ଇ-ରସୁଲ, ଓଡ଼ିଶାର ହାଇକୋର୍ଟ, ପ୍ରାଚୀନ ବିଦ୍ୟାଳୟ ରେଭେନ୍ସା କଲିଜିଏଟ୍ ସ୍କୁଲ, ରେଭେନ୍ସା କଲେଜ, ଯୋବ୍ରା ଆନିକଟ, ଯୋବ୍ରା ନୌବାଣିଜ୍ୟ





କେନ୍ଦ୍ର, ବାଲିଯାତ୍ରା ପଡ଼ିଆ, ଗଡ଼ଗଡ଼ିଆ ଘାଟ, ସ୍ୱାଧୀନତା ସଂଗ୍ରାମୀ ସୁଭାଷ ଚନ୍ଦ୍ର ବୋଷଙ୍କ ଜନ୍ମସ୍ଥାନ, ଉତ୍କଳ ଜନନୀଙ୍କର ବରପୁତ୍ର ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ କର୍ମପୀଠ, ଶୈଳବାଳା ମହିଳା କଲେଜ, ପ୍ରଭୃତି ଅନେକ ଐତିହ୍ୟ ସମ୍ପନ୍ନ କୀର୍ତ୍ତିରାଜୀ ବିରାଜିତ ।

ସୋମବଂଶର ରାଜା ମର୍କତ କେଶରୀ ମହାନଦୀ ଭିତରେ କରିଥିବା ବାରବାଟୀ ଦୁର୍ଗ ବା କିଲ୍ଲା, କଟକଚଣ୍ଡୀ ମନ୍ଦିର ସ୍ଥାପନ କଥା ମଧ ମାଦଳାପାଞ୍ଜିରେ ଉଲ୍ଲେଖ ଅଛି । ଏହା ଉତ୍କଳୀୟ ସଂସ୍କୃତି ବହନ କରେ ।

ଦ୍ୱିତୀୟ ଅନଙ୍ଗ ଭୀମଦେବ ବାରବାଟୀରେ ନବତଳ ପ୍ରାସାଦ ନିର୍ମାଣ କରି ଏହାରି ଖ୍ୟାତି ପ୍ରସାର କଲେ । ଏହା ସମଗ୍ର ଭାରତବର୍ଷରେ ପ୍ରସିଦ୍ଧ । ରାଜା ମୁକୁନ୍ଦ ଦେବଙ୍କ ମୃତ୍ୟୁପରେ ଏହି ଦୁର୍ଗକୁ ଆଫଗାନ ମୁସଲମାନ, ମୋଗଲ, ମରହଟ୍ଟା ଓ ଶେଷରେ ଇଂରେଜମାନେ ଅଧିକାର କଲେ । ବିଂଶ ଶତାବ୍ଦୀରେ ଏହି ଦୁର୍ଗ ଧରାଶାୟୀ ହୋଇ ଏକ ମୂକସାକ୍ଷୀ ରୂପେ ରହିଛି । ତା'ର ଚାରିପଟରେ ଗଡ଼ଖାଇ ସେଇ ପୁରାତନ କୀର୍ତ୍ତିକୁ ହିଁ ସ୍ମରଣ କରାଇ ଦିଏ ।

ବାରବାଟୀ ଦୁର୍ଗ ଯେପରି ବୀରମାଟିର ଗାଥା ବହନ କରେ ସେପରି କଟକ ଏକଦା ଓଡ଼ିଶାର ରାଜଧାନୀର ମାନ୍ୟତାକୁ ସ୍ୱୀକାର କରେ । ଓଡ଼ିଶାର ସାମଗ୍ରିକ ମହିମାରେ ଭାସ୍ୱର ଏହି କଟକ । କଳିଙ୍ଗର ବୀରତ୍ୱ, କଳିଙ୍ଗର ନୌବାଣିଜ୍ୟ, ଉତ୍କଳର କଳା, ତାରକସୀ କାରୁକାର୍ଯ୍ୟ, ପ୍ରିଟିଙ୍ଗ୍ ପ୍ରେସ୍, ଧର୍ମପ୍ରାଣ ଚୈତନ୍ୟ ଦେବଙ୍କ ରହଣି ଓ ପଦଯାତ୍ରା, ତାଙ୍କର ଈଶ୍ୱରପ୍ରେମ ଇତ୍ୟାଦି କଟକକୁ ମହିମାନ୍ୱିତ କରିଛି । ଲାଲବାଗ ଥାନା ଅଞ୍ଚଳ, ଲାଲବେଗଙ୍କ ଇତିହାସ ଓ କବି ସାଲବେଗଙ୍କ ଜନ୍ମଦାତା, ଜଗନ୍ନାଥଙ୍କ ମହିମାରେ ଦୀପ୍ତିମନ୍ତ ।

ଶିକ୍ଷାର ପ୍ରାଣକେନ୍ଦ୍ର, ସଂବାଦପତ୍ରର ପ୍ରଥମ ତୀର୍ଥଭୂମି, ଜାତୀୟ ସଂହତିର ଅପୂର୍ବ ପରାକାଷ୍ଠା, ଗୌରବାନ୍ୱିତ କଟକ, ଉଦାରତା ମାନବିକତା, ଏକତା, ସତ୍ୟ, ଶାନ୍ତି, ଦୟା, କ୍ଷମାର ଏକ ପ୍ରବହମାନ ତଟିନୀ ସଦୃଶ । ଭଲ ପାଇବା, ମର୍ଯ୍ୟାଦା ଜନକସ୍ଥିତିର ପରିବେଶ ସୃଷ୍ଟି କରିବାରେ କଟକର ଅକ୍ଷୟ ଯଶ ସର୍ବବିଦିତ । ଅନେକ କବି, କବିତାର ସନ୍ନିବେଶ, ମହମଦଙ୍କ ପବିତ୍ର ଦେହାବଶେଷ ସଂରକ୍ଷିତ କରିଥିବା କଦମ ରସୁଲ, ମୋଗଲ ସୁବେଦାର ମୁବାକବ୍ ଖାଁଙ୍କର ଲାଲବାଗ କୋଠିର ରମ୍ୟ କଥନ, ମାନବମୈତ୍ରୀର ପ୍ରତୀକ, ସଂସ୍କୃତିର ପ୍ରାଣସ୍ପନ୍ଦନ ଏହି ଗୌରବମୟ କଟକ ବାସ୍ତବରେ କେତେ ମହାନ୍ ।

କାର୍ତ୍ତିକ ପୂର୍ଣ୍ଣିମାରେ ବାଲିଯାତ୍ରା ପାଳନ କେବଳ ବୋଇତ ବନ୍ଦାଣରେ ସୀମିତ ନୁହେଁ ନାନାବିଧ ବାଣିଜ୍ୟ ସାମ୍ରାଜ୍ୟର ଗନ୍ତାଘର । ଏ ମାଟିର ସ୍ୱାଭିମାନ କଥା ଜାଣନ୍ତି, ସ୍ୱାଭିମାନୀ ମଧୁବାବୁ, ଗୋପବନ୍ଧୁ, ଗୌରୀଶଙ୍କର, ପ୍ୟାରୀମୋହନ ଓ ଆହୁରି ଅନେକ ଦିଗ୍‌ଦର୍ଶକ ।

ଭାରତୀୟ ସଂସ୍କୃତି, ବୈଦିକ ସଂସ୍କୃତି ଓ ଲୋକ ସଂସ୍କୃତିର ସମ୍ମିଳିତ ଭଣ୍ଡାର ଏହି କଟକ ନଗର । କଳା ବିକାଶ କେନ୍ଦ୍ର, ଶ୍ରୀରାମଚନ୍ଦ୍ର ଭବନ, ଶତାବ୍ଦୀ ଭବନ, ସହିଦ ଭବନ, ଇଦ୍‌ଗା ପଡ଼ିଆ ପ୍ରତ୍ୟେକ ସ୍ଥାନ ଭାଷା, ସାହିତ୍ୟ, କଳା, ନୃତ୍ୟ, ସଙ୍ଗୀତ ଓ ବିବିଧ କଳା ନୈପୁଣ୍ୟର ସାଧନାସ୍ଥଳୀ ।

କଟକ ନିକଟରେ ପ୍ରବହମାନ ନଦୀର ଶ୍ୟାମଳ ପଠା, କାଶତଣ୍ଡୀ ଫୁଲର ସମ୍ଭାର, ମହାନଦୀରେ ଜ୍ୟୋତ୍ସ୍ନାର ରାଜୁତି, କେବଳ କବି ମାୟାଧର ମାନସିଂହଙ୍କୁ ପାଗଳ କରି ନଥିଲା, ଏହା ନିଜର ସୌରଭ, ସୌନ୍ଦର୍ଯ୍ୟରେ ସମଗ୍ର ମାନବ ସମାଜକୁ ଆକୃଷ୍ଟ କରୁଥିଲା, ପ୍ରଭାତର ଅରୁଣ ଆଲୋକ, ପଥରବନ୍ଧ ଘାଟ, ଶୁକ୍ଳପକ୍ଷ ଚନ୍ଦ୍ରାଲୋକର ନିର୍ମଳ ଜଳରାଶି, ଘଣ୍ଟ ଘଣ୍ଟାଧ୍ୱନୀ, ସଂକୀର୍ତ୍ତନର ସ୍ୱର ମାଧୁର୍ଯ୍ୟ, ଜ୍ୟୋତ୍ସ୍ନା ପୁଲକିତ ନୀଳାକାଶ, ନୌକାଶୋଭିତ ନଦୀବକ୍ଷ, ଶିମୁଳୀ, କୃଷ୍ଣଚୂଡ଼ା ଗଛର ଫୁଲ ଫସଲ ଏତେ ମମତା, ଏତେ ଆଶା, ଏତେ ବୈଚିତ୍ର୍ୟ ଢ଼ାଳି ଦିଏ ଯେ, ସୁଖ-ସ୍ମୃତିର ଏହି ସହର ହୋଇଯାଏ ଚିର ଅଭୁଲା ।

ଭ୍ରାମ୍ୟଭାଷ: ୮୨୬୦୧୯୧୮୧୨

୦୦

# ଉତ୍କଳୀୟ ବୀରତ୍ୱର ମୂକସାକ୍ଷୀ ଐତିହାସିକ ବାରବାଟୀ ଦୁର୍ଗ

❖ ରାଜକୁମାର ପୃଷ୍ଟି

ସୋମବଂଶର ନରପତି ନୃପକେଶରୀ କଟକ ନଗରୀ ୯୮୯ ଖ୍ରୀଷ୍ଟାବ୍ଦରେ ପ୍ରତିଷ୍ଠା କରିଥିବାର କଥା ମାଦଳା ପାଞ୍ଜି, ଜନଶ୍ରୁତି ଓ କିମ୍ବଦନ୍ତୀକୁ ଆଧାର କରି ଆଣ୍ଡ୍ରିଉଷ୍ଟାର୍ଲିଂଙ୍କ ଦ୍ୱାରା ଲିଖିତ **'An Account, Geographical, Statistical and Historical of Orissa Proper, or Cuttack'** ପୁସ୍ତକରୁ ଜଣାଯାଏ । କିନ୍ତୁ ଐତିହାସିକ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଓଡ଼ିଶାର ଭୌମକର ବଂଶର ରାଜତ୍ୱ (ଖ୍ରୀ:୭୭୬-୯୩୦) ସମୟରେ ସମ୍ଭବତଃ କଟକ ନଗରୀ ସ୍ଥାପିତ ହୋଇଥିଲା ବୋଲି ସେ ସମୟର କିଛି ମୂର୍ତ୍ତି ଓ ମନ୍ଦିରର ଭଗ୍ନାବଶେଷ କଟକ ନଗରୀରେ ଦେଖି ମତବ୍ୟକ୍ତ କରିଛନ୍ତି । ଅଦ୍ୟାବଧି ତାଙ୍କ ମତ ପ୍ରମାଣ କଲାଭଳି କୌଣସି ପ୍ରମାଣ ପ୍ରାପ୍ତ ହୋଇନାହିଁ, କଟକ ନଗରୀର ପ୍ରତିଷ୍ଠା ୯୮୯ ଖ୍ରୀଷ୍ଟାବ୍ଦରେ ହୋଇଥିବାର ଗ୍ରହଣ କରାଯାଏ । ଏଠାରେ ମଧ୍ୟ ଉଲ୍ଲେଖଯୋଗ୍ୟ ଯେ ସୋମବଂଶୀ ରାଜବଂଶାବଳୀରେ ନୃପକେଶରୀ ନାମରେ ନରପତି ଥିବାର ଉଲ୍ଲେଖ ନାହିଁ । ସେ ଯଯାତି ମହାଶିବଗୁପ୍ତ ନାମରେ ପରିଚିତ । ଏହି ବଂଶର ପରବର୍ତ୍ତୀ ନରପତି ମର୍କତ କେଶରୀ ବା ଭୀମରଥ ଦ୍ୱିତୀୟ ମହାଭବ ଗୁପ୍ତ ବିଡ଼ାନାସୀ ଗାଁର ବାଇମୁଣ୍ଡି ନାମକ ଜଣେ ବୃଦ୍ଧଙ୍କର ଗୁହାରି ଗ୍ରହଣ କରି କଟକ ସହରକୁ ସୁରକ୍ଷିତ ରଖିବା ପାଇଁ ଉଭୟ ମହାନଦୀ ଓ କାଠଯୋଡ଼ି ନଦୀ କୂଳେ କୂଳେ ୧୦୦୬ ଖ୍ରୀଷ୍ଟାବ୍ଦରେ ଏକ ପଥର ବନ୍ଧ ନିର୍ମାଣ କରିଥିଲେ । ସେଥିପାଇଁ ପ୍ରବାଦଟିଏ ଗଢ଼ିଚାଲିଛି, "କଟକ ଚିନ୍ତା ବାଇମୁଣ୍ଡିକି" । ଯଦିଓ କଟକ ନଗରୀ ସୋମବଂଶୀ କେଶରୀ ବଂଶର ରାଜତ୍ୱ ସମୟରେ ସ୍ଥାପିତ ହୋଇଥିଲା, ମାତ୍ର ଏହାର ରାଜଧାନୀ ଥିଲା ଯାଜପୁର । ଏହି ବଂଶର ଶେଷରାଜା କର୍ଣ୍ଣକେଶରୀଙ୍କର ସମୟରେ ଗଙ୍ଗବଂଶର ଲବ୍ଧପ୍ରତିଷ୍ଠ ନରପତି ଅନନ୍ତ ବର୍ମନ ଚୋଡ଼ଗଙ୍ଗଦେବ ୧୨୧୨ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଅଧିକାର କରି, କଟକ ନଗର ତାଙ୍କ ସାମ୍ରାଜ୍ୟର କେନ୍ଦ୍ରସ୍ଥଳ ଥିବାରୁ ଆନ୍ଧ୍ରର ଶ୍ରୀକାକୁଲମ ଜିଲ୍ଲାର ମୁଖଲିଙ୍ଗମରୁ ନିଜର ରାଜଧାନୀ କଟକକୁ ସ୍ଥାନାନ୍ତରିତ କରି ତା'ର ନାମ ଅଭିନବ ବାରାଣସୀ କଟକ ରଖିଥିଲେ । ତେଣୁ ଓଡ଼ିଶାରେ ଗଙ୍ଗବଂଶର ସର୍ବପ୍ରଥମ ରାଜଧାନୀ କଟକ ଥିଲା ବୋଲି ଐତିହାସିକମାନେ କହିଥାନ୍ତି । ଅନନ୍ତ ବର୍ମନ ଚୋଡ଼ଗଙ୍ଗ ଦେବ ମଧ୍ୟ କଟକର ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ପାଞ୍ଚୋଟି ଦୁର୍ଗ ନିର୍ମାଣ କରି ତନ୍ମଧ୍ୟରୁ ଚୌଦ୍ୱାର କଟକରେ ଅବସ୍ଥାପନ କରୁଥିଲେ । ଗଙ୍ଗବଂଶର ନରପତି ତୃତୀୟ ଅନଙ୍ଗ ଭୀମଦେବଙ୍କ ରାଜୁତି ସମୟରେ ଆଫଗାନ ମୁସଲମାନମାନେ ଉତ୍ତର ପଟରୁ ଓଡ଼ିଶା ଆକ୍ରମଣ କରୁଥିବାରୁ ସେମାନଙ୍କର ଆକ୍ରମଣକୁ ପ୍ରତିହତ କରିବା ପାଇଁ ରାଜା ଏକ ସୁରକ୍ଷିତ ସ୍ଥାନ ଅନ୍ୱେଷଣରେ ଥିଲେ । ମାଦଳା ପାଞ୍ଜିରେ ଏକ କିମ୍ବଦନ୍ତୀର ବର୍ଣ୍ଣନା ଅଛି ତାହା ହେଲା– ଏକଦା ରାଜା ଅବସ୍ଥାନ କରୁଥିବା ଚୌଦ୍ୱାର କଟକରୁ ମହାନଦୀ ଅତିକ୍ରମ କରି କଟକସ୍ଥିତ ବାରବାଟୀ ଗ୍ରାମ ମହାନଦୀ କୂଳରେ ଅବସ୍ଥିତ ବିଶ୍ୱେଶ୍ୱର ମନ୍ଦିର (ଅଧୁନା ଯେଉଁଠାରେ ଗଡ଼ଗଡ଼େଶ୍ୱର ମନ୍ଦିର ବିଦ୍ୟମାନ)କୁ ଆସୁଥିବା ସମୟରେ ଏକ ବଗ ପକ୍ଷୀ ଏକ ଛଞ୍ଚାଣ ଉପରେ ବସି ଥିବାର ଶୌର୍ଯ୍ୟ ଓ ବୀର ବିକ୍ରମର ଦୃଶ୍ୟ ଦେଖି ସ୍ତମ୍ଭୀଭୂତ ହୋଇ ସ୍ଥାନର କିଛି ମାହାତ୍ମ୍ୟ ଥିବାର ହୃଦ୍‌ବୋଧ କରିଥିଲେ । ଏହା ବ୍ୟତିରେକ ଉକ୍ତ ସ୍ଥାନର ଉତ୍ତରରେ ମହାନଦୀ ଓ ବିରୂପା, ପଶ୍ଚିମରେ ବିଡ଼ାନାସୀ ଦୁର୍ଗ, କାଠଯୋଡ଼ି ଓ ମହାନଦୀ, ଦକ୍ଷିଣରେ କାଠଯୋଡ଼ି ଏହିପରି ଚତୁର୍ଦ୍ଦିଗରେ ପ୍ରାକୃତିକ ପ୍ରତିବନ୍ଧକ ଦ୍ୱାରା ପରିବେଷ୍ଟିତ ହେତୁ ସୁରକ୍ଷିତ ଓ ନିରାପଦ ସ୍ଥାନ ମନେକରି ୧୨୨୯ ଖ୍ରୀଷ୍ଟାବ୍ଦରେ ସେହି ସ୍ଥାନରେ ୧୨ ବାଟି ବା ୨୪୦ ବିଘା (ଅଧୁନା ମାପ ୧୦୨ ଏକର) ବିସ୍ତୃତ ଜମି ଉପରେ ଏକ ଦୁର୍ଗ ନିର୍ମାଣ କରିଥିଲେ । ତାହା ହିଁ ହେଉଛି ଇତିହାସ ପ୍ରସିଦ୍ଧ ବାରବାଟୀ ଦୁର୍ଗ । ଇଂରେଜ ବଣିକ ଟମାସ ମଟ୍ଟେଙ୍କ ବିବରଣୀରେ ମଧ୍ୟ ବାରବାଟୀ ଦୁର୍ଗ ବିଷୟରେ ବର୍ଣ୍ଣନା ଅଛି । ୧୯୮୯ ମସିହାରେ କଟକର ହଜାର ବର୍ଷର ପୂର୍ତ୍ତି ଉତ୍ସବ ପାଳନ ସମୟରେ ଭାରତ ସରକାରଙ୍କର ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥା ଦ୍ୱାରା ସେହି





ବର୍ଷ ଡିସେମ୍ବର ୧ ତାରିଖ ଦିନ ବାରବାଟୀ ଦୁର୍ଗର ଖନନ କାର୍ଯ୍ୟ ଆରମ୍ଭ କରାଯାଇଥିଲା। ସେହି ଖନନରୁ ଜଣାଯାଇଛି ଯେ ବାରବାଟୀ ଦୁର୍ଗଟି ମୋଟାମୋଟି ୧୦୨ ଏକର ଆୟତନ ବିଶିଷ୍ଟ ଏକ ବର୍ଗାକାର ଦୁର୍ଗ । କିନ୍ତୁ ଇଂରେଜ ପ୍ରଶାସକ ଐତିହାସିକ ଷ୍ଟାର୍ଲିଂଙ୍କ ୧୮୧୮ ମସିହାର ବର୍ଣ୍ଣନାରୁ ଜଣାଯାଏ ଏହା ୨୧୫୦ ଫୁଟ ଦୈର୍ଘ୍ୟ ଓ ୧୮୦୦ ଫୁଟ ପ୍ରସ୍ଥ ବିଶିଷ୍ଟ ଏକ ଆୟତକାର ଦୁର୍ଗ ଥିଲା । ଏହାର ଚାରିପଟେ ଦୁଇଫୁଟ ବ୍ୟବଧାନରେ ଦୁଇଟି ପ୍ରାଚୀର ପରିବେଷ୍ଟିତ ହୋଇଥିଲା ଓ ଉଭୟ ପ୍ରାଚୀର ମଧ୍ୟବର୍ତ୍ତୀ ସ୍ଥାନ ମାଟି ଓ ବାଲି ଦ୍ୱାରା ପୂର୍ଣ୍ଣ ଥିଲା । ଏହାଛଡ଼ା ଦୁର୍ଗର ପ୍ରାଚୀରଠାରୁ ୯୦ ଫୁଟ ବ୍ୟବଧାନରେ ଚତୁଃପାର୍ଶ୍ୱରେ ୨୦ ଗଜ ପ୍ରସ୍ଥ ଓ ୭ ଫୁଟ ଗଭୀରର ଏକ ଗଡ଼ଖାଇ ରହିଥିଲା । ଏଥିରେ ଥଣ୍ଡିଆ ଓ ଘଡ଼ିଆଳ କୁମ୍ଭୀର ସହିତ ବିଷଧର ସର୍ପମାନ ଛଡ଼ାଯାଇ ବାହ୍ୟ ଶତ୍ରୁ ଆକ୍ରମଣରୁ ଏହାକୁ ରକ୍ଷା କରାଯିବାର ବ୍ୟବସ୍ଥା କରାଯାଇଥିଲା । ଏହା କହିବା ବାହୁଲ୍ୟ ଯେ ସବୁ ଦୃଷ୍ଟିରୁ ସେ ସମୟରେ ବାରବାଟୀ ଏକ ଉଚ୍ଚକୋଟୀର ଦୁର୍ଗ ଥିଲା । ଦୁର୍ଗ ପରିସର ମଧ୍ୟରେ ଥିବା ଉଦ୍ୟାନରେ ବିଭିନ୍ନ ପ୍ରକାର ଫୁଲ ଓ ଫଳ ଗଛ ଏହାର ଶୋଭାକୁ ଦ୍ୱିଗୁଣିତ କରୁଥିଲା ।

ଗଙ୍ଗବଂଶର ପତନ ପରେ ୧୪୩୫ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ଶାସନ ସୂର୍ଯ୍ୟବଂଶୀ ଗଜପତିଙ୍କ ଅଧୀନକୁ ଗଲା । କଟକନଗରୀ ମଧ୍ୟ ସେମାନଙ୍କର ରାଜଧାନୀ ଥିଲା । ଏହି ବଂଶର ପ୍ରଥମ ନରପତି କପିଳେନ୍ଦ୍ର ଦେବ (ଖ୍ରୀ:୧୪୩୫-୧୪୬୭) ଓ ତାଙ୍କ ପରେ ତାଙ୍କ ପୁତ୍ର ପୁରୁଷୋତ୍ତମ ଦେବ (ଖ୍ରୀ:୧୪୬୭-୧୪୯୭) ବାରବାଟୀ ଦୁର୍ଗରେ ଅବସ୍ଥାନ କରୁଥିଲେ । ପୁରୁଷୋତ୍ତମ ଦେବ ତାଙ୍କ ରାଜତ୍ୱ ସମୟରେ କାଞ୍ଚି ବିଜୟକରି ସେଠାରୁ ଆଣିଥିବା ଗଣେଶ ଓ ଗୋପାଳ ମୂର୍ତ୍ତି ତାଙ୍କ କାଞ୍ଚି ବିଜୟର ସାକ୍ଷୀ ହୋଇ ଗୋପାଳ ବିଗ୍ରହ ବାରବାଟୀ ଦୁର୍ଗରେ ପୂଜା ପାଇଲେ । ପୁରୁଷୋତ୍ତମ ଦେବ କାଞ୍ଚି ରାଜା ସାଲୁଭ ନରସିଂହଙ୍କର ଅନିନ୍ଦ୍ୟ ସୁନ୍ଦରୀ କନ୍ୟା ରାଜଜେମା ପଦ୍ମାବତୀଙ୍କୁ କଟକ ଆଣି ଖ୍ରୀ:୧୪୭୫ରେ ବିବାହ କରିଥିଲେ ।

ଗଜପତି ପ୍ରତାପରୁଦ୍ର ଦେବଙ୍କର ଦେହାନ୍ତ ପରେ ତାଙ୍କର ଚତୁର ମନ୍ତ୍ରୀ ବିଦ୍ୟାଧର କଟକ ଅଧିକାର ପୂର୍ବକ ବାରବାଟୀ ଦୁର୍ଗରେ ରହିଲେ । ପରେ ପରେ ମୁକୁନ୍ଦଦେବ ୧୫୬୦ ଖ୍ରୀଷ୍ଟାବ୍ଦରେ ଗଜପତି ସିଂହାସନ ଅଧିକାର କରି ବାରବାଟୀ ଦୁର୍ଗକୁ ନିଜ ଅଧୀନକୁ ନେଲେ । ଅନଙ୍ଗଭୀମ ଦେବଙ୍କ ଦ୍ୱାରା ନିର୍ମିତ ରାଜଭବନ ଜରାଜୀର୍ଣ୍ଣ ହୋଇଥିବାରୁ ଗଜପତି ମୁକୁନ୍ଦଦେବ ସେଠାରେ ଏକ ନବତଳ ପ୍ରାସାଦ ନିର୍ମାଣ କରିଥିଲେ । ବାରବାଟୀ ପରିସରସ୍ଥିତ ଏହି ସୁଶୋଭିତ ନବତଳ ପ୍ରାସାଦରେ ରାଜାଙ୍କର ହାତୀ ଓ ଘୋଡ଼ାମାନେ ପ୍ରଥମ ମହଲାରେ, ସେନାବାହିନୀ ଓ ସମର ସରଞ୍ଜାମ ଦ୍ୱିତୀୟ ମହଲାରେ, ଦୁର୍ଗ ଫାଟକ ରକ୍ଷକ ତୃତୀୟ ମହଲାରେ, ଗୋଳାବାରୁଦ ଓ ଯୁଦ୍ଧ ଉପକରଣ କାରଖାନା ଚତୁର୍ଥ ମହଲାରେ, ପାକଶାଳା ପଞ୍ଚମ ମହଲାରେ, ଅଭ୍ୟର୍ଥନା ପ୍ରକୋଷ୍ଠ ଷଷ୍ଠ ମହଲାରେ, ରାଜାଙ୍କର ପାରିବାରିକ ଓ ଗୋପନୀୟ କାର୍ଯ୍ୟସ୍ଥଳ ଭାବରେ ସପ୍ତମ ମହଲା, ଅନ୍ତଃପୁର ଭାବରେ ଅଷ୍ଟମ ମହଲା ଓ ରାଜାଙ୍କର ଶୟନ କକ୍ଷ ନବମ ମହଲାରେ ଥିଲା । ମୋଗଲ ସମ୍ରାଟ ଆକବରଙ୍କ ଦରବାରର ଐତିହାସିକ ଆବୁଲଫାଜଲ ଆଇନ -ଇ-ଆକବରୀ ପୁସ୍ତକରେ ବାରବାଟୀ ଦୁର୍ଗ ଓ ନବତଳ ପ୍ରାସାଦ ବିଷୟରେ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । ଇଂରେଜ ବଣିକ ଟମାସ ମଟ୍ଟେ ୧୭୬୬ ମସିହାରେ ଓଡ଼ିଶାକୁ ଆସିଥିବା ସମୟରେ ବାରବାଟୀ ଦୁର୍ଗଟି ଲଣ୍ଡନସ୍ଥିତ ଉଇଣ୍ଡସର ପ୍ରାସାଦର ପଶ୍ଚିମାଂଶ ପରି ଦୃଶ୍ୟ ହେଉଥିବାର ବର୍ଣ୍ଣନା କରିଛନ୍ତି । ୧୬୩୩ ଖ୍ରୀଷ୍ଟାବ୍ଦରେ ଓଡ଼ିଶାକୁ ଆସିଥିବା ବ୍ରୁଟନ ମୁକୁନ୍ଦଦେବଙ୍କ ନିର୍ମିତ ନବତଳ ପ୍ରାସାଦକୁ ମାଳକଣ୍ଠି ପ୍ରାସାଦ ବୋଲି ଉଲ୍ଲେଖ କରିଯାଇଛନ୍ତି । ମାତ୍ର କେତେକ ଐତିହାସିକଙ୍କ ମତରେ ପ୍ରାସାଦଟି ନ' ମହଲା ବିଶିଷ୍ଟ ନଥିଲା ବରଂ ପରସ୍ପର ଲଗାଲଗି ଥିବା ନ'ଟି ତଳ । ନିକଟରେ ହୋଇଥିବା ପ୍ରତ୍ନତାତ୍ତ୍ୱିକ ଖନନରୁ ବିଶ୍ୱାସ କରାଯାଏ ଯେ ଏହି ପରିତ୍ୟକ୍ତ ପ୍ରାସାଦଟି ରକ୍ଷଣାବେକ୍ଷଣ ଅଭାବରୁ କାଳକ୍ରମେ ଭାଙ୍ଗିପଡ଼ିଛି ।

ଭାରତବର୍ଷରେ ପଠାଣ ଓ ମୋଗଲ ଶାସନ କାଳରେ ବାରବାଟୀ ଗଡ଼ ଉପରେ ବାରମ୍ବାର ଆକ୍ରମଣ ହେଉଥିବାରୁ ସାକ୍ଷୀଗୋପାଳ ବିଗ୍ରହଙ୍କୁ ବିଭିନ୍ନ ସ୍ଥାନକୁ ସ୍ଥାନାନ୍ତରିତ କରାଯାଇ ଅବଶେଷରେ ଦ୍ୱିତୀୟ ଦିବ୍ୟସିଂହଙ୍କ ସମୟରେ ସତ୍ୟବାଦୀଠାରେ ପ୍ରତିଷ୍ଠା କରାଗଲା ।

ଗଜପତି ମୁକୁନ୍ଦଦେବଙ୍କ ଶାସନ କାଳରେ ଅନ୍ତଃବିବାଦର ସୁଯୋଗ ନେଇ ତତ୍କାଳୀନ ବଙ୍ଗଳାର ଆଫଗାନ ଶାସକ ୧୫୬୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶାକୁ ନିଜ ଶାସନାଧୀନ କଲେ । ଏହାପରେ ୧୫୯୨ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ମୋଗଲ ଶାସକଙ୍କ ହାତକୁ ଗଲା । ସମ୍ରାଟ ଆକବରଙ୍କର ସେନାପତି ରାଜା ମାନସିଂହ ଓଡ଼ିଶା ଆସି ବାରବାଟୀ ଦୁର୍ଗରେ ଅବସ୍ଥାନ କରୁଥିଲେ । ଏହି ଦୁର୍ଗରେ ମଧ ମୋଗଲ ସୁବେଦାର କଲ୍ୟାଣ ମଲ୍ଲ ଓ ଯୁବରାଜ ଖୁରମ୍ ଯେ କି ପରବର୍ତ୍ତୀ ସମୟରେ ସମ୍ରାଟ ଶାହାଜାହାନ ଭାବରେ ଖ୍ୟାତ,





କିଛିବର୍ଷ ବିତାଇଥିଲେ । ଶାହାଜାହାନଙ୍କ ନିର୍ଦ୍ଦେଶରେ ଲାଲ୍‌ବାଗ ପ୍ରାସାଦ ନିର୍ମାଣ ପରେ ମୋଗଲ ସୁବେଦାର ନବନିର୍ମିତ ଲାଲବାଗ ପ୍ରାସାଦରେ ରହିବାରୁ ବାରବାଟୀ ଦୁର୍ଗର ଗୁରୁତ୍ୱ କେତେବର୍ଷ ପାଇଁ ମଳିନ ପଡ଼ିଥିଲା ।

ମୋଗଲ ରାଜତ୍ୱର ଅବସାନ ୧୭୦୭ ଖ୍ରୀଷ୍ଟାବ୍ଦରେ ହେବା ପରେ ଆଲିବର୍ଦ୍ଦି ଖାଁଙ୍କ ଅଧୀନରେ ରହି ଓଡ଼ିଶା ୧୭୫୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଶାସିତ ହୋଇଥିଲା । ଏହି ସମୟରେ ସେ ବାରବାଟୀ ଦୁର୍ଗରେ ରହୁଥିବାରୁ ବାରବାଟୀ ତାହାର ପୂର୍ବ ପ୍ରତିଷ୍ଠା ଫେରି ପାଇଥିଲା । ତାଙ୍କ ରାଜତ୍ୱ ସମୟରେ ବାରବାଟୀ ଦୁର୍ଗ ପରିସର ମଧ୍ୟରେ ଏକ ମସଜିଦ୍ ନିର୍ମାଣ କରାଯାଇଥିଲା, ଯାହାକି ଆଜି ମଧ ଚଳଚଞ୍ଚଳ । ୧୭୫୧ ଖ୍ରୀଷ୍ଟାବ୍ଦରେ ମରହଟ୍ଟାମାନେ ଓଡ଼ିଶାର ଶାସନ କର୍ତ୍ତା ହେଲେ ଓ ସୁବେଦାର ଭାସ୍କର ପଣ୍ଡିତଙ୍କ ନେତୃତ୍ୱରେ ବାରବାଟୀ ଦୁର୍ଗ ଅଧିକାର କରାଯାଇ ପରବର୍ତ୍ତୀ ସମୟରେ ସବୁ ମରହଟ୍ଟା ସୁବେଦାର ଏହି ବାରବାଟୀଦୁର୍ଗ ଓ ଲାଲବାଗ ପ୍ରାସାଦରେ ରହି ଶାସନ କାର୍ଯ୍ୟ ଚଳାଉଥିଲେ । ୧୮୦୩ ଖ୍ରୀଷ୍ଟାବ୍ଦ ଅକ୍ଟୋବର ୧୪ ତାରିଖ ଦିନ ବାରବାଟୀ ଦୁର୍ଗକୁ ଇଂରେଜ ସେନାଧକ୍ଷ କର୍ଣ୍ଣେଲ ହାରକୋର୍ଟ ଓଡ଼ିଶା ଅଧିକାର ପୂର୍ବକ ଅବରୋଧ କଲେ । ସେ ଅବରୋଧ କରିବା ସମୟର ଏକ ବର୍ଣ୍ଣନା ଦେଇ କହିଛନ୍ତି ଯେ ଦୁର୍ଗଟି ଏତେ ଦୁର୍ଭେଦ୍ୟ ଥିଲା ଯେ କେବଳ ମାତ୍ର ଗଡ଼ଖାଇ ଉପରେ ଥିବା ପୋଲ ବ୍ୟତିରେକ ଅନ୍ୟ କେଉଁ ବାଟେ ତାହା ମଧ୍ୟକୁ ପ୍ରବେଶ କରିବା ସହଜସାଧ୍ୟ ନଥିଲା । ତେଣୁ ତାକୁ ହିଁ ଆୟୁଧ କରି ସେ ଦୁର୍ଗ ଅଧିକାର କରିଥିଲେ । ସେ ପର୍ଯ୍ୟନ୍ତ ଦୁର୍ଗଟି ଅକ୍ଷତ ଥିଲା । କିନ୍ତୁ ଇଂରେଜ କମିଶନରମାନେ ଲାଲବାଗ ପ୍ରାସାଦରେ ଅବସ୍ଥାନ କରି ବାରବାଟୀ ଦୁର୍ଗକୁ ବିଶିଷ୍ଟ ଅପରାଧୀଙ୍କ ବନ୍ଦୀଶାଳା ରୂପେ ବ୍ୟବହାର କଲେ । ମୁକୁନ୍ଦଦେବ ଓ ତାଙ୍କ ସେନାପତି ଜୟୀରାଜଗୁରୁ, କୁଜଙ୍ଗ ରାଜା ମଧୁସୂଦନ କ୍ଷେତ୍ର, ବକ୍ସି ଜଗବନ୍ଧୁଙ୍କ ପରିବାରବର୍ଗ, ଏବଂ ଖୋର୍ଦ୍ଧାର ଅନ୍ୟତମ ରାଜା ରାମଚନ୍ଦ୍ର ଦେବ ଇତ୍ୟାଦିଙ୍କୁ ଦୁର୍ଗ ମଧ୍ୟରେ ବିଭିନ୍ନ ସମୟରେ ଅଟକ ରଖାଯାଇଥିଲା ।

ଇଂରେଜ କମିଶନର ଟି. ପାକିନିହାମ୍ ୧୮୨୯ ମସିହାରେ ବାରବାଟୀ ଦୁର୍ଗରୁ ପଥର ଅପସାରଣ ପାଇଁ ଅନୁମତି ଦେବା ଫଳରେ ଦୁର୍ଗକୁ ଭାଙ୍ଗିରୁଜି ପ୍ରସ୍ତର ଖଣ୍ଡମାନ ମୁଖ୍ୟତଃ ବନ୍ଦୀମାନଙ୍କୁ ବ୍ୟବହାର କରି କେଣ୍ଟନମେଣ୍ଟ ରାସ୍ତା, ନଦୀବନ୍ଧ, କଟକ ରେଳଷ୍ଟେସନ ପର୍ଯ୍ୟନ୍ତ ପଡ଼ିଥିବା ରାସ୍ତା, ଏକ ଡାକ୍ତରଖାନା ଓ ପାରାଦୀପଠାରେ ବତୀଘର ଆଦି ନିର୍ମାଣ କରିଥିଲେ ଏବଂ ବଳକା ପ୍ରସ୍ତର ଗୁଡ଼ିକୁ ଶହ ପାଞ୍ଚଟଙ୍କାରୁ ସାତଟଙ୍କା ମୂଲ୍ୟରେ କଟକର ଧନାଢ୍ୟ ବ୍ୟକ୍ତିମାନେ ନିଜ ନିଜ ଘର ତିଆରି କରିବା ପାଇଁ କିଣି ନେଇଥିଲେ । ୧୮୩୮ ମସିହାରେ ଏହାର ପ୍ରବେଶଦ୍ୱାରକୁ ଭାଙ୍ଗି ଦିଆଯାଇଥିବାର ସେହି ବର୍ଷ ଓଡ଼ିଶାକୁ ଆସିଥିବା କିଟୋ ଦେଖିଥିଲେ । ବାରବାଟୀ ଦୁର୍ଗର ପ୍ରାଚୀରକୁ ୧୮୫୭ ମସିହାରେ ତତ୍କାଳୀନ ନଦୀବନ୍ଧର ସୁପରିନ୍‌ଟେଣ୍ଡେଣ୍ଟଙ୍କ ନିର୍ଦ୍ଦେଶରେ ଭଙ୍ଗା ଯାଇଥିଲା । ଇଂରେଜ କମିଶନର ଜର୍ଜ ଟଏନବିଙ୍କର ୧୮୭୩ ମସିହାର ବର୍ଣ୍ଣନା ଅନୁଯାୟୀ ବାରବାଟୀ ପରିସର ମଧ୍ୟରେ ମାତ୍ର କେତୋଟି କୁଦ, ଫତେ ଖାଁ ରହିମ ମସଜିଦ, ଦୁର୍ଗର ଭଗ୍ନ ପ୍ରବେଶଦ୍ୱାର ଓ ଗଡ଼ଖାଇ ବ୍ୟତୀତ ଆଉ କିଛି ନଥିଲା ।

ଉତ୍କଳମଣି ଗୋପବନ୍ଧୁ ଦାସ ହଜାରିବାଗ ଜେଲ୍‌ରେ ବନ୍ଦୀ ଥିବାବେଳେ ବାରବାଟୀର ସ୍ମୃତିଚାରଣ କରିଛନ୍ତି ତାଙ୍କ 'କାରା କବିତା' ସଂକଳନସ୍ଥ 'ବନ୍ଦୀର ସ୍ୱଦେଶ ଚିନ୍ତା'ରେ ଲେଖିଛନ୍ତି–

"ବାରବାଟୀ ଅଙ୍ଗେ ସେ ସୌଭାଗ୍ୟ ରଙ୍ଗେ
କରିଥିଲ ଅଭିନୟ ପବନ,
ଆଜି ତ ଦେଖୁଛ ସେହି ବାରବାଟୀ
ଦେଖୁଲ ସତ୍ୟ କି ଅବା ସ୍ୱପନ ।
ନ'ତଳ ପ୍ରାସାଦ ସେ ଶୌର୍ଯ୍ୟ ସମ୍ପଦ
ବିଜୟ ବାଜଣା ବିଜୟ ଧ୍ୱଜା,
ବୀର-କବିତାର ଶୌର୍ଯ୍ୟ ସମାଦର
ଉତ୍କଳର ବୀର-ବିକ୍ରମୀ ପ୍ରଜା ।।

କବିବର ରାଧାନାଥ ରାୟ ଐତିହାସିକ ବାରବାଟୀ ଦୁର୍ଗର ସ୍ମୃତି ଚାରଣ ପୂର୍ବକ ତାଙ୍କ ରଚିତ 'ଦରବାର' କାବ୍ୟରେ ଉଲ୍ଲେଖ କରିଛନ୍ତି–

ଐତିହାସିକ ଏ ଦୁର୍ଗ ବାରବାଟୀ
ବୀର ରକ୍ତ ପିଣ୍ଡେ ଗଢ଼ା ଯା'ର ମାଟି ।
ବାରବାଟୀ ଯହିଁ ମନସ୍ମୃତି ପୋତେ
ବହିଯାଏ ପ୍ରତିଲୋମେ କାଳ ସ୍ରୋତେ ।

କବି ଗୋଦାବରୀଶ ମହାପାତ୍ର ତାଙ୍କର ଉଦ୍‌ବୋଧନୀ ମୂଳକ 'ଉଠ କଙ୍କାଳ' କବିତାରେ ସୁପ୍ତ ଓଡ଼ିଶାବାସୀଙ୍କୁ ଜାଗ୍ରତ କରିବାକୁ ଯାଇ ଲେଖିଛନ୍ତି–



ଦୁର୍ଗମ ଗିରି ଦୁର୍ଗ ପ୍ରାଚୀର ଜୀର୍ଣ୍ଣ ଦୁଆରେ ବସି
ଡାକେ ତାନ୍ତ୍ରିକ ମନ୍ତ୍ର ସାଧନେ ଜାଗ୍ରତ ପୁରବାସୀ ।
ପୃଥ୍ୱୀ ବିଦାରି ବାରବାଟୀ ମଡ଼ା ଉଠଉଠ ଚଞ୍ଚଳ
ଖୋରଧାର ଶତ ସରଦାର ଶିର କର ଉନ୍ନତତର।
ନିଜାମ ଭୁବନେ କୁଳବର୍ଗର ଅର୍ଗଳ ଏଡି ଦିନେ
ଗଜପତି ବୀର 'ବେରାର' ଭେଦିଲା ଜୟ ଗୌରବ ଗାନେ
ଦୁର୍ବାରଗଡ଼ 'ଦେବାର କୋଣ୍ଡା' କହେ ଆଜି ସେହି କଥା
ବାରବାଟୀ ବୀର ଦେଇଥିଲା ତା'ର ରଣେ ଉନ୍ନତ ମଥା ।
ଛିଡୁ ଶୃଙ୍ଖଳ, ଜାଗ କଂକାଳ, ଉଠ ଦୁର୍ବାର ଆଜି
ଉଠୁ ଜଗତ ଗୌରବ, ହୃତ ଗୌରବ, ମୃତ ଗୌରବ ରାଜି ।

କବି ଡକ୍ଟର ମାୟାଧର ମାନସିଂହ ତାଙ୍କ 'ମହାନଦୀରେ ଜ୍ୟୋସ୍ନା-ବିହାର' କବିତାରେ ଅତୀତର ସେହି ଗୌରବମୟ ଇତିହାସର ସାକ୍ଷୀ ବାରବାଟୀ ଦୁର୍ଗର ଅବକ୍ଷୟ ଜନିତ ଦୁଃଖରେ ମ୍ରିୟମାଣ ହୋଇ ଦରଦୀ ହୃଦୟରେ ଗାଇଛନ୍ତି–

ସେ ଦିନ ତୋ ଗିରି ସଙ୍ଗେ, ତୋର ଗଜପତି
ତୋଳିଲା ସ୍ପର୍ଦ୍ଧାରେ ତା'ର ଦୁର୍ଗ ଅଭ୍ରକଂଷ,
ତୋହର ଏ ନଦୀ ସମ ମହା ନରପତି
ହୃଦୟ ଉଦାର କରି ଜିଣି ନେଲା ଯଶ ।
ସେ ରାଜା ଯାଇଛି ଚାଲି, ଦୁର୍ଗ ତା'ର ନାହିଁ
ତା' ସଙ୍ଗେ ଯାଇଛି ପୁଣି ସେ ବୀର ହୃଦୟ,
ତୋହରି ଅତୀତ ମା' ଗୋ ଆଜି ଥାଇ ଥାଇ
କରେ କୂର ପରିହାସ ଘୋର ବ୍ୟଥାମୟ ।

କୌଣସି ପ୍ରାକୃତିକ ବିପର୍ଯ୍ୟୟ କାରଣରୁ ନୁହେଁ, ବରଂ ଦୂରଦୃଷ୍ଟିବିହୀନ ନିଷ୍ଠୁର ସାମ୍ରାଜ୍ୟଲୋଭୀ ବର୍ବର ମନୋଭାବର ଶିକାର ହୋଇ ଭଗ୍ନ ଅବସ୍ଥାରେ ବାରବାଟୀ ଦୁର୍ଗ ପଡ଼ିଥିଲେ ମଧ୍ୟ ଓଡ଼ିଆ ଜାତିର ବିକ୍ରମ ଓ ଶୌର୍ଯ୍ୟର ମୂକସାକ୍ଷୀ ଭାବେ ଦଣ୍ଡାୟମାନ ।

ଠଠ





# ଧର୍ମୀୟ ପରମ୍ପରାରେ କଳିଙ୍ଗୋତ୍କଳ ନୌବାଣିଜ୍ୟଚିତ୍ର

❖ ଗୟାଧର ସାହୁ

କଳିଙ୍ଗୋତ୍କଳ ଅଧିବାସୀମାନଙ୍କ ଜୀବନଯାପନ ଶୈଳୀ, ବାଣିଜ୍ୟିକ ସମ୍ପର୍କ, ଇତିହାସ, ପ୍ରତ୍ନତାତ୍ତ୍ୱିକ ଉତ୍‌ଖନନ, ଅଭିଲେଖ, ଶିଳାଲିପି ଚିତ୍ରାବଳି, ବ୍ୟବହାର୍ଯ୍ୟ ବସ୍ତୁ, ପଥର, ଲୁହା ଓ ତମ୍ବା ଇତ୍ୟାଦି ମିଳେ ଓଡ଼ିଶାର ପ୍ରତ୍ନତାତ୍ତ୍ୱିକ ଦସ୍ତାବିଜରୁ । ଭାରତ ଭୂଖଣ୍ଡ ମଧ୍ୟରୁ ଦାକ୍ଷିଣାତ୍ୟରେ ଦ୍ରାବିଡ ଓ ପୂର୍ବାଞ୍ଚଳ କଳିଙ୍ଗ ବ୍ରାତ୍ୟ ସଭ୍ୟତାରେ ପ୍ରାଚୀନ କଳିଙ୍ଗ ହିଁ ମୁଖ୍ୟ ପୁରୋଧା । କଃ ଲିଙ୍ଗ=କଳିଙ୍ଗ, କ ଅର୍ଥ ଜଳ, ଜଳାଶ୍ରୟୀ ଲିଙ୍ଗ ଉପାସକ ଅଧିବାସୀଙ୍କ ପ୍ରତ୍ୟେକ ଗ୍ରାମ ମଧ୍ୟରେ ସ୍ଥାପିତ ଶିବ ଶକ୍ତି ଏବଂ ଗ୍ରାମ ଦେବତୀ ନାମରେ ଖ୍ୟାତ । ଲୋକ କାହାଣୀରେ କଥାସରିତ ସାଗରର ଚାରିସଙ୍ଗାତ କଥାରେ ରାଜାପୁଅ ରାଜ୍ୟଶାସନ କରନ୍ତି, ମନ୍ତ୍ରୀପୁଅ ସୁପରାମର୍ଶ ପ୍ରଦାନ କରନ୍ତି, କଟୁଆଳ ପୁଅ ପ୍ରତୀରକ୍ଷା ଓ ଶାନ୍ତିରକ୍ଷା କରନ୍ତି ଏବଂ ସାଧବପୁଅ ଅର୍ଥନୀତିକୁ ନିୟନ୍ତ୍ରଣ କରନ୍ତି । ଏହି ସାଧବପୁଅମାନଙ୍କ ମାଧ୍ୟମରେ ମୁଖ୍ୟତଃ ନୌବାଣିଜ୍ୟ କରି ଦେଶର ସମୃଦ୍ଧି ଆଣିପାରୁଥିଲେ ଓ ଯୁଦ୍ଧଜୟୀ ହୋଇପାରିଥିଲେ କୁହାଯାଏ କଳିଙ୍ଗାଃ ସାହାସିକାଃ । କଳିଙ୍ଗ ଯୁଦ୍ଧପରେ ମୌର୍ଯ୍ୟବଂଶ ରାଜା ଅଶୋକ ଯୁଦ୍ଧବିଜୟୀ ହେଲେ ମଧ୍ୟ ମନସ୍ତାପ କରି ବୁଝିପାରିଥିଲେ, ତରବାରୀର ଜୟ ପ୍ରକୃତ ଜୟ ନୁହେଁ ତେଣୁ ସେ ଚଣ୍ଡାଶୋକରୁ ଧର୍ମାଶୋକକୁ ପରିବର୍ତ୍ତନ ହୋଇଥିଲେ ଏହି କଳିଙ୍ଗ ରାଜ୍ୟରେ । ବିସ୍ତୀର୍ଣ୍ଣ ସମୁଦ୍ର ଉପକୂଳ ଅଞ୍ଚଳରେ ଓ ନଦୀକୂଳେ କୂଳେ ବନ୍ଦର ସ୍ଥାପନା ସହ ଦେବଦେବୀ ଓ ଶକ୍ତିପୀଠମାନେ ଗଢ଼ି ଉଠିଥିଲା । ମା ଶକ୍ତି ପ୍ରଦାୟିନୀ ମଙ୍ଗଳମୟୀ ଭାବରେ ଉପାସିତା ଯାହା ନୌବାଣିଜ୍ୟ ଆଦ୍ୟ ପୂଜ୍ୟଦେବତା ଭାବରେ ମା ମଙ୍ଗଳାଙ୍କୁ ପୂଜା କରି ଦେଶବିଦେଶକୁ ଯାତ୍ରାରମ୍ଭ କରନ୍ତି-

ବାଲି ଜାଭା କାହିଁ ସିଂହଳ ଦ୍ୱୀପେ

ମେଲି ଦେଇଥିଲା ତରୀ

ସାଧବ ପୁଅର ମଙ୍ଗଳ ଗୀତି, ଆଜି ଗାଏ ବନଗିରି ।

ଦୂର ଦେଶେ ଯାଇ ବଣିଜ କରି, ଫେରୁଥିଲେ ଧନ ରତନ ଧରି

କଳିଙ୍ଗ ପାଇକ କଳିଙ୍ଗ ବୀର, ଏକକୁ ଆରକେ ସେ ବଳିଆର

ଗଙ୍ଗାଠାରୁ ଗୋଦାବରୀ ଯାହାର, ବାହୁ ବଳେ ଥିଲା ସୁଖେ ଅପାର ।

୪ର୍ଥ ଶତାବ୍ଦୀରେ ଉଜ୍ଜୟିନୀର ରାଜପୁତ୍ର ଦନ୍ତକୁମାର କଳିଙ୍ଗରାଜା ଗୁହଶିବଙ୍କ କନ୍ୟା ହେମମାଳାଙ୍କୁ ବିବାହ କରି ବୁଦ୍ଧଦନ୍ତ ନେଇ ସିଂହଳ ଯାଇଥିଲେ । ବ୍ରହ୍ମଦେଶର ପ୍ରାଚୀନ ମୁଦ୍ରାରେ ହିନ୍ଦୁଦେବଦେବୀଙ୍କ ସ୍ମାରକୀ ଓ ବିଭିନ୍ନ ସ୍ଥାନର ନାମ ମଧ୍ୟ ଦେଖାଯାଏ । ଜାଭାଦ୍ୱୀପର ଶୈଳେନ୍ଦ୍ର ରାଜବଂଶ କଳିଙ୍ଗର ଶୈଳୋଦ୍ଭବ ରାଜବଂଶର ଶାଖା । ଖ୍ରୀଷ୍ଟୀୟ ପଂଚମ ଶତାବ୍ଦୀରେ ଚୀନ୍ ଓ କଳିଙ୍ଗରାଜାଙ୍କ ମଧ୍ୟରେ ଉପଢୌକନ ବିନିମୟ ବିଷୟ 'ଦନ୍ତବଂଶ ଲଳିତ ବିସ୍ତର' ଗ୍ରନ୍ଥରୁ ପ୍ରମାଣ ମିଳେ । ଫାଲୟାନ୍ ଓ ହ୍ୱେନସାଂଙ୍କ ଐତିହାସିକ ଗ୍ରନ୍ଥରୁ କଳିଙ୍ଗ ନୌବାଣିଜ୍ୟ, ସାମାଜିକ, ଅର୍ଥନୈତିକ ଓ ଧର୍ମୀୟ ତଥ୍ୟମାନ ମିଳେ । ମୌର୍ଯ୍ୟ ସମ୍ରାଟ୍ ଚନ୍ଦ୍ରଗୁପ୍ତଙ୍କ ପ୍ରଧାନମନ୍ତ୍ରୀ ତଥା ରାଜନୀତି ଓ କୂଟନୀତି ବିଶାରଦ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ନୌବାଣିଜ୍ୟର ବର୍ଣ୍ଣନା ଏହିପରି-

ସପ୍ତାହ ବୃତମାଷାଢ଼ଂ କାର୍ତ୍ତିକଂଚାନ୍ତରାଚରଃ

କାର୍ତ୍ତିକ ପ୍ରତ୍ୟଯଂ ଦଦ୍ୟନ୍ୱିତଂ ଚାହ୍ନିକ ମା ଭବେତ୍ ।

ଅର୍ଥାତ୍ ଆଷାଢ଼ ମାସ ସପ୍ତମୀଠାରୁ କାର୍ତ୍ତିକ ମାସ ପର୍ଯ୍ୟନ୍ତ ଜଳଯାତ୍ରା ବିଷୟ ଉଲ୍ଲେଖ ରହିଛି ଯାହା କଳିଙ୍ଗୋତ୍କଳର ଆଷାଢ଼ ମାସରେ 'ବିପଦତାରିଣୀ ବ୍ରତ' ରଖି ସାଧବାଣୀ ଦେବୀପୂଜାପରେ ସାଧବମାନେ ନୌବାଣିଜ୍ୟପାଇଁ ଜଳଯାତ୍ରାର ଅୟମାରମ୍ଭ ପ୍ରସ୍ତୁତ କରନ୍ତି, ଦକ୍ଷିଣ ପଶ୍ଚିମ ବାୟୁପ୍ରବାହ ଦ୍ୱାରା । ଗହ୍ମାପୂର୍ଣ୍ଣିମାରେ କଳିଙ୍ଗପାଇକ ସମରାଭ୍ୟାସ ଗହ୍ମାଡିଆଁ ମାଧ୍ୟମରେ ନିଜକୁ ପ୍ରତିଷ୍ଠିତ କରନ୍ତି ଆଗାମୀ ନୌବାଣିଜ୍ୟ ପାଇଁ ସଶକ୍ତ ହୋଇ ଜଳଦସ୍ୟୁ ଓ ଅନ୍ୟାନ୍ୟ ସମସ୍ୟା ପ୍ରତିରୋଧ କରିବାକୁ ।

ଏହାପରେ ଆରମ୍ଭ ହୋଇଯାଏ ବିଭିନ୍ନ ଓଷାବ୍ରତମାନ । ପ୍ରଥମେ ମା'ମଙ୍ଗଳାଙ୍କୁ କୁଆଁରୀକନ୍ୟାମାନେ ପ୍ରତି ରବିବାରଦିନ 'ଖୁଦୁରୁକୁଣୀ ଓଷା' ଓ ବୋହୂମାନେ ପ୍ରତି ବୁଧବାରଦିନ 'ବୁଧେଇଓଷା' କରନ୍ତି ପରିବାରର ମଙ୍ଗଳମନାସୀ ଯାହାକୁ ଗୋପିନାଥ ଦାସ 'ବୃହତ



ତପୋଇ ଗୀତ' ବା ଖୁଦୁରୁକୁଣୀ ଓଷା ଗୀତରେ ଲେଖନ୍ତି ଏପରିକି -

ଜମ୍ବୁଦ୍ୱୀପ ସାଧବ ତନୟବନ୍ତ ଓ ସ୍ତ୍ରୀ ଶକୁନ୍ତଳାଙ୍କ ସାତପୁଅ ଓ ଏକମାତ୍ର ଅଲିଅଳି କନ୍ୟା ତଅପୋଇ ସହ ସାତ ବୋହୂମାନେ ଆନନ୍ଦରେ ଚଳୁଥିଲେ । ବ୍ରାହ୍ମଣୀ ପ୍ରରୋଚନାରେ ବାଲିଖେଳୁଥିବା ତଅପୋଇକୁ ସୁନାଚାନ୍ଦ ତିଆିର ପାଇଁ ପ୍ରବର୍ତ୍ତାଇଲେ । ଏହାର ନିର୍ମାଣ ଅଧାରେ ପିତାମାତା ଉଭୟେ ମୃତ୍ୟୁ ଲଭିଲେ । ଦୁଃଖିତ ସାଧବ ପୁଅ ଅନ୍ତ୍ୟେଷ୍ଟି କ୍ରିୟା ସମାପନ କରି କିଛିଦିନ ପରେ ପୁଣି ବାଣିଜ୍ୟ କରିବାକୁ ବାହାରିଗଲେ ବୋଇତ ନେଇ ।

ସମୟ ସୁବିଧାଦେଖି ବ୍ରହ୍ମଣୀର କୁମନ୍ତ୍ରଣା ଦ୍ୱାରା ବୋହୂମାନେ ତଅପୋଇକୁ ଅକଥନୀୟ ଦୁଃଖ କଷ୍ଟ ଦେଲେ । ହଜିଯାଇଥିବା ଘରମଣୀକୁ ଅଣାଇବାପାଇଁ ବନକୁ ଗଲେ ଓ ରାତିରେ ସେଠାରେ ରହି ମା' ବନଦୁର୍ଗା ମଙ୍ଗଳାଙ୍କୁ ପୂଜାକରି ତୁରନ୍ତ ଭାଇମାନେ ବିଦେଶରୁ ଫେରି ଆସିବାକୁ ମାନସିକ କଲେ । ତଅପୋଇ ଭାଇମାନଙ୍କ ବିଦେଶ ଫେରନ୍ତା ସାକ୍ଷାତ ପରେ ସମଗ୍ର ବୃତ୍ତାନ୍ତ ଅବଗତ କଲେ ।

ପ୍ରାକୃତିକ ବିଘଟନ ବିପର୍ଯ୍ୟୟ ସତ୍ତ୍ୱେ ଗଭୀର ସମୁଦ୍ର ମଧ୍ୟରେ ପ୍ରତ୍ୟେକ ବୋଇତର ମଙ୍ଗଦେବୀ ପୂଜାର୍ଚ୍ଚନା କରି ସଶକ୍ତ ଓଡ଼ିଆ ସାଧବପୁଅ ସାତ ସମୁଦ୍ର ତେର ନଈ ପାର ହୋଇ ବାଣିଜ୍ୟ କରିବାପାଇଁ ବିଦେଶ ଯାତ୍ରା କରନ୍ତି । କାର୍ତ୍ତିକ ମାସ ପୂର୍ଣ୍ଣିମାରେ 'ବୋଇତ ଭସାଣ ଉତ୍ସବ' ଅବସରରେ ଧର୍ମୀୟ ଚେତନା ଓ ଜାଗରଣ ସହିତ ପ୍ରାଚୀନ ପରମ୍ପରା ଆଜି ମଧ୍ୟ ଓଡ଼ିଆ ଜାତି ପ୍ରତିବର୍ଷ ପାଳନ କରିଆସୁଛନ୍ତି-

ଆ-ଆଷାଢ଼, କା-କାର୍ତ୍ତିକ, ମା-ମାଘ, ବୈ-ବୈଶାଖ ଇତ୍ୟାଦି ପୂର୍ଣ୍ଣ ୪ ମାସ ବୋଇତ ବାଣିଜ୍ୟ କାରବାର ନିମନ୍ତେ ଆଗୁସାର ହେଉଥିଲେ । ଏହି ୪ ମାସ ସୂର୍ଯ୍ୟଙ୍କ ଅୟନାନ୍ତ କାଳ, ଧର୍ମ ଦୃଷ୍ଟିରେ ଶୁଭ । ତେଣୁ ଦେବ ଉପାସନା ଓ ଅର୍ଥ ଉପାର୍ଜନ ପାଇଁ ନୌବାଣିଜ୍ୟ ଯାତ୍ରା ଅତ୍ୟନ୍ତ ଶୁଭ ଦାୟକ ହେତୁ ଓଡ଼ିଆମାନେ ଏହାକୁ ପାଳନ କରୁଛନ୍ତି । କଦଳୀ ପଟୁଆରେ ଗୁଆ ପାନ ଥୋଇ ଧୂପ ଦୀପ ନୈବେଦ୍ୟ ଦେଇ ନଦୀ ସମୁଦ୍ର ଏବଂ ପୋଖରୀରେ ଡଙ୍ଗା ଭସାନ୍ତି । ବିଦେଶରେ ମଧ୍ୟ ଉକ୍ତ ଉତ୍ସବ ପାଳନ ହେଉଥିବାର ନଜିର ରହିଛି । ଅନ୍ୟ ଅର୍ଥରେ ଏହି ସାଂକେତିକ ଅକ୍ଷରର ନିର୍ଯ୍ୟାସ ଏହିପରି - ଆ- ଆକାଶ, କା-ପାଣି, ମା- ନାହିଁ, ବୈ ବା ଭୈ- ଭୟ, ଯାହାର ଆକାଶ ପାଣି ପବନକୁ ଭୟ ନାହିଁ ପରି ବୀରତ୍ୱ ବ୍ୟଞ୍ଜକ ପ୍ରୋତ୍ସାହନ ଉକ୍ତି କଳିଙ୍ଗ ବାସୀଙ୍କୁ ହିଁ ଜଣାଉଥିଲା । ଦଶକୁମାର ଚରିତ, କଥାସରିତ ସାଗର, ପାଇକ ଖେଦା, ବୌଦ୍ଧ ଜାତକ ଗଳ୍ପ ପ୍ରଭୃତିରେ ସୌଦାଗରମାନଙ୍କ ମଙ୍ଗଳ ନିମନ୍ତେ ଦେବୀପୂଜାମାନ ପ୍ରତୀୟମାନ ହୁଏ ଏବଂ ସାଂସ୍କୃତିକ ପରମ୍ପରା, ଧର୍ମୀୟ ଐକ୍ୟ ସ୍ଥାପନ ନିମନ୍ତେ ପାଳିତ ହୁଏ । ଏଥିସହିତ ଏକ ସ୍ୱତନ୍ତ୍ର ଜାତି ବା ବୃତ୍ତିଧାରୀ କୈବର୍ତ୍ତକୁଳ ଉତ୍କଳ ପ୍ରଦେଶରେ ରହିଛନ୍ତି । ନୌବାଣିଜ୍ୟ ଓ ମତ୍ସ୍ୟଧରି ବ୍ୟବସାୟ ବୃତ୍ତି ମାଧ୍ୟମରେ ଧୀବରମାନେ ସଂମୃଦ୍ଧ ଅଟନ୍ତି । ଅଚ୍ୟୁତାନନ୍ଦଙ୍କ କୈବର୍ତ୍ତଗୀତାରେ ଏହା ଉଲ୍ଲେଖ ରହିଛି ।

ଦେଶ ବିଦେଶରେ କଳିଙ୍ଗୋତ୍କଳର ପ୍ରତିଛବି ଦେଖିବାକୁ ମିଳେ ବିଭିନ୍ନ ମନ୍ଦିର, ଗୁମ୍ଫା, ଶିଳାଲେଖ, ଭାସ୍କର୍ଯ୍ୟ ଓ ଧର୍ମସଂସ୍କୃତି ପୀଠରେ । ହିନ୍ଦୁ କଳିଙ୍ଗ ଶାକ୍ତ ଉପାସନାପରି । ସଦାଶିବ-ଦ୍ୱୈତଭାବରେ ପ୍ରକୃତି ଓ ପୁରୁଷଶକ୍ତିକୁ ଧାରଣ କରିଛନ୍ତି ବୋଲି ମନେ କରନ୍ତି । ଶିବପୂଜା ପାଉଥିଲେ ସୁଦ୍ଧା ବ୍ରହ୍ମା ବିଷ୍ଣୁଙ୍କୁ ପାର୍ଶ୍ୱ ମନ୍ଦିରରେ ତ୍ରିମୂର୍ତ୍ତି ଭାବରେ ପୂଜା କରନ୍ତି । ଅଷ୍ଟଦିଗପାଳଙ୍କୁ ପାଳନକର୍ତ୍ତା ଭାବରେ, ବାସୁକୀ ଓ ନାଗରାଜାଙ୍କୁ ମଧ୍ୟ ପୂଜା କରନ୍ତି । ବାଲି ଦ୍ୱୀପରେ ବୀଜମନ୍ତ୍ର ଓ ସହିତ ଅରୁଆ ଚାଉଳ, ତୁଳସୀ ଓ ବେଲପତ୍ରରେ ହିନ୍ଦୁପୂଜକ ବ୍ରାହ୍ମଣଙ୍କ ଦ୍ୱାରା ଠାକୁର ଓ ଯଜ୍ଞୋତ୍ସବ କରୁଥିବାର ଶିଳାଲିପିରୁ ମିଳେ । ଓଡ଼ିଶାର ସୌରା ଓ ସାନ୍ତାଳଙ୍କ ଭଳି ଭୂତ ପ୍ରେତ ଯଜ୍ଞରେ ପଂଚ ରଙ୍ଗ କୁକୁଡ଼ା ବଳି ଦିଅନ୍ତି ଏବଂ ଏକାଦଶରୁଦ୍ରଙ୍କ ଯଜ୍ଞ ପ୍ରତି ୧୦୦ ବର୍ଷରେ ଥରେ କରନ୍ତି । ଲାଓସ ବା ଲବଦ୍ୱୀପରେ ଓଡ଼ିଆଙ୍କ ପରି ଜନ୍ମମୃତ୍ୟୁ ସଂସ୍କାର ବ୍ରାହ୍ମଣଙ୍କ ଦ୍ୱାରା କରାନ୍ତି । ସମୁଦ୍ରମନ୍ଥନ ଚିତ୍ର, ପଟାଦାଖଲର ପଥରଭାସ୍କର୍ଯ୍ୟ, ବ୍ରିଟିଶ ମ୍ୟୁଜିୟମ୍‌ରେ ଅଷ୍ଟଭୁଜା ମହିଷାମର୍ଦ୍ଦିନୀ ଦୁର୍ଗା, ଖଜୁରାହୋର ବିଖ୍ୟାତ ଲକ୍ଷ୍ମଣମନ୍ଦିରରେ ମା ଚତୁର୍ଭୁଜ ମହିଷାମର୍ଦ୍ଦିନୀ ଦୁର୍ଗା, ଆନ୍ଧ୍ରପ୍ରଦେଶର ଗୁଣ୍ଟୁରଠାରେ ଧର୍ମଚକ୍ର ପ୍ରବର୍ତନ ମୁଦ୍ରା, ରାମସ୍ୱାମୀ ମନ୍ଦିର କୁମ୍ଭକୋନାମ୍ ତାମିଲନାଡ଼ୁ, ସହସ୍ରଲିଙ୍ଗ ତୀର୍ଥ ଓ ବ୍ରହ୍ମା ବିଷ୍ଣୁ ମହେଶ୍ୱର ତୀର୍ଥ, ଚାରିଥାକିଆ ହିନ୍ଦୁ ପିରାମିଡ୍ ଇତ୍ୟାଦି କାମ୍ବୋଡ଼ିଆରେ ଦେଖାଯାଏ । ଏ ସବୁ ଭାସ୍କର୍ଯ୍ୟମାନଙ୍କରେ ଉତ୍କଳୀୟଙ୍କ ନିଖୁଣତା ପ୍ରତିପାଦିତ ହୋଇଛି କେବଳ ଦେଶ ବିଦେଶକୁ ନୌବାଣିଜ୍ୟ କରାଯିବାରେ । ଯଥାର୍ଥରେ ଓଡ଼ିଆଜାତିର ପୂର୍ବସୂରୀମାନେ ଚିର ନମସ୍ୟ, ଉତ୍କର୍ଷର କେନ୍ଦ୍ର ଉତ୍କଳ, ଓଡ଼ିଆ ଭାଷା ଓ ସାହିତ୍ୟର ପ୍ରାଣ ଓଡ଼ିଶା ଅଧିବାସୀଙ୍କ ଦ୍ୱାରା ଧର୍ମୀୟ ଭାବଧାରା, ନୌବାଣିଜ୍ୟ ସହିତ ଜୀବନ ଧାରଣର ପଦଚିହ୍ନ ଉଜ୍ଜ୍ୱଳ ରହିବ, ଉତ୍ତର ପିଢ଼ି ବଢ଼ିବାରେ ଆଗକୁ, ଆହୁରି ଅନେକ ଆଗକୁ ।

ସହଗ୍ରନ୍ଥାଗାରିକ,
ଓଡ଼ିଶା ରାଜ୍ୟ ନୌବାଣିଜ୍ୟ ସଂଗ୍ରହାଳୟ, କଟକ
ଦୂରଭାଷା - ୯୪୩୭୫୨୨୦୦୦

 OO





# ଐତିହାସିକ ବାଲିଯାତ୍ରା : କିଛି ଝଲକ

❖ ଡାକ୍ତର ଦୀନବନ୍ଧୁ ମହାରଣା

ହିନ୍ଦୁମାନଙ୍କ ପାଇଁ କାର୍ତ୍ତିକମାସ ଏକ ପବିତ୍ର ମାସ । ଏହି ମାସରେ ପବିତ୍ର, ଶୁଦ୍ଧ, ସାତ୍ତ୍ୱିକ ଆହାର କରି ହିନ୍ଦୁମାନେ ବିଭିନ୍ନ ବ୍ରତ ପାଳନ କରନ୍ତି । ଏହିମାସରେ କାଳୀପୂଜା (ଦୀପାବଳି) ପୟାଶ୍ରାଦ୍ଧ ଧାର୍ମିକ ବିଶ୍ୱାସ ଅନୁଯାୟୀ ଯଥାବିଧି ଅନୁଷ୍ଠିତ ହୁଏ । କାର୍ତ୍ତିକ ପୂର୍ଣ୍ଣିମାରେ ବୋଇତ ବନ୍ଦାଣ (ଡଙ୍ଗାଭସା) ଓ କାର୍ତ୍ତିକେଶ୍ୱର ପୂଜା ହୁଏ । ଏହି ଉପଲକ୍ଷେ ଓଡ଼ିଶାର ପୁରପଲ୍ଲୀରେ ବିଭିନ୍ନ ଦେବାଳୟରେ ଆବାଳବୃଦ୍ଧବନିତା କାର୍ତ୍ତିକ ପୂର୍ଣ୍ଣିମାରେ ପ୍ରତ୍ୟୁଷରୁ ସ୍ନାନକରି ଡଙ୍ଗା ଭସାଇ ଦେବଦର୍ଶନ କରନ୍ତି । କାର୍ତ୍ତିକେଶ୍ୱରଙ୍କ ମୃଣ୍ମୟ ପ୍ରତିମାମାନେ ଏହି ଅବକାଶରେ ମହାନଦୀରେ ବିସର୍ଜ୍ଜିତ ହେବାକୁ ଆସନ୍ତି ।

କାର୍ତ୍ତିକ ପୂର୍ଣ୍ଣିମାରେ ଧାର୍ମିକ ମହତ୍ତ୍ୱ ସହିତ ଓଡ଼ିଶାର ସଂସ୍କୃତିରେ ଏହାର ଏକ ସ୍ୱତନ୍ତ୍ର ଐତିହାସିକ ସ୍ଥାନ ରହିଛି । ଏହି ଦିନକୁ ଓଡ଼ିଶାର ସବୁ ଅଞ୍ଚଳରେ ପୁଷ୍କରିଣୀ, ନଦୀ, ସମୁଦ୍ର ଜଳରେ ସୋଲ ଡଙ୍ଗା ବା କଦଳୀ ପାଟୁକାରେ ଡଙ୍ଗା ତିଆରି କରି ସେଥିରେ ବତିପୋତି ଭସାଇ ଦିଅନ୍ତି । ଏହା ଓଡ଼ିଶାର ଅତୀତ ଯୁଗରେ ସାଧବ ପୁଅଙ୍କ ନୌବାଣିଜ୍ୟ ପରମ୍ପରାକୁ ସ୍ମରଣ କରାଇଦିଏ । ଯାହା କଳିଙ୍ଗ ନୌବାଣିଜ୍ୟ ଭାବେ ବିଶ୍ୱ ଇତିହାସରେ ସ୍ଥାନିତ ହୋଇଛି ।

ଓଡ଼ିଶା ପୁଅ ସୁଦୂର ଜାଭା, ସୁମାତ୍ରା, ବୋର୍ଣ୍ଣିଓ (ଇଣ୍ଡୋନେସିଆ) ଦ୍ୱୀପ ପୁଞ୍ଜକୁ ନୌବାଣିଜ୍ୟ ଉଦ୍ଦେଶ୍ୟରେ ଯାତ୍ରା କରୁଥିଲେ । କଟକ ଗଡ଼ଗଡ଼ିଆ ଘାଟରେ କାର୍ତ୍ତିକ ପୂର୍ଣ୍ଣିମା ଦିନଠାରୁ ବାଲିଯାତ୍ରା ଆୟୋଜିତ ହୁଏ । ଏହି ଯାତ୍ରା ଓଡ଼ିଶାର ସବୁଠାରୁ ବଡ଼ ମେଳା ବା ସମାରୋହ । ଏହି ସ୍ଥାନଟି ମହାନଦୀ କୂଳର ପଶ୍ଚିମ ଦିଗରେ ଏକ ବିସ୍ତୃତ ପ୍ରାନ୍ତର ଅଟେ । ବାରବାଟୀ ଦୁର୍ଗ, ବାରବାଟୀ ଷ୍ଟାଡିୟମ୍, ଗଡ଼ଗଡ଼େଶ୍ୱର ମହାଦେବ ଏହି ବାଲିଯାତ୍ରା ସମୟରେ ପରିଦର୍ଶନ କରିବାର ସୁଯୋଗ ଥାଏ । ଏହାଛଡ଼ା ବାଲିଯାତ୍ରା ପଡ଼ିଆରେ ସାତଦିନ ପାଇଁ ଗୋଟିଏ ବହୁମୁଖୀ ବିପଣନ ବ୍ୟବସ୍ଥା ଗଢ଼ିଉଠେ । କଟକ ସହରର ଦୁର୍ଗାପୂଜା, କାଳୀପୂଜା ପରେ ବାଲିଯାତ୍ରା ହେଉଛି ଏକ ବଡ଼ ସାଂସ୍କୃତିକ । ଏଥିରେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ହସ୍ତଶିଳ୍ପର ଅପୂର୍ବ ସମାବେଶ ହୋଇଥାଏ ।

ବିଭିନ୍ନ ମନୋରଞ୍ଜନଧର୍ମୀ କାର୍ଯ୍ୟକ୍ରମ ସହିତ ସାମାଜିକ ମିଳନ ସହୋତ୍ସବର ସୁଯୋଗକୁ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଉପଭୋଗ କରନ୍ତି । ବାଲିଯାତ୍ରା ଐତିହ୍ୟ ସମ୍ପର୍କରେ କୁହାଯାଏ ଯେ ସୁଦୂର ଅତୀତରେ କଳିଙ୍ଗ ନୌବାଣିଜ୍ୟ ଯୁଗରେ ମହାନଦୀର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ଏହି ଜଳପଥ ଦେଇ ବଙ୍ଗୋପସାଗର ବକ୍ଷକୁ ଓଡ଼ିଆ ସାଧବପୁଅ ବୋଇତ ଯୋଗେ ଯାତ୍ରା କରୁଥିଲେ ଏବଂ ସେହି ଅବକାଶରେ ସାଧବବୋହୂ ଓ ଗଡ଼ଗଡ଼ିଆ ଘାଟର ଆଉ ଏକ ଐତିହ୍ୟ ତଥା ଧାର୍ମିକ ପୃଷ୍ଠଭୂମି ରହିଛି । ନଦିୟା ନବଦ୍ୱୀପରୁ ମହାପ୍ରଭୁ ଶ୍ରୀଚୈତନ୍ୟ ଓଡ଼ିଶାର ନୀଳାଚଳ ଧାମକୁ ସଂକୀର୍ତ୍ତନ ପଦଯାତ୍ରା କରି ଆସିବା ସମୟରେ ଏହି ସ୍ଥାନରେ ଭକ୍ତି ଉନ୍ମାଦରେ ବିଭୋର ହୋଇ ଗଡ଼ିଥିଲେ । ତେଣୁ ଏହା ଗଡ଼ଗଡ଼ିଆ ନାମ ବହନ କରିଛି । ଆଜି ମଧ୍ୟ ତାର ଭଗ୍ନାବଶେଷ ଇତିହାସର ମୂକସାକ୍ଷୀ ରୂପେ ବିଦ୍ୟମାନ । ଗଡ଼ ନିକଟରୁ ନଦୀ ଘାଟକୁ ଗଡ଼ିଯିବାର ଗଡ଼ାକୁ ଗଡ଼ଗଡ଼ିଆ କୁହାଯାଇ ପାରିଥାଏ । ଏହା ନଦୀର ଏକ ଘାଟ ତେଣୁ ଏହି ଘାଟରୁ ନୌକା ଯୋଗେ ଜଗତପୁର, ଚୌଦ୍ୱାର, ଆଠଗଡ଼ ଇତ୍ୟାଦି ଅଞ୍ଚଳକୁ ଯାତ୍ରୀ ଯାତାୟତ କରୁଥିଲେ । ଏହିପରି ଗଡ଼ଗଡ଼ିଆ ବାଲିଯାତ୍ରାର ଐତିହ୍ୟକୁ ନେଇ ଏଠାରେ କାର୍ତ୍ତିକ ପୂର୍ଣ୍ଣିମାଠାରୁ ସାତଦିନ ବ୍ୟାପି ଏକ ସାର୍ବଜନୀନ ମେଳା, ସାଂସ୍କୃତିକ ଓ ସାମାଜିକ ଭାବ ବିନିମୟ ମାଧ୍ୟମ ହୋଇପାରିଛି ।

କଟକର ବାଲିଯାତ୍ରାରେ ବସ୍ତୁତଃ ଏକ ପ୍ରଦର୍ଶନୀ ଭାବରେ ବହୁ ପାରମ୍ପରିକ ଓ ବୈଜ୍ଞାନିକ ଜ୍ଞାନ କୌଶଳର ଉତ୍ପାଦନଗୁଡ଼ିକୁ

ବିପଣନ(ମାର୍କେଟିଂ) ଉଦ୍ଦେଶ୍ୟରେ ଉପସ୍ଥାପିତ ହୋଇଥାଏ । କାର୍ତ୍ତିକ ପୂର୍ଣ୍ଣିମାର ପ୍ରତ୍ୟୁଷରୁ କଟକ ସହରର ହଜାର ହଜାର ମହିଳା-ପୁରୁଷ, ବାଳକ-ବାଳିକା ଗଡ଼ଗଡ଼ିଆ ଘଟକୁ ଯାଇ ମହାନଦୀର ଜଳ ସ୍ରୋତରେ ଡଙ୍ଗା ଭସାନ୍ତି । ଏହା ଓଡ଼ିଶାର ନୌବାଣିଜ୍ୟ ଯୁଗର ସ୍ମୃତି ବହନ କରେ ।

ବାଲିଯାତ୍ରା ଅବକାଶରେ ମହାନଦୀର ପଠା ବେଶ୍ ଝଲମଲ ହୋଇଉଠେ । ଦୋକାନ, ବଜାର ସରଗରମ ସାଙ୍ଗକୁ ମହାନଦୀରେ ନୌକା ବିହାରର ମଜା ଉଠାଇଥାନ୍ତି ସବୁ ବୟସର ଲୋକେ । ବାଲିଯାତ୍ରାରେ ଠୁଙ୍କାପୁରୀ, ଦହିବରା, ଆଳୁଦମ୍, ପାମ୍ପଡ଼, ଚାଟ୍ ଏବଂ ବିଭିନ୍ନ ପ୍ରକାର ଫାଷ୍ଟଫୁଡ୍ ଠାରୁ ଆରମ୍ଭ କରି ସ୍ୱାଦିଷ୍ଟ ମିଷ୍ଟାନ୍ନ ଜଳଯୋଗ ତଥା ବିଭିନ୍ନ ସ୍ୱାଦର ଆଇସ୍କ୍ରିମ୍ ଏହି ଯାତ୍ରାର ଅନ୍ୟତମ ଆକର୍ଷଣ । ବିଭିନ୍ନ ରାଜ୍ୟର ଖାଦ୍ୟପେୟ, ହସ୍ତଶିଳ୍ପ, କାରୁକାର୍ଯ୍ୟ ବାଲିଯାତ୍ରାରେ ଉପଲବ୍ଧ ହୁଏ । ସର୍କସ, ଆତସବାଜୀ, ଚକ୍ରୀ ଦୋଳି ଇତ୍ୟାଦି କଳା-କୌଶଳର ଏକ ବିଚିତ୍ର ସମାବେଶରେ ଯାତ୍ରା ପଡ଼ିଆ ଉଚ୍ଛୁଳି ଉଠେ । ବିଭିନ୍ନ ପ୍ରକାର ଗୃହୋପକରଣ, ଶିଳ, ଚକି, ମୁଗୁନି ପଥରର ସାମଗ୍ରୀ, କୋରଣା, ପନିକିଠାରୁ ଆରମ୍ଭ କରି କୁଲା, ବାଉଁଶିଆ, ଛାଞ୍ଚୁଣିମୁଠା ପର୍ଯ୍ୟନ୍ତ ପ୍ରାୟ ସମସ୍ତ ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ ବିକ୍ରି ହୁଏ ଏହି ଯାତ୍ରାରେ । ରାଜ୍ୟ ଓ କେନ୍ଦ୍ର ସରକାରଙ୍କ ବିଭିନ୍ନ ବିଭାଗ ଯଥା :-ଶିଳ୍ପ, ସ୍ୱାସ୍ଥ୍ୟ, ଖଦୀ ଗ୍ରାମୋଦ୍ୟୋଗ, ବିଜ୍ଞାନ ଓ ପରିବେଶ, ସୂଚନା ଓ ଲୋକ ସମ୍ପର୍କ ଇତ୍ୟାଦି ପକ୍ଷରୁ ଚମତ୍କାର ଷ୍ଟଲ୍ ଖୋଲାଯାଇଥାଏ । ମୋଟ ଉପରେ କଟକର ବାଲିଯାତ୍ରାରେ ଗୋଟିଏ ସାଂସ୍କୃତିକ ଉପନିବେଶ ଯେପରି ସପ୍ତାହବ୍ୟାପୀ ବିପୁଳ ଜନସମାଗମ ଦ୍ୱାରା ଚଳଚଞ୍ଚଳ ହୋଇଉଠେ । ଏହି ଅବସରରେ ଗଡ଼ଗଡ଼େଶ୍ୱର ମନ୍ଦିର ପ୍ରାଙ୍ଗଣ ପୂଜା ଅର୍ଚ୍ଚନାରେ ମୁଖର ହୋଇଉଠେ । ସାମଗ୍ରିକ ଭାବେ ଏହି ଯାତ୍ରା ଐତିହାସିକ, ସାଂସ୍କୃତିକ, ସାମାଜିକ ଓ ଅର୍ଥନୈତିକ ଉଦ୍‌ବେଳନ ସୃଷ୍ଟିକରେ ।

ଦୂରଭାଷ-୯୪୩୭୦୪୩୧୦୩

# ବାଲିଯାତ୍ରାର ଇତିବୃତ୍ତ: ଏକ ବିହଙ୍ଗାବଲୋକନ

❖ ଲଗ୍ନଜିତ୍ ବେହେରା

କାହିଁ କେଉଁ ଆବହମାନ କାଳରୁ କଳିଙ୍ଗର ସାଧବ ପୁଅ ନୌବାଣିଜ୍ୟ କ୍ଷେତ୍ରରେ ତା'ର ପାରଦର୍ଶିତା ଦେଖାଇ ସୁଦୂର ଜାଭା, ସୁମାତ୍ରା, ବାଲି, ବୋର୍ଣ୍ଣିଓ, ସିଂହଳ ତଥା ମାଳୟଦ୍ୱୀପ ପ୍ରଭୃତି ସ୍ଥାନମାନଙ୍କରେ ବାଣିଜ୍ୟ ବ୍ୟବସାୟ କରିବା ସଂଗେ ସଂଗେ ଏକ ସୁଦୃଢ଼ ତଥା ସୁସଂହତ ବାଣିଜ୍ୟିକ ସଂପର୍କ ସ୍ଥାପନ କରିଥିଲା । ଯଦିଓ ସମୟର ପରିବର୍ତ୍ତନ ସହିତ ଏହି ନୌବାଣିଜ୍ୟ କାଳକ୍ରମେ ତା'ର ଅସ୍ତିତ୍ୱ ହରାଇ ବସିଥିଲା ତଥାପି କଳିଙ୍ଗ ସହିତ ଏହି ସ୍ଥାନମାନଙ୍କର ସେ ସମୟରେ ଯେ ଅର୍ଥନୈତିକ, ରାଜନୈତିକ ଏବଂ ସାଂସ୍କୃତିକ ସଂପର୍କ ବେଶ୍ ସୁଦୃଢ଼ ଥିଲା ତାହା ଅସ୍ୱୀକାର କରିହେବନି । ଐତିହାସିକ ତଥା ଗବେଷକମାନଙ୍କ ବିଭିନ୍ନ ଗବେଷଣା ଲବ୍ଧ ତଥ୍ୟରୁ ଏହା ସୁସ୍ପଷ୍ଟ । ସଂପ୍ରତି ଅତୀତର ସେହି ସ୍ମୃତିରାଜିକୁ ଆମ ସଂସ୍କୃତି ଓ ପରମ୍ପରାର ବେଷ୍ଟନୀମଧ୍ୟରେ ସ୍ଥାନ ଦେଇ ଏହି ବାଲିଯାତ୍ରାକୁ (ବାଣିଜ୍ୟମେଳା) ଆମେ ଏକ ନୂତନ ପର୍ଯ୍ୟାୟରେ ପହଞ୍ଚାଇ ପାରିଛୁ ।

ପ୍ରାଚୀନ ଭାରତର ଇତିହାସରେ ମଗଧ ସାମ୍ରାଜ୍ୟର ଦୁଇ ମହାନ ରାଜବଂଶ ଯଥା ନନ୍ଦବଂଶ ସ ମୌର୍ଯ୍ୟବଂଶ ସମୟରେ କଳିଙ୍ଗର ସମୃଦ୍ଧ ନୌବାଣିଜ୍ୟ ସଂପର୍କରେ ଉଲ୍ଲେଖ ରହିଛି । ସମ୍ଭବତଃ ପ୍ରାଚ୍ୟ ଓ ଦକ୍ଷିଣପୂର୍ବ ପ୍ରାଚ୍ୟ ଦେଶମାନଙ୍କରେ ନୌବାଣିଜ୍ୟ କରିବାପାଇଁ କଳିଙ୍ଗର ଉପକୂଳବର୍ତ୍ତୀ ଅଞ୍ଚଳ ଉପଯୁକ୍ତ ସ୍ଥାନ ଥିଲା । ମହାନଦୀର ତ୍ରିକୋଣଭୂମି ଅଞ୍ଚଳ ଓ ନଦୀ ମୁହାଣ ମାନଙ୍କରେ ବୋଇତମାନଙ୍କର ସମୁଦ୍ର ମଧ୍ୟକୁ ପ୍ରବେଶର ସୁବିଧା ଯୋଗୁ ଏହି ସ୍ଥାନମାନଙ୍କରେ କଳିଙ୍ଗର ସାଧବପୁଅମାନେ କାର୍ତ୍ତିକ ପୂର୍ଣ୍ଣିମାରୁ ନିଜର ଯାତ୍ରା ଆରମ୍ଭ କରୁଥିଲେ । ବୋଧହୁଏ ପ୍ରାଚୀନ କାଳରେ ସ୍ଥଳଭାଗ ଅପେକ୍ଷା ଜଳଭାଗରେ ବାଣିଜ୍ୟ ବ୍ୟବସାୟ କରିବା ସାଧବପୁଅମାନଙ୍କ ପକ୍ଷେ ବେଶ୍ ଅନୁକୂଳ ତଥା ସୁବିଧାଜନକ ଥିଲା । ସ୍ଥଳଭାଗରେ ପ୍ରାଦେଶିକ ଶାସକ ବର୍ଗଙ୍କର କର ବୃଦ୍ଧି, ଆଞ୍ଚଳିକ ସଂକୀର୍ଣ୍ଣତା ଏବଂ ଦସ୍ୟୁମାନଙ୍କର ପ୍ରାଦୁର୍ଭାବ ସେମାନଙ୍କୁ ଜଳଭାଗରେ ନିଜ ଦକ୍ଷତା ଦେଖାଇବାରେ ସୁବର୍ଣ୍ଣ ସୁଯୋଗ ସୃଷ୍ଟି କରିଥିଲା । ଏକ ଉଲ୍ଲେଖନୀୟ ତଥା ଉଦାହରଣୀୟ ବିଷୟ ଏହା ଯେ ପ୍ରାଚୀନ କାଳରୁ କଳିଙ୍ଗବାସୀ ସାମୁଦ୍ରିକ ବିଜ୍ଞାନ, ଖଗୋଳ ଓ ଭୂଗୋଳର ବିସ୍ତୃତ ଜ୍ଞାନ ଅର୍ଜନ କରିପାରିଥିଲେ । ଏତଦ୍‌ବ୍ୟତୀତ ନୌଚାଳନାରେ ଦକ୍ଷତା ସମ୍ପନ୍ନ, ଉଚ୍ଚବାହୀ ଓ ନିମ୍ନବାହୀ ବାୟୁ ପ୍ରବାହ ବିଷୟରେ ସମ୍ପୂର୍ଣ୍ଣ ଅଭିଜ୍ଞ ଥିଲେ । ପ୍ରାଚୀନ ଇତିହାସ ଅନୁଧ୍ୟାନ କଲେ ଜଣାଯାଏ ଯେ ଆଉ କୌଣସି ସାମ୍ରାଜ୍ୟରେ ନୌବାଣିଜ୍ୟ ଏତେ ସମୃଦ୍ଧ ନଥିଲା । କହିବା ବାହୁଲ୍ୟ, ଭାସ୍କୋଡ଼ାଗାମା ୧୪୯୮ ଖ୍ରୀଷ୍ଟାବ୍ଦରେ ଭାରତକୁ ଜଳପଥ ଆବିଷ୍କାର କରିଥିଲେ ମଧ୍ୟ ତା'ର ବହୁବର୍ଷ ପୂର୍ବରୁ (ପାଖାପାଖି ୨୦୦୦ ବର୍ଷ) କଳିଙ୍ଗର ଅଧିବାସୀ ଏକ ସୁଦୀର୍ଘ ତଥା ସୁବ୍ୟବସ୍ଥିତ ବାଣିଜ୍ୟିକ ସଂପର୍କ ଜଳପଥରେ ଆବିଷ୍କାର କରିସାରିଥିଲେ । ଯାହାକି ଏକ ଅନାଲୋଚିତ ଓ ଗବେଷଣା ସାପେକ୍ଷ ବିଷୟ ହୋଇ ରହିଯାଇଛି । କଳିଙ୍ଗର ପ୍ରାଚ୍ୟ ଓ ଦକ୍ଷିଣ ପ୍ରାଚ୍ୟ ଦେଶମାନଙ୍କ ସହିତ ଏକ ସୁସମୃଦ୍ଧ ବାଣିଜ୍ୟିକ ସଂପର୍କର ଏକ ମୁଖ୍ୟ କାରଣ ହେଉଛି ଏହାର ଭୌଗୋଳିକ ଅବସ୍ଥିତି, ରାଜନୈତିକ ପୃଷ୍ଠପୋଷକ ତଥା ଅର୍ଥନୈତିକ ଅଭିବୃଦ୍ଧି । ସଂର୍ବୋପରି ଏହାର ପୃଷ୍ଠଭାଗରେ ରହିଛି ସାଂସ୍କୃତିକ ପରମ୍ପରା ମହାନଦୀର ନିମ୍ନଅବବାହିକାରେ ଥିବା ନଗରମାନଙ୍କ ମଧ୍ୟରୁ କଟକ ଅନ୍ୟତମ । ପ୍ରାଚୀନ କଟକ ଏକ ଜଣାଶୁଣା ବ୍ୟବସାୟିକ ପେଣ୍ଠସ୍ଥଳୀ ରୂପେ ପରିଚିତ । ମହାନଦୀ ତଟରେ ଅବସ୍ଥିତ ଏହି ସହର ଉପକଣ୍ଠରୁ ସାଧବପୁଅ ମହାନଦୀରୁ ତା'ର ବୋଇତ ବାନ୍ଧି କାର୍ତ୍ତିକ ପୂର୍ଣ୍ଣିମାରୁ ହିଁ ବାଣିଜ୍ୟ ନିମନ୍ତେ ଦୂରଦେଶମାନଙ୍କୁ ଯାତ୍ରା କରିବାପାଇଁ ସଜବାଜ ହୋଇଥାନ୍ତି । ତାଛଡ଼ା ଏହି ସମୟରେ ବିଭିନ୍ନ ବ୍ୟବସାୟୀବର୍ଗ ତଥା ଶିଳ୍ପୀ ଓ କାରିଗର ନିଜ ନିଜର ହସ୍ତନିର୍ମିତ ଦ୍ରବ୍ୟ, କ୍ରୟଜାତଦ୍ରବ୍ୟ ସଂଗୃହୀତ ଜଙ୍ଗଲଜାତ ଦ୍ରବ୍ୟ, ବିଭିନ୍ନ ଜଡ଼ିବୁଟି (ଔଷଧୀୟ) ଓ ମସଲା ପ୍ରଭୃତି ଆଣି ମହାନଦୀ କୂଳରେ ସେମାନଙ୍କର ପସରା ମେଲାଇ ଦିଅନ୍ତି । ସାଧବପୁଅମାନେ ଦେଶବିଦେଶର ଚାହିଦା ମୁତାବକ ତଥ୍ୟ ନିଜ ନିଜ ପସନ୍ଦର ଦ୍ରବ୍ୟମାନ ସଂଗ୍ରହ କରି ବିଦେଶ ଅଭିମୁଖେ ବାଣିଜ୍ୟ ପାଇଁ ଯାତ୍ରା ଆରମ୍ଭ କରନ୍ତି । ସେମାନଙ୍କୁ ବିଦାୟ ଦେବାକୁ ବନ୍ଧୁପରିଜନ ତଥା ସ୍ଥାନୀୟ ଲୋକେ ମଧ୍ୟ ଆସିଥାନ୍ତି । ଧୀରେ ଧୀରେ ଏହା ଏକ ବାଣିଜ୍ୟ ମେଳାରେ ପରିଣତ ହେଲା । ବାଲିଯାତ୍ରାର ଉତ୍ପତ୍ତି ଏହିପରି ହୋଇଥିଲା । ଉତ୍କଳୀୟ ପରମ୍ପରାରେ ଏହା ବୋଇତ ବନ୍ଦାଣର ରୂପ



ନେଲା । ଏହାର ସ୍ମାରକୀ ସ୍ୱରୂପ ଆଜି ସମଗ୍ର ଉତ୍କଳବାସୀ କାର୍ତ୍ତିକ ପୂର୍ଣ୍ଣିମାରେ ଡଙ୍ଗା ଭସାଇ ଆମର ପୂର୍ବଜଙ୍କ କୃତି ଓ କୀର୍ତ୍ତିକୁ ଯଥାରୀତି ସମ୍ମାନ ଜଣାଇ ଆସୁଛନ୍ତି । ଏଥି ସହିତ ମହାନଦୀ ତଟରେ ଆରମ୍ଭ ହୋଇଥିବା ଏହି ବିଦାୟ ମେଳଣର ଉତ୍ସବ କାଳକ୍ରମେ ବାଲିଯାତ୍ରାର ରୂପନେଲା । ଅନ୍ୟ କେତେକ ଏହାକୁ ମହାନଦୀର ବାଲିରେ ଏହା ଅନୁଷ୍ଠିତ ହେଉଥିବାରୁ ଏପରି ନାମକରଣ ହୋଇଥିବା ଅନୁମାନ କରୁଥିବାବେଳେ ଅନ୍ୟ କେତେକ ଶ୍ରୀଚୈତନ୍ୟଙ୍କ ଉତ୍କଳ ଆଗମନ କାଳରେ ନଦୀବାଲିରେ ଗଡ଼ିବାକୁ ନେଇ ବାଲିଯାତ୍ରା ବୋଲି କହିଥାନ୍ତି । କେତେକ ଗବେଷକଙ୍କ ମତରେ ସାଧବମାନଙ୍କ ବାଲିଦ୍ୱୀପକୁ ଯାତ୍ରା କରିବା ହେତୁ ଏହାର ନାମକରଣ ବାଲିଯାତ୍ରା କରାଯାଇଛି । ସେ ଯାହା ହେଉନା କାହିଁକି ପ୍ରାଚୀନ କାଳରୁ କଳିଙ୍ଗର ନୌବାଣିଜ୍ୟକୁ ସମୃଦ୍ଧିଶାଳୀ କରିବା ଦିଗରେ ଦେଶ ବିଦେଶର ଓ ରାଜ୍ୟର ବିଭିନ୍ନ ପ୍ରାନ୍ତରୁ ବ୍ୟବସାୟୀମାନଙ୍କ ଏହି ଯାତ୍ରାରେ ନିଜ ନିଜର ସାମଗ୍ରୀମାନ ଆଣି ବାଣିଜ୍ୟ କରୁଥିଲେ । ଏହି ବାଲିଯାତ୍ରା କାଳକ୍ରମେ ଏକ ବୃହତ୍ ବାଣିଜ୍ୟିକ ଉତ୍ସବ ରୂପେ ପ୍ରତିଷ୍ଠିତ ହୋଇପାରିଲା ।

ପ୍ରାଚୀନ କଳିଙ୍ଗର ନୌବାଣିଜ୍ୟ ସମୟର ପ୍ରଭାବ ଅନୁସାରେ ଧୀରେ ଧୀରେ ଅପସରି ଗଲା । ମାତ୍ର ସବୁଦିନ ପାଇଁ ରହିଗଲା ବାଲିଯାତ୍ରା । ପ୍ରତିବର୍ଷ କାର୍ତ୍ତିକ ପୂର୍ଣ୍ଣିମାଠାରୁ ଆରମ୍ଭ ହୋଇ ୭/୮ ଦିନ ପର୍ଯ୍ୟନ୍ତ ଏହି ବାଣିଜ୍ୟିକ ମେଳା ଚାଲିଆସୁଛି । ବହୁବର୍ଷ ଧରି ପ୍ରଚଳିତ ଏହି ମେଳା ଯେମିତି ଓଡ଼ିଶାବାସୀଙ୍କ ମନରେ ଏକ ଆବେଗ ଭାବରେ ଓତଃପ୍ରୋତ ଭାବେ ଜଡ଼ିତ । ଆମର ସଂସ୍କୃତି ଓ ପରମ୍ପରାର ଏକ ଅଭିନ୍ନ ଅଙ୍ଗ ଭାବେ ବାଲିଯାତ୍ରା କାଳକ୍ରମେ ଯୋଡ଼ି ହୋଇଗଲା । ଅଧୁନା ଏସିଆ ମହାଦେଶର ସର୍ବବୃହତ୍ ବାଣିଜ୍ୟମେଳାର ସ୍ୱୀକୃତି ଲାଭ କରିଛି 'ବାଲିଯାତ୍ରା' । ଟିକି ନିଖି ଘରକରଣା ଜିନିଷଠୁ ଆରମ୍ଭ କରି ମୂଲ୍ୟବାନ ମୋଟର ସାଇକେଲ ଓ ମୋଟରଯାନ ପର୍ଯ୍ୟନ୍ତ ସମସ୍ତ ପ୍ରକାର ସାମଗ୍ରୀ ଏହି ମେଳାରେ ଉପଲବ୍ଧ ହୁଏ । ପୂର୍ବରୁ ବାରବାଟୀ ଦୁର୍ଗ ସାମ୍ନା ପଡ଼ିଆରେ ହେଉଥିବା ଏହି ମେଳା ଆଜି ତା'ର କାୟା ବିସ୍ତାର କରିଥିଲେ ଉପର ପଡ଼ିଆ ଓ ତଳ ପଡ଼ିଆରେ ଅନୁଷ୍ଠିତ ହେଉଛି । ଏବେ ବାଲିଯାତ୍ରାରେ ବର୍ଷକୁ ବର୍ଷ ଲକ୍ଷ ଲକ୍ଷ ଲୋକଙ୍କ ସମାଗମ ହେବା ସଂଗେ ସଂଗେ ବହୁମୂଲ୍ୟ ଦ୍ରବ୍ୟର କ୍ରୟ-ବିକ୍ରୟ ହେଉଛି । ଏହି ବାଣିଜ୍ୟିକ ମେଳାକୁ ସୁଚାରୁ ରୂପେ ସମ୍ପନ୍ନ କରାଇବା ପ୍ରଶାସନ ପାଇଁ ଏକ ଆହ୍ୱାନ ପାଲଟିଛି । ସର୍ବୋପରି ଏହି ଯାତ୍ରାକୁ ଆଧୁନିକୀକରଣ ତଥା ଆନ୍ତର୍ଜାତୀୟ ମାନ୍ୟତା ଦେବାପାଇଁ ସମସ୍ତ ପ୍ରକାର ଉଦ୍ୟମ ଜାରି ରହିଛି । ଏ ବର୍ଷ ପ୍ରଥମ ଥର ପାଇଁ ବାଲିଯାତ୍ରାର କଳେବର ବୃଦ୍ଧି କରାଯିବାକୁ ପଦକ୍ଷେପ ନିଆଯାଉଛି । ଏକ ସ୍ୱଚ୍ଛ, ସବୁଜ, ସୁନ୍ଦର ବାଲିଯାତ୍ରାର ପରିକଳ୍ପନା କରାଯାଉଛି ।

ବର୍ତ୍ତମାନ ବାଲିଯାତ୍ରାରେ ସ୍ୱୟଂ ସହାୟିକା ଗୋଷ୍ଠୀ ଓ ମିଶନ ଶକ୍ତିମାଧ୍ୟମରେ ଗ୍ରାମୀଣ ମହିଳା ଉଦ୍ୟୋଗୀ ଓ ସଂସ୍ଥାମାନଙ୍କୁ 'ଓରମାସ୍' ମାଧ୍ୟମରେ ପ୍ରୋତ୍ସାହିତ କରାଯାଉଛି । ଏଥି ସହିତ ସୁଦୂର କନ୍ଧମାଳ, କୋରାପୁଟ, ଫୁଲବାଣୀ, ବଲାଙ୍ଗୀର ପ୍ରଭୃତି ସ୍ଥାନମାନଙ୍କରୁ ସ୍ୱୟଂ ସହାୟିକା ଗୋଷ୍ଠୀମାନେ ଆସି ସେମାନଙ୍କ ଉତ୍ପାଦିତ ସାମଗ୍ରୀ ତଥା ହସ୍ତପ୍ରସ୍ତୁତ ଦ୍ରବ୍ୟମାନଙ୍କର ପ୍ରଚାର ପ୍ରସାର ସହିତ ବ୍ୟବସାୟ କରୁଛନ୍ତି । ଆମ ଦେଶର ବିଭିନ୍ନ ପ୍ରାନ୍ତରୁ ଯଥା ପଶ୍ଚିମବଙ୍ଗ, ବିହାର, ରାଜସ୍ଥାନ, ଉତ୍ତର ପ୍ରଦେଶ, ଦିଲ୍ଲୀ, ମଧ୍ୟପ୍ରଦେଶ, ମହାରାଷ୍ଟ୍ର ଓ ଗୁଜୁରାଟ ପ୍ରଭୃତି ଅଞ୍ଚଳରୁ ବ୍ୟବସାୟୀ ବନ୍ଧୁମାନେ ଆସି ବାଲିଯାତ୍ରାରେ ନିଜର ସ୍ଥିତି ଜାହିର କରୁଛନ୍ତି ।

ସାଂପ୍ରତିକ ପରିପ୍ରେକ୍ଷୀରେ ରାଜ୍ୟସରକାର ବାଲିଯାତ୍ରାକୁ ଏକ ଜାତୀୟ ସ୍ତରର ବାଣିଜ୍ୟ ମେଳା ରୂପେ ମାନ୍ୟତା ଦେବା ନିମନ୍ତେ ପ୍ରଚେଷ୍ଟା ଜାରି ରଖିଛନ୍ତି । ପୂର୍ବବର୍ଷ ମାନଙ୍କ ତୁଳନାରେ ୨୦୧୯ ମସିହାରେ ବାଲିଯାତ୍ରାରେ ପାଖାପାଖି ୪୫ ଲକ୍ଷରୁ ଊର୍ଦ୍ଧ୍ୱ ଜନସମାଗମ ହୋଇଥିଲା । ଆଶା କରାଯାଏ, ଏ ବର୍ଷ ତଦାପେକ୍ଷା ଅଧିକ ଜନସମାଗମ ହୋଇପାରେ ।

ପରିଶେଷରେ ଏହାହିଁ କୁହାଯାଇପାରେ ଯେ ବହୁ ପୁରାତନ କାଳରୁ ପ୍ରଚଳିତ ବାଲିଯାତ୍ରା ଆଉ ସେ କାଳର ନୌବାଣିଜ୍ୟ ସହିତ ଯୋଡ଼ି ହୋଇନାହିଁ । ପରନ୍ତୁ ସମସ୍ତଙ୍କ ପ୍ରଚେଷ୍ଟାରେ ଆଜି ଏହା ଏକ ସର୍ବବୃହତ ବାଣିଜ୍ୟ ମେଳାରେ ପରିଣତ ହୋଇପାରିଛି । କେବଳ କଟିକିଆ ନୁହନ୍ତି ପ୍ରତିଟି ଓଡ଼ିଆର ମନରେ କାର୍ତ୍ତିକ ପୂର୍ଣ୍ଣିମାରେ 'ବାଲିଯାତ୍ରା ଟିକେ ବୁଲିଯିବାକୁ ଆବେଗ ରହିଛି । ଏବର୍ଷର ପ୍ରବଳ ଜନସମାଗମକୁ ଦୃଷ୍ଟିରେ ରଖି ଜିଲ୍ଲା ପ୍ରଶାସନ ଭିଡ଼ ନିୟନ୍ତ୍ରଣ ପାଇଁ ରାସ୍ତାଘାଟର ପ୍ରଶସ୍ତିକରଣ ସଂଗେ ସଂଗେ ଅଧିକ ଖୋଲା ସ୍ଥାନରେ ବ୍ୟବସ୍ଥା କରାଯାଇଛି । ପ୍ଲାଷ୍ଟିକ ମୁକ୍ତ ବାଲିଯାତ୍ରା ପାଇଁ କଟକ ମହାନଗର ନିଗମ ଓ ଜିଲ୍ଲା ପ୍ରଶାସନର ଅଧିକାରୀ ବୃନ୍ଦ ଯଥାସାଧ ଉଦ୍ୟମ କରୁଛନ୍ତି । ପ୍ଲାଷ୍ଟିକ ଦ୍ରବ୍ୟକୁ ଏଣେ ତେଣେ ନଫିଙ୍ଗି ନିର୍ଦ୍ଦିଷ୍ଟ ସ୍ଥାନରେ ଫିଙ୍ଗିବାର ବ୍ୟବସ୍ଥା କରାଯିବା ସଂଗେ ସଂଗେ ଏଥିପାଇଁ ପ୍ଲାଷ୍ଟିକ ଆବର୍ଜନା ଫେରସ୍ତ କରିବା ବ୍ୟକ୍ତିଙ୍କୁ ଆର୍ଥିକ ପ୍ରୋତ୍ସାହନ ଯୋଗାଇ ଦେବାର ବ୍ୟବସ୍ଥା ମଧ କରାଯାଇଛି । ସରକାରଙ୍କ ବିଭିନ୍ନ ବିଭାଗର ସହଯୋଗ ସହିତ ଘରୋଇ ଅନୁଷ୍ଠାନ ଓ ବିଭିନ୍ନ ଉଦ୍ୟୋକ୍ତାମାନେ ମଧ ବାଲିଯାତ୍ରାକୁ ସରସ ସୁନ୍ଦର କରିବା ପାଇଁ ଜିଲ୍ଲା ପ୍ରଶାସନ ସହିତ ପ୍ରତିଶ୍ରୁତିବଦ୍ଧ । ଏଥି ସହିତ ସୁଉଚ୍ଚ ତୋରଣ ସହ କଟକର କଳା, ସଂସ୍କୃତି, ପୀଠସ୍ଥଳୀ ଓ ଐତିହାସିକ ସ୍ଥାନମାନଙ୍କର ଏକ ପ୍ରତିକୃତି ପରିବେଷଣ ପାଇଁ ଏକ ନୂତନ ପରିକଳ୍ପନା ଖୋଦ୍ ଜିଲ୍ଲାପାଳଙ୍କ ତତ୍ତ୍ୱାବଧାନରେ ପ୍ରସ୍ତୁତ କରାଯାଇଅଛି ।

ଦୂରଭାଷ: ୯୪୩୮୯୧୦୭୭୭

○○

# MARITIME TRADING HERITAGE OF ODISHA

❖ Dr Kailash Chandra Dash

Maritime trade which was responsible for the prosperity of the people of Odisha in the early and medieval phase is a significant aspect of the study of the socio-economic history of India. Overseas trade is an important element of the Odia traditional narratives. Archaeological remains in Odisha as well as the vast literary texts of the early and medieval phase provide important evidence on the spectacular maritime activities of the merchants of Odisha. A close study of the art and the architectural remains of Odisha also provide an interesting linkage of the people of Odisha in early medieval phase with the different regions of the world.

The folklore and popular sayings about the sea voyages of the merchants of Odisha in the past have been presented by the nationalist historians in the first phase of the 20th century The Odia Mahabharata of Sarala Das in the 15th century Prastava Sindhu of the poet Dinakrishna Das and many other Odia literary texts of the late medieval period provide unmistakable evidence on the maritime trade and the ship building activities in early and medieval phase. The festivals and fasts of the Odia people also contain an interesting account of the shipping activities of the ancient merchants. Numerous references to sea-voyages can be found in the stories and tales that have come down to us from antiquity. According to one traditional account the merchant's son is setting out for the sea, his ship lying at anchor is worshipped or rather honoured by the ladies of the household. The merchant's son after undergoing various trials and adventures in the course of his voyage comes home at least with a lot of treasures.

Spinsters of all castes to this day perform a vrata called Khudurukuni Osa on Sundays in the month of Bhadra. The brata is in honour of Goddess Mangala who fulfils all desires. In the story there is a pathetic tale of Tapoi,the daughter of a merchant. The prevalence of the story throughout Odisha and its incorporation in the worship of unmarried girls show that sea voyages were at one time a common aspect in the land. It is also customary in every household in Odisha to paint with fine rice dust(Muruja) or rice paste an image of a sailing ship in the inner courtyard of the house in Dewali night. In days gone by, all sailing ships used to leave the foreign ports the day after Dewali in the month of Karttika. The old idea that sea voyages and overseas trade brought wealth to the family still persists and ladies now-a-days make their bandapanas to the painted image of a sailing ship. The belief that the performance of this ceremony ensures wealth and plenty to the family shows the hold that sea voyages had on the people of Odisha in by-gone days. The day of starting was fixed; but there was no fixity of the day of return which varied according to the nature of business that the ships had to in its particular voyage. Sailing ships in those days started the day after Diwali when the South Western Monsoon Waves leaves the Bay of Bengal. Its place is filled up by the North Eastern Monsoon Waves. This month was favourable for ship voyage to the south. The sailing ships in those days completed their journey by the end of Chaitra. Its observance in Odisha continuously is a definite proof of the maritime activity of the Odias in days past. The sky-lamp(akasha dipa) which is lighted in the

month of Karttika by the ladies in Odisha is an indication of good will for the sailing ships of the Odishan merchants. They were in days past called Farewell lamps for the Odishan merchants sailing in the high seas.

The Odia poet Sarala Das in the Sabha Parva section of his Mahabharata refers to kaivarta Nrupati in connection with the making of Suvarna Boita. It indicates that in days past the Odishan ships were destined to Subarnabhumi for which they were described as Subarna Boita. Temples and shrines on the sea port areas from Tamralipti to Chilka contain many traditional accounts relating to the sea-faring enterprise of the Odias. In north Balasore near about Mirgada the shrine of Lankeswari is associated with maritime pride. The temple of Gada-Naikani in Balramgarhi at the meeting spot of Burabalanga and the sea and the Mangala temple at Kakatpur in Puri district were well connected with Odishan seafaring activities.

From the establishment of the Maurya rule in India in 4th century CE till 14 to15th century CE Kalinga was considered as an important maritime kingdom which had seafaring activities. The illustrious Maurya king Ashoka could not tolerate the maritime supremacy of Kalinga for which he had to wage a bloody war. Eggermont has been inclined to identify the Nagas with the sea-faring people of Kalinga and the conquest of their territory has been explained by him as the conquest of Kalinga. It is possible to speculate that for some years the independence enjoyed by the Kalingan merchants in the whole bed of the Eastern Sea coast was gone and under Mauryan supervision the Kalingan oceanic routes were occupied by others. But in the post-Mauryan period there was a spectacular rise of Kalinga as a maritime power from the period of Mahameghavahana Kharavela. A tradition recorded in the Rajabhoga of Madalapanji refers to Bhoja as a king of Odisha and he was associated with maritime activities. We have only one record like the Hatigumpha inscription which describes a part of the life and achievements of Kharavela and it describes the maritime significance of Kalinga before and during the reign of Kharavela. However from the reign of Kharavela Kalinga witnessed a real grand phase of maritime trade which began to languish only in the later medieval period.

From the beginning of the Christian era till the end of the Somavamsi period before 12th century C.E. there started intense maritime activities of the Odishan merchants. It led to the establishment of trading centres and colonisation in the Far east and Malayesia. Different ports became active during this phase. The Geographike Huphegesis of Ptolemy refers to Palaura and the mouth of the river Mahanadi as the important zones of maritime activities. These areas have now been identified with the modern states of Sumatra, Java, Indonesia,Thaton and Pegu in Burma and parts of Malay peninsula. Manikapatana was another important trading centre of early and medieval Odisha. An excavation conducted by Odisha institute of Maritime and South East Asian Studies reveals the existence of a port in the area of Manikapatna in ancient time. The archaeological excavation has brought to light rouletted ware fragments of amphora etc.indicating contact with Roman empire in the early centuries of the Christian era. The discovery of Celadone ware indicates trade contact of this zone with China.

Important ports on the coasts of Kalinga in the early medieval phase were Tamralipti, Chelitalo and Palaura. Hiuen Tsang, the famous Chinese Buddhist pilgrim, refers to the city of Chelitalo near the sea shore in Odra which was a thoroughfare and resting place for sea-going traders and strangers from the distant lands. The most important point for identification of this port has been given by H.P. Ray who states that it is identical with Chilika tala.

Two other important maritime zones were Simhapura and Dantapura. Dantapura as a trading zone was a celeberated centre for danta(the tusks





of elephants) and the centre has to be located somewhere in Ganjam-Vishakhapatnam area. Odisha in the early phase was a famous centre for manufacturing and selling of the hasti-dantas. The popularity of hasti-danta in Kalinga in the early medieval phase has also been stated in the account of the Arabian merchant Sulaiman There is evidence regarding the emergence of Kalingan settlements in the South East Asian countries in early times. There were many factors which led to the expansion of Kalingan culture across the seas. The ports of Kalinga had opened different sea routes to different lands for seafaring trade. The adventurous mariners continued to have commercial, socio-cultural and political relations with South East Asian countries.

The Arab and Persian Geographers of the $9^{th}$ and $10^{th}$ century CE furnish interesting evidence on the maritime activities of early medieval Eastern India. K.C.Panigrahi appreciated this aspect when he used the earliest geographical work of Ibn Khurdadhbhih which presented an itinerary atlas of the Eastern coast of India from Godavari to the Ganges.

The sculptural decoration in early and medieval Odisha definitely refer to the contact of the Odishan merchants with the lands beyond the seas. A study of the art of the Khandagiri-Udayagiri caves reveals the use of West Asian decorative elements such as honey suckle, acanthus, stepped merons, winged animals etc. Representations of boats in the temple art of Odisha, as at Bhubaneswar, Puri and Konarka indicate the importance attached to water transport. Comparative studies of Buddhist art of Odisha with that in South-east Asia show several common elements and striking affinities. The Buddha heads from Ratnagiri, Lalitagiri and Udayagiri and those from central Java share common traits of massive form, sensitive modelling and spiritual expressions. The representation of Jiraffe,an African animal in the temple art of Konarka suggests contact with Arab merchants who might have been commissioned to bring this animal from Africa to the eastern coast. The Srivatsa motif on it is analogous to the motif found in the art of Khandagiri, Udayagiri caves. Later on Srivatsa motif became fairly common in coins from OCEO in Vietnam at Arakan.

Between 2nd and 4th centuries C.E.Odisha had direct maritime contact with South-east Asia. The importance given to sea trade with South-east Asia was partly the result of the extension of the inland and inter-regional trade and commerce and predominantly the outcome of the rising demand in the West for spices. It is likely that the Odishan middlemen merchants took advantage of this situation and involved themselves in the spices trade, especially the trade in cloves. Odishan trade seems to have declined in the post-Gupta period, although cultural contacts with other countries such as Sri Lanka, China, Indochina etc. continued. Again the active role of Odisha in the maritime trade was witnessed from the 11th to 14th century C.E. The material evidence from the excavations of Manikpatna adds considerably to our understanding of the overseas contacts of Odisha in the medieval period.

Natural factors like tectonic movement, coastal sedimentation, development of sand dunes in the navigational channels, change of river course, flood, cyclone, sea level fluctuations etc. played a crucial role for taking away the erstwhile commercial advantages of ancient Kalingan ports and towns. Despite that the sailors, merchants and traders of Kalinga in early and medieval period contributed substantially to the mainstream of Indian overseas trade and expansion of Indian maritime culture. The flourishing ports and the enterprise of Kalinga merchants played a leading role in overseas activities for economic progress and for political and cultural interactions. The maritime traditions of the Odias have been preserved in the legends and various cultural institutions of the present day Orissa.

Mob. : 9437621516

OO



# BALIJATRA AND BOITA BANDANA

❖ Dr. Anita Sabat

Odisha celebrates many festivals and several "Jatras' being the most famous "Ratha Jatra"- the Chariot Festival of the deities of Shree Jagannath and His siblings, held each year in Puri. Ratha Jatra is a global festival now. "Balijatra" of Cuttack is not as well-known as Ratha Jatra. Nevertheless, Balijatra has a rich cultural significance and historical tradition.

**Boita Bandana**

Studies show that Odisha, erstwhile Kalinga, has a rich and ancient cultural and civilizational link with several South East Asian nations. Kaling's maritime trade is lgendary and such memories are celebrated even today every year on Kartika Purnima as Boita Bandana and Balijatra. Boita Bandana is a maritime festival of Odisha. Boita Bandana refers to the "worshipping of boats. It is also called- "Danga Bhasa". "Danga" means boat and "Bhasa" means to float. Each year on Kartika Purnima, the Odias observe this traditional festival by gathering near water-bodies-ponds, lakes, riverbanks or the seashore.

As per the age-old custom, they float small paper-boats or boats made of other materials like banana-stems, solapith etc along with lit earthen lamps and flowers in remembrance of their ancestors, who sailed to distant lands. Lamps are lighted and boats are worshipped, and then floated with the lamps kept in the boats. Odisha's "Boita Bandana" celebration is like Bali's "Masakapan Ke Tukad" festival, and like Thailand's "Loi Krathong" festival. In these traditional festivals, boats are floated during the same time of the year.

**Balijatra- Hisotrical Significance**

In ancient times, enterprising sons of Odisha, traders referred to as Sadhaba & Sadhaba-pua used to sail from Odisha's ports in huge boats to foreign lands like Bali, Java, Sumatra, Borneo, Cambodia, Malaysia, Myanmar, Thailand, Sri Lanka etc. The traditional vessels in which the sea traders sailed off are called Boita. Thus, the Odias celebrate Kartika Purnima day as Boita Bandana, a ritual reminiscent of the maritime heritage of Kalinga. This marks the festival- Balijatra that literally means a "Voyage/Journey to Bali". This tradition continues even after so many centuries.

The expeditions usually commenced on Kartika Purnima. the full moon day in the month of Kartika. The intrepid merchants took advantage of the favourable winds and currents conducive for the seafarers. Women prayed for the safe travel of the male-members of their families, who undertook the jouney. Later, when the Sadhaba-pua returned safely from their trip, they were received with much fanfare and celebration by their wives-Sadhaba-bohu.

Maritime Historical & Cultural & References : Kalinga's ancient trading ports like Tamralipti have been mentioned by many explorers like Ptolemy, Fa-Hiuen Tsang et al. Even the Buddhist Jataka texts have references of voyages from Tamralipti in Kalinga to many nations for trade and missionary activities.

A sculpture showing two ships was faound near the brahmeswara Temple in Bhubaneswar, belonging to 11th Century CE, preserved in the Odisha State Museum. Many temples like Vaital Deula and Lingaraja Temple of Bhubaneswar and Sun Temple of Konark etc have stone carvings showcasing Kalinga's trade-links. The Sun Temple even has a boat with a giraffe that indicates maritime trade of ancient Odisha with Africa.







There is mention in local folktales and cultural stories too. As per a popular Odia story, Ta'poi, once upon a time, seven brothers left for foreign lands for trade. They left their beloved sister, Ta'poi, under the care of their wives. Except for the youngest sister-in-law, the rest tortured Ta'poi, and burdened her with tough tasks. When the brothers returned, they were very angry and punished their wives for mistreating their dear sister Ta'poi.

**Research About Balijatra-Linked with "Bali" (Indonesia) or "Bali" (Sand)?**

Archaeological excavations and findings and stone carving of ships in temples are proof of ancient Odisha's maritime trade. Kalinga's naval connection has cunturally impacted these countries. There is much in common between the Hindu culture of Bali in Indonesia and Odisha. Foreign trade and exports and imports were possible thanks to the adventurous and enterprising Odia merchants. In this age of smartphones, Google and GPS, when we have voice-assistance for navigation, it seems tough to fathom the star-gazing navigation skills in the past. Sadhaba-pua did a great job without drones or satellites! Ships sailed from Odisha to not only South East nations, but to European countries likd Netherlands too. There is a Maritime Museum in Cuttack that stands testimony to the brave & fearless explorers of Odisha. In the Republic Day Parade 2016 at New Delhi, Odisha's Cultural Tableau deppicted Boita Bandana and Balijatra.

It may be noted that in Odia language, "Bali" means sand. Odisha, previously called Kalinga, has had a rich cultural link with many nations, and not just with the single island-Bali.

More research is needed about the Balijatra. There is so much more waiting to be discovered. Whenever we learn about out Odisha's heritage and culture, we are filled with awe. There is a lot to learn and share about Odisha. We will be in a better position to do so when we ourselves are aware. The shared cultural heritage needs to be promoted with everyone's interest, participation and outreach.

All media must share with this common spelling and also hashtag. It will help to create meaningful digital and social media impressions, documentation and access. The name is the most important, and shouldn't we all refer to our festival with a proper and correct common name ? When our Honourable Chief Minister, Shri Naveen Patnaik, is so particular in spelling the names of our state and language correctly, and thus changed them from Orissa to Odisha, and from Oriya to Oida, respectively in 2011, can't we ensure spelling and pronouncing our Odia & Odisha festival- Balijatra correctly ? Steps need to be taken now to avoid all confusion and ensure uniform and correct representation.

Further, we look forward to State, National, and International recognition for Balijatra. Tagging Balijatra as a cultural heritage festival can attract many tourists to visit Silver City, Cuttack. Tourism will cntribute to generate local employment and revitalize local industries, including art and crafts. As each year, the scale of the celebration becomes larger and better, participation from foreign lands too will be great. Odisha State Govt must invite and encourage interested foreign-tourists, delegates, and also entrepreneurs and business-people especially from South East Asia. The latter can exhibit their products in stalls in an "International Pavilion" at Balijatra. Such cultural exchanges and imports and exports will be a great tribute to the dauntless spirit and entrepreneurship and enterprise of Odisha's Sadhaba-pua and their invaluable contribution for India's maritime trade. Balijatra is a super platform to showcase, nourish and cherish our cultural history. shared heritage and living traditions, and also unite and inspire generations to come.

OO



# JAYEE RAJGURU – THE FOUNDER ARCHITECT OF PAIKA REBELLION

❖ Surendranath Samantaray

The Paika rebellion (Paika Bidroha) launched in 1817 under the leadership of Buxi Jagabandhu Bidyadhar Mohapatra, the Army Chief of Khordha is said to be the 1st freedom struggle of India. But the undercurrent prompted to the Paik forces of Khordha to agitate against the British rule goes back to the first decade of nineteenth century when the Paika forces raised voice against the British administration in 1803 under the able guidance and leadership of Jaykrushna Rajaguru Mohapatra, the royal priest and the Prime Minister of Gajapati Mukundadev (II), of Khordha.

The Pre-British Odisha witnessed a political turmoil in 18th century. As per the agreement between Alibardi Khan the Nawab of Bengal and Raghujee Bhonsle, the ruler of Nagpur in 1751 Kataka province was assigned to Marhattas which was spread from Subranarekha in the north to Rusikulya in the South. The southern region from Rusikulya was under the Nizam of Hyderabad being named after "Chikakol Sarkar".

In 1760 history turned its course. The King of Paralakhemundi, Narayana Dev, attacked Khordha. Gajapati Birakishore Dev sought the help of Sibaram Sathe, the Marahatta Subedar of Cuttack to drive out Narayana Deb. After the mission Sibaram demanded the money and snatched away four praganas namely Sinai, Rahanga, Lembaai and Chabiskuda along with the power to collect revenue from Purusottam Khetra and fourteen Gadajat areas.

From among European merchants French and British merchants established their trade influence in India which encouraged them to implement colonial administration in our country. Bengal province in the Eastern region was owned by the Britishers after defeat and death of Siraj-udala, the Nawab of Bengal in a war at Palasi in 1757 which is popularly known as "Palasi War". Meer Kasim was formally crowned as the Nawab of Bengal.

The coastal belt of Bay of Bengal was the main arena of trade and business of the East India Company which was being controlled by the ports of Odisha. Madras fort was the controlling point of the war initiated by East India Company at places like Karnataka, Karmandal etc. Robert Clive and Lord Karnwales were concucting the Marhatta administration at Nagpur to have a permission to pass through Odisha on their way from Madras to Kolkata. Of course Robert Clive and Lord Karnwales did not adopt war policy during their tenure. But Lord Welsly, after becoming the Governor General chalked out a plan to win Odisha.

In the meantime Britishers already occupied Madras in South and Bengal in North of Odisha. The only way to capture Barabati Fort by way of military expedition from Southern side was Khorda for which Lord Walsly tried to convince Gajapati Mukunda Deva to allow their troop to pass through Khordha. Gajapati agreed to the proposal on certain conditions like return of four 'praganas' mortgaged with the Marhatta rulers and a cash payment of rupees one lakh. Torture and exploitation of the 'Bargi' soldiers to the people of Khordha was also a point of consideration. But the person, who opposed to the proposal of the Britishers smelling a ray of conspiracy behind this proposal, was Jaikrushna Rajguru Mohapatra popularly known as Jai Rajguru, the royal advisor

